# କବିମଞ୍ଜୁଳ କୃଷ୍ଣପ୍ରସାଦ ବସୁଙ୍କ ଜୀବନୀ ଓ ପ୍ରତିଭା



ବିଜୟ କିଶୋର ସାମଲ

କବିମଞ୍ଜୁଳ

# କୃଷ୍ଣ ପ୍ରସାଦ ବସୁଙ୍କ

## ଜୀବନୀ ଓ ପ୍ରତିଭା

ବିଜୟ କିଶୋର ସାମଲ



ଗ୍ରନ୍ଥ ମନ୍ଦିର

କବିମଞ୍ଜୁଳ କୃଷ୍ଣ ପ୍ରସାଦ ବସୁଙ୍କ ଜୀବନୀ ଓ ପ୍ରତିଭା
ବିଜୟ କିଶୋର ସାମଲ

ପ୍ରକାଶକ
ଲାର୍କ ବୁକ୍ସ
ସୁବର୍ଣ୍ଣରେଖା ଚ୍ୟାମ୍ବର୍ସ
ଏ/୯, ଭୌମ ନଗର, ଭୁବନେଶ୍ୱର - ୭୫୧୦୦୧

ପ୍ରଥମ ପ୍ରକାଶ :୨୦୧୩



ମୁଦ୍ରଣ
ମିଡ଼ିଆ ପ୍ରେସ୍
୨୪-ଇଷ୍ଟ, ଅଶୋକ ନଗର, ଭୁବନେଶ୍ୱର-୭୫୧୦୦୯

ମୂଲ୍ୟ ଏକଶତ ପଚିଶ ଟଙ୍କା

**KABIMANJULA KRUSHNA PRASAD BASUNKA JIBANI O PRATIBHA**

Bijay Kishore Samal

Publisher
**LARK BOOKS**
Subarnarekha Chambers
A/9, Bhauma Nagar, Bhubaneswar-751001

**First Edition - 2013**



Printed by
**MEDIA PRESS**
24-East, Ashok Nagar, Bhubaneswar - 751009

Rupees One hundred twentyfive only

## ଉତ୍ସର୍ଗ

ମୋର ପରମପୂଜନୀୟ ପିତୃଦେବ
✓ ହୃଷୀକେଶ ସାମଲଙ୍କ
ପବିତ୍ର ସ୍ମୃତି ଉଦ୍ଦେଶ୍ୟରେ

ବିଜୟ

# ସୂଚୀପତ୍ର

## ପ୍ରସ୍ତାବନା



## ଜୀବନାଲେଖ୍ୟ



## ସାରସ୍ୱତକୃତି ଓ କୃତିତ୍ୱ





# ପ୍ରସ୍ତାବନା

## ଅବତରଣିକା

ଗତ ଶତାବ୍ଦୀ ଓଡ଼ିଶାର ସାରସ୍ୱତ କ୍ଷେତ୍ରରେ କୃଷ୍ଣପ୍ରସାଦ ବସୁ ଏକ ବିସ୍ମୟକର ପ୍ରତିଭା। ବିପୁଳ ତାଙ୍କର ସୃଷ୍ଟି ସମ୍ଭାର। ଅତୁଳନୀୟ ତାଙ୍କର ଅବଦାନ; କାବ୍ୟ, କବିତା, ନାଟକ, ଲଳିତ ନିବନ୍ଧ, ପ୍ରବନ୍ଧ ଓ ଗଳ୍ପ ଆଦି ନାନା କ୍ଷେତ୍ରରେ ରହିଛି ତାଙ୍କ ସିଦ୍ଧିର ସ୍ୱାକ୍ଷର । ବହୁ ଘାତ ପ୍ରତିଘାତ ପୂର୍ଣ୍ଣ ତାଙ୍କ ଜୀବନପଥ । ରୁଚିହୀନ ଓଡିଆ ପାରମ୍ପରିକ ନାଟକ 'ଯାତ୍ରା' କୁ ଯେତେବେଳେ ଶିକ୍ଷିତ ଲୋକେ ନାକ ଟେକୁଥିଲେ ସେଇ ସମୟରେ ଉଚ୍ଚଶିକ୍ଷିତ କୃଷ୍ଣପ୍ରସାଦ ସେଇଥିରୁ ଜୀବନ ଆରମ୍ଭ କରିଛନ୍ତି । ସଙ୍ଗୀତ, ନୃତ୍ୟ, ବାଦ୍ୟଯନ୍ତ୍ର, ଅଭିନୟ ପ୍ରତ୍ୟେକ କ୍ଷେତ୍ରରେ ଅସମ୍ଭବ ଭାବରେ ପ୍ରତିଭାଶାଳୀ ଏହି ବ୍ୟକ୍ତି ନିଜର ଏକ ଯାତ୍ରାଦଳ ଗଠନ ଓ ପରିଚାଳନା କରି, ନାଟକମାନ ଲେଖି ଓଡିଶାର ମୋଗଲବନ୍ଦିରୁ ଗଡଜାତ ପୁଣି କୋଲକାତାରୁ ଟାଟା ଯାଏ ଦେଶ ବିଦେଶର ବିଭିନ୍ନ ସ୍ଥାନରେ ଅଭିନୟ ପ୍ରଦର୍ଶନ କରି ଅର୍ଥ ଓ ସମ୍ମାନ ଲାଭ କରିଛନ୍ତି । ସମକାଳର ଯାତ୍ରା ନାଟ୍ୟକାର ଗୋପାଳ ଦାଶ, ବୈଷ୍ଣବ ପାଣି ଓ ବାଳକୃଷ୍ଣ ମହାନ୍ତି ଆଦି ଅନେକଙ୍କ ସହିତ ପ୍ରତିଦ୍ୱନ୍ଦ୍ୱୀତାରେ ଅବତୀର୍ଣ୍ଣ ହୋଇ ପ୍ରତିଷ୍ଠା ଲାଭ କରିଛନ୍ତି । 'ନାଟ୍ୟ ଗନ୍ଧର୍ବ' ଓ 'କବିମଞ୍ଜୁଳ' ଉପାଧିରେ ବିଭୂଷିତ ହୋଇଛନ୍ତି । ତାଙ୍କରି ହାତରେ ଓଡିଆ ଯାତ୍ରା ପ୍ରାଚୀନ ରୂପ ପରିତ୍ୟାଗ କରି ଉଠି ଆସିଛି ଅପେରା ସ୍ତରକୁ । ଶସ୍ତା ମନୋରଂଜନ ଧର୍ମିତା ଓ ଅବାଞ୍ଛିତ ଶୃଂଗାରିକତାର ପ୍ରଭାବରୁ ସେ ଓଡିଆ ଯାତ୍ରାକୁ ମୁକ୍ତ କରି ଅଭିନବ ଶିଳ୍ପ ସୌନ୍ଦର୍ଯ୍ୟରେ ମଣ୍ଡିତ କରିଛନ୍ତି । ପାରମ୍ପରିକ ଓଡିଆ 'ପାଲା'କୁ ନୂତନ ରୂପଦାନ କରିଛନ୍ତି। ନବ ନବ ସ୍ୱର ସଂଯୋଜନାରେ ରସୋତୀର୍ଣ୍ଣ ଖଣ୍ଡକାବ୍ୟମାନ ପାଲା ଆସରରେ ପରିବେଷଣ ପାଇଁ ରଚନା କରିଛନ୍ତି । ଲୁଚି ହଜି ଯାଉଥିବା ବହୁ ପ୍ରାଚୀନ ଓଡିଆ ରାଗରାଗିଣୀରେ ନୂତନତାର ସ୍ପର୍ଶ ଦେଇଛନ୍ତି । ମଧ୍ୟ ଯୁଗୀୟ ଛନ୍ଦ ଓ ଆଧୁନିକ ଭାବ ସମବାୟରେ ଅନବଦ୍ୟ ଗୀତି କବିତା ମାନ ସୃଷ୍ଟି କରିଛନ୍ତି । ସେ କାଳର ପ୍ରତିଷ୍ଠିତ ଓଡ଼ିଆ ପତ୍ରପତ୍ରିକାରେ ପ୍ରକାଶିତ କୃଷ୍ଣ ପ୍ରସାଦଙ୍କର ଅର୍ଦ୍ଧ ଶତାଧିକ ପ୍ରବନ୍ଧ, ଲଳିତ-ନିବନ୍ଧ ଓ ଗଳ୍ପ ଆଦି ଗଦ୍ୟ ରଚନା ଓଡ଼ିଆ ବାଣୀ ଭଣ୍ଡାରର ଅମୂଲ୍ୟ ସମ୍ପଦ । ଏ ସବୁଥିରେ ତାଙ୍କ କର୍ମମୟ ଜୀବନର

ବିସ୍ତୀର୍ଣ୍ଣ ଅନୁଭବ ଭୂମି ଉପରେ ଓଡ଼ିଶାର ପଲ୍ଲୀ ଜୀବନଚର୍ଯ୍ୟାର ଅଫୁରନ୍ତ ରୂପକଳ୍ପ ଯେତିକି ଅନ୍ତରଙ୍ଗ ସେତିକି ବାସ୍ତବ ଓ କମନୀୟ । ଅଭିବ୍ୟକ୍ତିର ସାବଲୀଳତା ଓ ପରିପକ୍ୱ ଅବବୋଧରେ ରସାଣିତ ଏହି ଗଦ୍ୟ ଓଡିଆ ଭାଷାର ଆଭିଜାତ୍ୟ ଓ ସୌଷ୍ଠବର ଅକୃତ୍ରିମ ନିଦର୍ଶନ ହୋଇ ରହିବ।

ଏତେ ସବୁ ସିଦ୍ଧିର ସମ୍ଭ୍ରାନ୍ତ ଶିଳ୍ପୀଟି ନିଜ ଜୀବଦ୍ଦଶାରେ ବିପୁଳ ଖ୍ୟାତି ତୁଳନାରେ ମୃତ୍ୟୁର ଅର୍ଦ୍ଧ ଶତାବ୍ଦୀ ପରେ ଏତେ ମଳିନ ଓ ଅଚିହ୍ନା ହୋଇ ଯାଇଛନ୍ତି କାହିଁକି ? ଆଧୁନିକ ଶିକ୍ଷିତଙ୍କ ନିକଟରେ ସେ ପରିଚୟ ହରାଇଛନ୍ତି। ଆମ ପ୍ରଦେଶର ବହୁ ପ୍ରତିଭାଧରଙ୍କ ଭାଗ୍ୟରେ ଏହା ଅବଧାରିତ ହୋଇଛି।

'ପାଲା'କାରଙ୍କ ଗତାନୁଗତିକ ବ୍ୟାଖ୍ୟା ଓ ଅନୁଶୀଳନ ଭିତରେ ତାଙ୍କର ପରିଚୟ ଆଜି ପ୍ରାୟ ସୀମିତ ହୋଇ ରହିଛି। କବି ନିଜେ ପ୍ରକାଶ କରିଥିବା କିଛି ଖଣ୍ଡକାବ୍ୟକୁ ବ୍ୟବସାୟ ପାଇଁ ଏକାଧିକ ବାର ପ୍ରକାଶ କରାଯାଉଥିଲେ ବି ବିପୁଳ ଅପ୍ରକାଶିତ ଲେଖା କୀଟଙ୍କର ଆହାର ହୋଇଛି । ଯୋଗ୍ୟ ଉତ୍ତରାଧିକାରୀ ନଥିବାରୁ ତାଙ୍କ ନିଜଗୃହରୁ କବିଙ୍କ ସମସ୍ତ ସଂଗ୍ରହ ଓ ପାଣ୍ଡୁଲିପି ଅନ୍ୟତ୍ର ସ୍ଥାନାନ୍ତରିତ ହୋଇଯାଇଛି । ତାଙ୍କ ପୈତୃକ ଗୃହ ଯାହା କବିତୀର୍ଥ ଭାବରେ ଜନବିଦିତ ହୁଅନ୍ତା ତାହା ଆଜି ଅର୍ଦ୍ଧ ଭଗ୍ନ ଅବସ୍ଥାରେ ହତଶ୍ରୀ ହୋଇ ନିରବତାର ନୀରାଜନା କରୁଛି ।

ଓଡିଶାର ବିଭିନ୍ନ ଆଡେ ବିକ୍ଷିପ୍ତ ଭାବରେ ରହିଥିବା ତାଙ୍କ ନାଟକ ଓ ଅନ୍ୟାନ୍ୟ ରଚନାର ପାଣ୍ଡୁଲିପି ଗୁଡିକ ସଂଗୃହୀତ ହେବା ଆବଶ୍ୟକ। ଝଂକାର, ଚତୁରଙ୍ଗ ଆଦିରେ 'ଆଖଡାଘରେ ବୈଠକ' ଶିରୋନାମାରେ ପ୍ରକାଶିତ ଅନବଦ୍ୟ ଭାଷାଭଙ୍ଗୀର ଗଦ୍ୟ ରଚନା ସଂକଳିତ ହେବା ଦରକାର । ଅବଲୁପ୍ତ ହୋଇଯାଉଥିବା ତାଙ୍କ ବିପୁଳ ରଚନାବଳୀର ସଂଗ୍ରହ, ସଂରକ୍ଷଣ ଓ ପ୍ରକାଶନ ପାଇଁ ସ୍ୱତନ୍ତ୍ର ଉଦ୍ୟମର ଆବଶ୍ୟକତା ରହିଛି । ଏଇ ଭଳି ସ୍ଥିତିରେ ଓଡିଆ ସାହିତ୍ୟକୁ ନିଜର ମହାର୍ଘ ଦାନରେ ସମୃଦ୍ଧ କରିଥିବା, ଭାଷାକୁ ସ୍ୱତନ୍ତ୍ର ଗରିମାରେ ପ୍ରତିଷ୍ଠିତ କରିଥିବା ଓ ଓଡିଆ ସଙ୍ଗୀତକୁ ମହନୀୟ ମର୍ଯ୍ୟାଦା ଦାନ କରିଥିବା କବି ପ୍ରତିଭାର ସମ୍ୟକ ଆକଳନ ପାଇଁ ଆମ୍ଭେ ପ୍ରୟାସ କରିଛୁ । କ୍ରମାଗତ ବିସ୍ମୃତ ହୋଇଯାଉଥିବା ଉତ୍କଳର ଜଣେ ବରପୁତ୍ରଙ୍କର ସ୍ମୃତି ଚାରଣ କରିବାକୁ ଉଦ୍ୟମ କରିଛୁ। କେତେଦୂର ସଫଳ ହୋଇଛୁ ବିଜ୍ଞ ପାଠକ ବିଚାର କରିବେ ।

ଆଜି ଏ ପୁସ୍ତକ ପ୍ରକାଶନର ଶୁଭ ଲଗ୍ନରେ ସ୍ମରଣ କରିବି ଅନ୍ତରଙ୍ଗ ବନ୍ଧୁ ପ୍ରାପ୍ତାବସର ଆରକ୍ଷୀ ଅଧିକ୍ଷକ ଶ୍ରୀମାନ୍ ସୂର୍ଯ୍ୟମଣି ତ୍ରିପାଠୀଙ୍କୁ, ତାଙ୍କରି ବାରମ୍ବାର

ତାକିତ୍ ଫଳରେ ବହୁଦିନ ତଳର ଏ ଲେଖା ବାହାରକୁ ଆସିଲା । କବିମଣ୍ଡଳଙ୍କ ନାଟକ ସମ୍ପର୍କରେ ଗବେଷଣା ପାଇଁ ଆମ୍ଭଙ୍କୁ ଉତ୍ସାହିତ କରିଥିବା ଓ ଦିଗ୍‌ଦର୍ଶନ ଦେଇଥିବା ଆମ୍ଭର ସଦା ଶୁଭାକାଂକ୍ଷୀ ପ୍ରଫେସର ଡକ୍ଟର ଖଗେଶ୍ୱର ମହାପାତ୍ରଙ୍କୁ ନମ୍ରତାର ସହିତ ସ୍ମରଣ କରୁଛି । ଗଭୀର କୃତଜ୍ଞତା ଜ୍ଞାପନ କରୁଛି ଆମ୍ଭର ପୂଜ୍ୟପାଦ ଗୁରୁଦେବ ପ୍ରଫେସର ଡକ୍ଟର କୃଷ୍ଣ ଚରଣ ବେହେରାଙ୍କ ନିକଟରେ । ପୁସ୍ତକର ପାଣ୍ଡୁଲିପି ପାଠକରି ସେ ଉପାଦେୟ ଅଭିମତ ପ୍ରଦାନ କରିଛନ୍ତି । ଓଡିଶାର ସୁନାମଧନ୍ୟ ପୁସ୍ତକ ପ୍ରକାଶକ ଭୁବନେଶ୍ୱରର ଲାର୍କ ବୁକ୍‌ସର ସ୍ୱତ୍ତ୍ୱାଧିକାରୀ ଶ୍ରୀଯୁକ୍ତ ମହେନ୍ଦ୍ର ମିଶ୍ରଙ୍କ ପ୍ରଚେଷ୍ଟାରେ ପୁସ୍ତକଟି ମୁଦ୍ରିତ ହୋଇଥିବାରୁ ତାଙ୍କୁ ଆନ୍ତରିକ ସାଧୁବାଦ ଜଣାଉଛି ।

**ଈଶ୍ୱରପୁର** **ଶ୍ରୀ ବିଜୟ କିଶୋର ସାମଲ**



# ମୁଖବନ୍ଧ

## ଶକ୍ତିଶାଳୀ ଅଥଚ ସ୍ୱଳ୍ପାଲୋଚିତ

କବିମଣ୍ଡଳ କୃଷ୍ଣପ୍ରସାଦ ବସୁ (୧୮୯୪-୧୯୬୮) ଓଡିଆ ସାହିତ୍ୟ ଇତିହାସରେ ସ୍ୱଳ୍ପାଲୋଚିତ;ଅନାଲୋଚିତ ବୋଇଲେ ଚଳେ । ଗତ ବିଂଶ ଶତାବ୍ଦୀର ପ୍ରଥମ ଭାଗରେ ପ୍ରାୟ ପଚାଶ ବର୍ଷ କାଳ ସେ ସାହିତ୍ୟ-ସାଧନାରେ ନିମଗ୍ନ ଥିଲେ। କାବ୍ୟକବିତା, ନାଟକ, ପ୍ରବନ୍ଧ, ରମ୍ୟ ରଚନା ଇତ୍ୟାଦି ଲେଖି ଚାଲିଥିଲେ। ବିଶେଷତଃ ନାଟକରେ ବିତାଇଥିଲେ ଜୀବନର ଅଧିକାଂଶ ସମୟ । ନାଟକ ରଚନା ସହିତ ନାଟ୍ୟଦଳ ସଂଗଠନ, ସଙ୍ଗୀତ ସଂଯୋଜନା , ବାଦ୍ୟଯନ୍ତ୍ର ସଞ୍ଚାଳନ, ମଞ୍ଚାୟନ, ଅଭିନୟ ନିର୍ଦ୍ଦେଶନାଦି କାର୍ଯ୍ୟ କରିଥିଲେ। ଯଥାର୍ଥରେ ସେ ଥିଲେ ଜଣେ ନାଟ୍ୟପୁରୁଷ। ଏହି ନାଟ୍ୟପୁରୁଷଙ୍କ ବିଷୟରେ ଏବେ ଡ଼କ୍ଟର ବିଜୟ କିଶୋର ସାମଲ ଆଲୋଚନା-ଗ୍ରନ୍ଥଟିଏ ପ୍ରସ୍ତୁତ କରିଥିବା ବଡ଼ ଆନନ୍ଦର କଥା।

ତାହା ଥିଲା ଆମର ନାଟ୍ୟକର୍ମ କ୍ଷେତ୍ରରେ ଏକ ସନ୍ଧିକ୍ଷଣ। ସଂସ୍କୃତାନୁରାଗ ନାଟ୍ୟକର୍ମ, ଲୋକନାଟ୍ୟ ଓ ଲୋକପ୍ରିୟ ନାଟ୍ୟଧାରା ଏବଂ ପାଶ୍ଚାତ୍ୟାଶ୍ରୟୀ ନାଟ୍ୟକର୍ମ ଏହି ତିନି ଧାରାରେ ଓଡ଼ିଶାବାସୀଙ୍କ ନାଟ୍ୟରସ-ପିପାସା ଚରିତାର୍ଥ ହେଉଥିଲା। ନାଟ୍ୟକାର ରାମଶଙ୍କର ରାୟ ଓ ଅଶ୍ୱିନୀ କୁମାର ଘୋଷ ଯେଉଁ ନାଟ୍ୟକର୍ମର ସଞ୍ଚାଳକ ଥିଲେ, ତାହା ଥିଲା ମୁଖ୍ୟତଃ ଇଂରେଜୀ ବା ପାଶ୍ଚାତ୍ୟାନୁରାଗୀ ନାଟ୍ୟକର୍ମ। ତହିଁରେ ଯତ୍‌କିଞ୍ଚିତ୍ ସଂସ୍କୃତ ନାଟ୍ୟଧାରାର ପ୍ରଭାବ ରହିଥିଲା ସତ୍ୟ, ମାତ୍ର ଲୋକନାଟ୍ୟ ଓ ଲୋକପ୍ରିୟ ନାଟ୍ୟଧାରାର ପ୍ରଭାବ ପ୍ରାୟ ନଥିଲା । ଏହି ପୃଷ୍ଠପଟରେ ଦେଖାଦେଲେ ଗୋବିନ୍ଦ ଶୂରଦେଓ(୧୮୮୪-୧୯୩୮) କାନ୍ତକବି ଲକ୍ଷ୍ମୀକାନ୍ତ(୧୮୮୭-୧୯୫୩), ମୋହନ ସୁନ୍ଦର ଦେବଗୋସ୍ୱାମୀ (୧୮୯୨-୧୯୪୮) ଏବଂ କୃଷ୍ଣପ୍ରସାଦ ବସୁ (୧୮୯୪-୧୯୬୮)। ପୁରୀର ରାସରସିକ ମୋହନ ସୁନ୍ଦର ଓ କଟକ କେନ୍ଦ୍ରାପଡାର ନାଟ୍ୟକର୍ମୀ ଗୋବିନ୍ଦଚନ୍ଦ୍ରଙ୍କ ସହିତ କୃଷ୍ଣପ୍ରସାଦଙ୍କ ସଂପର୍କ ଥିଲା କ୍ଷୀଣ, କିନ୍ତୁ କାନ୍ତ କବି ଲକ୍ଷ୍ମୀକାନ୍ତଙ୍କ ସହ ତାଙ୍କର ସମ୍ପର୍କ ଥିଲା ଘନିଷ୍ଠ । ଯାହାହେଉ, ଏହି କୃତୀ ଚତୁଷ୍ଟୟ ନାଟକ-ରଚନା ଓ ନାଟ୍ୟ- ଅଭିନୟରେ ଏକ ନିର୍ଦ୍ଦିଷ୍ଟ ଆଭିମୁଖ୍ୟ ଘେନି କାର୍ଯ୍ୟ କରିଥିବାର ଦେଖାଯାଏ।

କ'ଣ ଏହି ଆଭିମୁଖ୍ୟ ? କ'ଣ ଏହି ନାଟ୍ୟକର୍ମର ଅଭିନବତ୍ୱ ? ଗୋଟିଏ ଦିଗରେ ଆମର ପାରଂପରିକ ଲୌକିକ ନାଟ୍ୟଧାରା, ଯାହାକୁ 'ଯାତ୍ରା' ଅଭିଧାରେ ଚିହ୍ନିତ କରାଯାଇପାରେ। ଅନ୍ୟ ଦିଗରେ ପାଶ୍ଚାତ୍ୟ ନାଟ୍ୟଧାରା ବା ଥିଏଟର୍, ଯାହାକୁ ବଙ୍ଗୀୟମାନେ ସେତେବେଳେ 'ବିଲାତୀ ଯାତ୍ରା' ନାମରେ ଅଭିହିତ କରିଥିଲେ। ପ୍ରଥମଟି ରୂପରେ ବିଚିତ୍ର ଓ ବହୁବିଧ; ସମଗ୍ର ରାଜ୍ୟରେ ସାଧାରଣ ଜନତା ଦ୍ୱାରା ଆଦୃତ । ଦ୍ୱିତୀୟଟି, ଅଭିନବ, ଅଭିଜାତ ଓ ବିଦେଶାଗତ; ମୁଷ୍ଟିମେୟ ଆଧୁନିକ ରୁଚିସଂପନ୍ନ ଗ୍ରାହକ ସମାଜ ଦ୍ୱାରା ଆଦୃତ । ନାଟ୍ୟକର୍ମରେ ଏହି ଦୁଇଟି ଧାରାରେ ସମବାୟ ବା ସମନ୍ୱୟ ସ୍ଥାପନର ବିଶେଷ ଆବଶ୍ୟକତା ଉପଲବ୍ଧି କରିଥିଲେ ଏହି ନାଟ୍ୟକର୍ମୀ ଚତୁଷ୍ଟୟ । ସେମାନେ ସଭିଏଁ ଉଣାଧିକେ ଇଂରେଜୀ ଶିକ୍ଷା ଦୀକ୍ଷା ଲାଭ କରିଥିଲେ, ଆଧୁନିକ ରୁଚି ଓ ରୀତିର ଥିଲେ ବ୍ୟକ୍ତିତ୍ୱ । କିନ୍ତୁ ଆମର ଦୀର୍ଘ ଉଜ୍ଜ୍ୱଳ ନାଟ୍ୟ ପରମ୍ପରା ବିଷୟରେ ସଚେତନ ଥାଇ ସେମାନେ ତାକୁ ଏଡାଇ ଯାଇ ପାରିନଥିଲେ । ନିଜ ନିଜର ନାଟ୍ୟକର୍ମରେ ସେମାନେ ଯାତ୍ରା ଓ 'ବିଲାତୀ ଯାତ୍ରା' ର ସହାବସ୍ଥାନ କରିବା ପାଇଁ ଉଦ୍‌ଯୋଗୀ ହୋଇଥିଲେ । ସେହି ଉଦ୍‌ଯୋଗ କର୍ମ ବ୍ୟର୍ଥ ହୋଇ ନଥିଲା । ଓଡ଼ିଶାର ଗ୍ରାହକ ସମାଜ ସେମାନଙ୍କ ନାଟ୍ୟକର୍ମକୁ ପସନ୍ଦ କରିଥିଲେ ଏବଂ ଆମର ନାଟ୍ୟ ସାହିତ୍ୟ ଇତିହାସରେ ସେମାନଙ୍କ ଉଜ୍ଜ୍ୱଳ ସ୍ୱାକ୍ଷର ଅଙ୍କିତ ହୋଇ ରହିଲା ।

ସେମାନେ ସାମାଜିକ ବିଷୟ ଘେନି ନାଟକ ରଚନା କରିବା ସଙ୍ଗେ ସଙ୍ଗେ ଅଧିକ ପରିମାଣରେ ଆମ ପୁରାଣରୁ ବିଭିନ୍ନ କଥାବସ୍ତୁ ଚୟନ କରିଥିଲେ । କିନ୍ତୁ ପୌରାଣିକ ବିଷୟରୁ ଅଲୌକିକ ଅତିପ୍ରାକୃତିକ ଉପାଦାନ ଯଥାସମ୍ଭବ ଊଣା କରି ନାଟ୍ୟ କୃତିରେ ବାସ୍ତବତାର ସ୍ପର୍ଶ ଦେଲେ। ଗୀତ ଓ ଦାୟିକାର ବାହୁଲ୍ୟ ପରିତ୍ୟାଗ କରି ଗଦ୍ୟ ସଂଳାପର ପରିମାଣ ବୃଦ୍ଧି କଲେ । ପାତ୍ର ପାତ୍ରୀଙ୍କ ତୁଣ୍ଡରେ ଏକୋକ୍ତି, ସ୍ୱଗତୋକ୍ତି, ଦୀର୍ଘ ବକ୍ତୃତା ଧର୍ମୀ ସଂଳାପ ଖଞ୍ଜି ଦେଲେ । ନାଟ୍ୟାଭିନୟ ଓ ମଞ୍ଚାୟନ କ୍ଷେତ୍ରରେ ମଧ୍ୟ ଆଣିଲେ କିଛି ପରିବର୍ତ୍ତନ । ମୁକ୍ତ ରଙ୍ଗମଞ୍ଚ ପରିବର୍ତ୍ତେ ସାଧାରଣତଃ ଏକମୁଖୀ ରଙ୍ଗମଞ୍ଚ ପ୍ରବର୍ତ୍ତନ କଲେ; ତହିଁରେ ଦୃଶ୍ୟପଟର ବ୍ୟବହାରରେ ବାହୁଲ୍ୟ ରହିଲା ନାହିଁ। ରଙ୍ଗମଞ୍ଚର ସାଜସଜ୍ଜାରେ କୃତ୍ରିମତା ଊଣା କରି ପୂର୍ବାପେକ୍ଷା ସରଳ ସହଜ ରୀତି ଅନୁସରଣ କଲେ । ନାଟକ ରଚନା ଓ ନାଟ୍ୟାଭିନୟରେ ଏହି ସବୁ ପରିବର୍ତ୍ତନର ଦିଶାରୀ ଥିଲେ ଉକ୍ତ ନାଟ୍ୟ କର୍ମୀ ଚତୁଷ୍ଟୟ। କିଛୁତ୍ ପରବର୍ତ୍ତୀ କାଳରେ ବଙ୍ଗୀୟ ନାଟ୍ୟ ପୁରୁଷ ବାଦଲ ସରକାର (୧୯୨୬) ଯେଉଁ 'ଥାର୍ଡଥିଏଟର'ର

ପ୍ରବର୍ତ୍ତନ କରିଥିଲେ, ତାହା ମୋଟାମୋଟି ଭାବରେ ଉପରୋକ୍ତ ନାଟ୍ୟକର୍ମର ଅନୁବର୍ତ୍ତନ ବୋଲି କହିଲେ, ଭୁଲ ହେବନାହିଁ । (ଏହି ପ୍ରସଙ୍ଗରେ ୧୯୯୭ ମସିହାରେ ପ୍ରକାଶିତ ଓଡ଼ିଶା ସାହିତ୍ୟ ଏକାଡେମୀ ଦ୍ୱାରା ପୁରସ୍କୃତ 'ପ୍ରସଙ୍ଗ: ନାଟକ-ଏକାଙ୍କିକା' ନାଟ୍ୟାଲୋଚନା ଗ୍ରନ୍ଥର 'ଥାର୍ଡଥିଏଟର୍', 'ସୌଖୀନ ନାଟ୍ୟକର୍ମ' ପ୍ରଭୃତି ପ୍ରବନ୍ଧ ଦ୍ରଷ୍ଟବ୍ୟ)

ଏହି ପରିପ୍ରେକ୍ଷୀରେ କବି କୃଷ୍ଣପ୍ରସାଦ ବସୁଙ୍କ କୃତିତ୍ୱ ବିଚାର କରିବାକୁ ହେବ। ଡକ୍ଟର ବିଜୟ କିଶୋର ସାମଲ ଏଥିପାଇଁ ସାଧମତେ ପ୍ରଚେଷ୍ଟା କରିଛନ୍ତି ଏବଂ ଆପଣା ପ୍ରଚେଷ୍ଟାରେ ବହୁ ପରିମାଣରେ ସାଫଲ୍ୟମଣ୍ଡିତ ହୋଇଛନ୍ତି । ଚାରି-ପାଞ୍ଚ ବର୍ଷ ତଳେ ଓଡ଼ିଶା ସାହିତ୍ୟ ଏକାଡେମୀର କର୍ତ୍ତୃପକ୍ଷ ଯାଜପୁରର ଜଣେ ଲେଖକଙ୍କ ଦ୍ୱାରା କୃଷ୍ଣପ୍ରସାଦଙ୍କ ଉପରେ ରଚିତ ଏକ ମନୋଗ୍ରାଫର ପାଣ୍ଡୁଲିପି ସମୀକ୍ଷା ପାଇଁ ମୋ ପାଖକୁ ପଠାଇଥିଲେ । ଦେଖିଲି - ରଚନାଟି ବିଭିନ୍ନ ଦୋଷତ୍ରୁଟିରେ ପରିପୂର୍ଣ୍ଣ। ବିଶେଷତଃ ଆଲୋଚନାରେ ସଙ୍ଗତି ଓ ସମତୁଲତା ନଥିଲା । ସେହି ସବୁ ଦୋଷ ଦୁର୍ବଳତା ସଂପୃକ୍ତ ଲେଖକଙ୍କ ଦ୍ୱାରା ସଂଶୋଧନ ପୂର୍ବକ ମନୋଗ୍ରାଫଟି ପ୍ରକାଶ କରିବାକୁ ପରାମର୍ଶ ଦେଇ ମୁଁ ସାହିତ୍ୟ ଏକାଡେମୀକୁ ପାଣ୍ଡୁଲିପି ଫେରସ୍ତ ପଠାଇ ଦେଇଥିଲି । ମନୋଗ୍ରାଫ୍‌ଟି ପ୍ରକାଶିତ ହେଲା କି ନାହିଁ, ଜାଣେନା । ଡକ୍ଟର ସାମଲଙ୍କ ଉପସ୍ଥିତ ଆଲୋଚନାଟି ଉକ୍ତ ପାଣ୍ଡୁଲିପିର ଲେଖାଠାରୁ ନିଃସନ୍ଦେହରେ ଉତ୍କୃଷ୍ଟ ।

ଅଲୋଚକ ଶ୍ରୀ ସାମଲ ଅନୁସନ୍ଧିତ୍ସୁ ଦୃଷ୍ଟି ଘେନି କବିମଞ୍ଜୁଳଙ୍କ ଜୀବନ ବୃତ୍ତାନ୍ତ, ଶିକ୍ଷା ଦୀକ୍ଷା, କୋଲକାତାରେ ପ୍ରବାସ ଜୀବନ, ବିପ୍ଳବୀ ଦଳରେ କାର୍ଯ୍ୟକ୍ରମ, ବିରଜା ଅପେରା, ଶ୍ୟାମସୁନ୍ଦର ଥିଏଟର୍ ଆଦି ନାଟ୍ୟ-ପ୍ରତିଷ୍ଠାନ ସହ ସଂପର୍କ ତଥା ସେଗୁଡ଼ିକର ସଂଗଠନ କାର୍ଯ୍ୟ, ଶେଷ ଜୀବନରେ ବିଭିନ୍ନ ସ୍କୁଲରେ ଶିକ୍ଷକତା ଇତ୍ୟାଦିର ଆଲୋଚନା କରିଛନ୍ତି। ଆଲୋଚନା ତଥ୍ୟପୂର୍ଣ୍ଣ, ମାତ୍ର ବହୁ ସ୍ଥାନରେ ନକ୍ସାଧର୍ମୀ ବା ସ୍କେଚି(Sketchy)। ଘଟଣାବଳୀର ବିସ୍ତୃତ ବିବରଣୀ ନାହିଁ। ଏପରିକି କୃଷ୍ଣପ୍ରସାଦଙ୍କ ନାଟକ, କାବ୍ୟ ଓ ଗଦ୍ୟ ରଚନାବଳୀର ଆଲୋଚନା କ୍ଷେତ୍ରରେ ସେହି ଅବସ୍ଥା। ତଥ୍ୟ ଓ ବିବରଣୀ ପ୍ରଦାନ ନକ୍ସାଧର୍ମୀ ହେଲେ ଚଳିଯାଇପାରେ। ମାତ୍ର ବ୍ୟାଖ୍ୟା ଓ ବିଚାର-ବିଶ୍ଳେଷଣରେ ସେହି ପନ୍ଥା ଅନୁସୃତ ହେଲେ ଚଳିବ କି ? ସେହି କ୍ଷେତ୍ରରେ ସବୁ କଥା ଫେଡ଼ି କହିବାକୁ ପଡ଼ିବ। ସ୍ପଷ୍ଟ ଭାବରେ ବୁଝାଇ ଗ୍ରାହକ ସମାଜର ହୃଦୟଙ୍ଗମ କରାଇବାକୁ ହେବ। କେତେକ ସ୍ଥଳରେ କୃଷ୍ଣପ୍ରସାଦଙ୍କ କୃତିତ୍ୱର ବିଚାର ବିଶ୍ଳେଷଣ ବେଳେ ଆଲୋଚକ ସାମଲ ପୁଣି କୃଷ୍ଣ ପ୍ରସାଦଙ୍କ କୃତିସମୂହର ଉଦାହରଣ

ଦେଇନାହାଁନ୍ତି । ଫଳରେ ଆଲୋଚନା ପ୍ରାମାଣିକ ଓ ପରିପୁଷ୍ଟ ହେବାରେ ପ୍ରତିବନ୍ଧକ ସୃଷ୍ଟି ହୋଇଛି।

ଆଲୋଚକ ଡ଼କ୍ଟର ସାମଲଙ୍କ ଗଦ୍ୟ ରଚନା ଶୈଳୀ ସ୍ୱଚ୍ଛ ଓ ପରିଚ୍ଛନ୍ନ। କୃଷ୍ଣ ପ୍ରସାଦଙ୍କ ସଂପର୍କିତ ବିଭିନ୍ନ ତଥ୍ୟ ଓ ତାଙ୍କ ସାହିତ୍ୟ ସୃଷ୍ଟିର ଆଲୋଚନାକୁ ସେ ବେଶ୍ ସାବଲୀଳ ରୀତିରେ ପରିବେଷଣ କରିଛନ୍ତି। ପଢ଼ିଗଲା ବେଳେ କେଉଁଠି ଅଟକି ରହିବାକୁ ପଡ଼େ ନାହିଁ। ଶୈଳୀ ଅନୁଯାୟୀ ସରଳ ସର୍ବଜନବୋଧ ଭାଷାବିନ୍ୟାସ ।ତହିଁରୁ ଗୋଟିଏ ଉଦାହରଣ:-"ଓଡ଼ିଶାର ଅନ୍ୟତମ ଜନପ୍ରିୟ ଲୋକନାଟ୍ୟ ପାଲା ପାଇଁ ସ୍ୱତନ୍ତ୍ର ଖଣ୍ଡକାବ୍ୟର କୃଷ୍ଣପ୍ରସାଦ ହେଉଛନ୍ତି ଆଦି ସ୍ରଷ୍ଟା। ପ୍ରାଚୀନ କାବ୍ୟ ଓ ପୁରାଣରୁ ଆଦର୍ଶ ଉପାଖ୍ୟାନମାନ ଚୟନ କରି ପାରଂପରିକ ରାଗରାଗିଣୀର ସଂଯୋଜନାରେ ତାଙ୍କର ପାଲା କାବ୍ୟ ଗୁଡିକ ଉତ୍କଳ ବାଣୀ ଭଣ୍ଡାରର ଅମୂଲ୍ୟ ସମ୍ପଦ । ପାଲା କାବ୍ୟମାନଙ୍କର ପରିବେଷଣ-ଶୈଳୀ, ଗାୟକମାନଙ୍କର ପୋଷାକ ପରିଚ୍ଛଦ ଆଦି ସଂପର୍କରେ ବିଶେଷ ନିର୍ଦ୍ଦେଶ ଫଳରେ ଓଡ଼ିଆ ପାଲା କ୍ଷେତ୍ରରେ ଏକ ବୈପ୍ଳବିକ ପରିବର୍ତ୍ତନ ଆଣିବାରେ ସେ ସକ୍ଷମ ହେଲେ। ସାଧାରଣ ଦର୍ଶକଙ୍କଠାରୁ ବିଦଗ୍ଧ ଶ୍ରୋତା ଓ ଦର୍ଶକମାନଙ୍କ ପାଇଁ ପାଲା ହୋଇ ଉଠିଲା ବଳିଷ୍ଠ ମନୋରଞ୍ଜନ ମାଧ୍ୟମ।" (ପୃ୧୪୭)

ଯାହାହେଉ, ଏହି ପୁସ୍ତକର ଆଲୋଚକ ବିଜୟକିଶୋର କବି କୃଷ୍ଣପ୍ରସାଦ ବସୁଙ୍କୁ ନାଟ୍ୟକାର, କାବ୍ୟକାର, ସଙ୍ଗୀତଜ୍ଞ, ଅଭିନେତା, ନାଟ୍ୟନିର୍ଦ୍ଦେଶକ (ଓସ୍ତାଦ), ଗଦ୍ୟଶିଳ୍ପୀ ରମ୍ୟରଚନା କାର ଇତ୍ୟାଦି ଭାବରେ ଆମ ସମକ୍ଷରେ ଉପସ୍ଥାପନ କରିଛନ୍ତି, ଏହା ହିଁ ପ୍ରଶଂସନୀୟ ବ୍ୟାପାର। ଜଣେ ଶକ୍ତିଶାଳୀ ଅଥଚ ସ୍ୱଳ୍ପାଲୋଚିତ ସାହିତ୍ୟ-ସଙ୍ଗୀତ ସ୍ରଷ୍ଟା ତଥା ନାଟ୍ୟ ସଂଗଠନକାରୀଙ୍କୁ ଆମ ସାହିତ୍ୟ-ଇତିହାସରେ ପ୍ରତିଷ୍ଠିତ କରାଇ ପାରିଥିବାର ଶ୍ରେୟ ତାଙ୍କର ପ୍ରାପ୍ୟ।

## ପୁଚ୍ଛାଗ୍ର

କବିମଞ୍ଜୁଳ କୃଷ୍ଣପ୍ରସାଦଙ୍କ ସହ ମୋର ବ୍ୟକ୍ତିଗତ ସଂପର୍କ ଥିଲା। 'ତପ୍ତ ବୈତରଣୀ'ର ଗୋଟିଏ ପଟରେ ସେ, ଅନ୍ୟ ପଟରେ ମୁଁ। ଆମର ପ୍ରଣୟ ଘନିଷ୍ଠ ଓ ଅନ୍ତରଙ୍ଗ ହେବାରେ ବିଶେଷ ପ୍ରତିବନ୍ଧକ ନ ଥିଲା। କେତେଥର ଯାଇ ମୁଁ ତାଙ୍କର ଯାଜପୁର କୁଆଁସରପୁର ବାସ ଭବନରେ ଅତିଥି ହୋଇଥିଲି, ଏବଂ ତାଙ୍କ ବାଡ଼ିର ପଇଡ଼ପାଣି ପିଇ ତୃପ୍ତି ଲାଭ କରିଥିଲି। ଏ ସ୍ମୃତି ବଡ଼ ମଧୁର, ମାତ୍ର ଏବେ ତାଙ୍କର ଅବର୍ତ୍ତମାନରେ ଦୁଃଖାବହ । ଭଦ୍ରକ କଲେଜରେ ମୁଁ ଅଧ୍ୟାପନା କରୁଥିଲାବେଳେ

କେତେଥର ତାଙ୍କୁ କଲେଜର ସଭାସମିତିରେ ଉଦ୍‌ବୋଧନ ଦେବା ପାଇଁ ନିମନ୍ତଣ କରି ଆଣିଥିଲି । ଭଦ୍ରକ ଆସିଲେ, ସେ ବେଳେ ବେଳେ କଲେଜର ତତ୍‌କାଳୀନ ସେକ୍ରେଟେରି ଏଡ୍‌ଭୋକେଟ୍ ନରେନ୍ଦ୍ର ପ୍ରସାଦ ଦାସଙ୍କ ସାନ୍ଦାମୀ କୂଳସ୍ଥ ବାସଭବନରେ, ଆଉ କେତେବେଳେ କଲେଜ କେଂପସ୍ ଭିତରେ ଥିବା ମୋ କ୍ୱାର୍ଟସରେ ରହୁଥିଲେ । ଆମ ମଧ୍ୟରେ ଓଡ଼ିଶାର ନାଟ୍ୟକର୍ମ ସମ୍ପର୍କରେ ବିଶେଷତଃ ପାରଂପରିକ ଯାତ୍ରା ସମ୍ପର୍କରେ ଆଳାପ-ଆଲୋଚନା ହେଉଥିଲା । ତହିଁରୁ ପାଇଥିବା କେତେକ ତଥ୍ୟ ମୁଁ ମୋର ନାଟ୍ୟାଲୋଚନା ଗ୍ରନ୍ଥ ମାନଙ୍କରେ ସନ୍ନିବେଶିତ କରିଛି । ପରଲୋକର କିଛି ବର୍ଷ ପୂର୍ବରୁ ୧୫/୩/୧୯୬୨ ତାରିଖରେ ସେ ମୋତେ ଲେଖିଥିବା ଏକ ଦୀର୍ଘ ପତ୍ରରୁ (ଏହାହିଁ ମୋ ନିକଟକୁ ତାଙ୍କର ଶେଷ ପତ୍ର) କିୟଦଂଶ ଏଠାରେ ଉଦ୍ଧାର ପୂର୍ବକ ଏ ଲେଖାର ଉପସଂହାର କରୁଛି:-

"କହିପାରେଁ ବଞ୍ଚିଛି ମାତ୍ର । ଗୋଟିଏ ଆଖିରେ Cataract: develop ହୋଇନାହିଁ। ଅନ୍ୟ ଆଖି ମଧ୍ୟ ମ୍ଳାନ ପଡିଆସୁଛି । ବୟସ ହେବ ୭୦, ୨ ଫୁଟ ବାହାରେ ସୂକ୍ଷ୍ମ କିଛି ଦିଶୁନି। ମନ୍ଦିରରୁ ଖସି ପଡି ହାତ ଗୋଡ଼ Clavicle ବୋନ୍ ଭାଙ୍ଗିଗଲା ତହିଁ ସଙ୍ଗେ ଶୋଥ ମୂତ୍ର କୃଚ୍ଛ। ଅର୍ଶ,ରକ୍ତ ଶୂନ୍ୟତାରେ ୩ ବର୍ଷ Hospital ରେ ଗଲା । ତଥାପି କଲମ ଛାଡ଼ିନି, ଛାଡ଼ିଲେ ବଞ୍ଚିବିନି ବୋଧହୁଏ । ବୁଲୁ (କବିଙ୍କ ପୁତ୍ର ବିଶ୍ୱେଶ୍ୱର ବସୁ) Howrah ରେ ଅଛି । ଶୁଣୁଛି Sub-judge recommendation ହେଲାଣି । ଏଠାରେ ମାତ୍ର ମୁଁ ଓ ମୋର ପ୍ରେୟସୀ ବୁଲୁ ମା'- typhoid ପରେ ନିର୍ଘାତ କାଲୁଣୀ । ଚାଷ ବାସ ରୋଜଗାର ଚାଲିଛି ଗୋଟିଏ ପ୍ରକାର । ଭାଇମାନଙ୍କ ସଙ୍ଗରେ ତ ପୂର୍ବରୁ ଚାଲିଛି ମନୋମାଳିନ୍ୟ। ଛିଡିନି, ଛିଡିବନି । ତଥାପି ବୁଢ଼ାଟି ବୁଢ଼ାର ଆଶ୍ୱାସନା ।

"ଗାଈ ତିନୋଟି ରଖିଛି । ଦୁଧ କିଛି ମିଳୁଛି । କୁକୁର ଆମ ଗୋଷ୍ଠୀରେ ଗୋଟି ନ-ଦଶୋଟି ସପରିବାରେ ଆଶ୍ରିତ । କାଳେ ଛାତ ଗଳିପଡି ବୁଢ଼ୀ ଜୀବନ ଚାଲିଯିବ, ଅଷ୍ଟ ଗ୍ରହ ଭୟେ ନାତୁଣୀଟି ୧୦ ବର୍ଷର, ଅଣା ହୋଇଛି । ସେ L.P. ରୁ ଯାଇଥିଲା ଉତ୍କଳରୁ Calcutta University କୁ । ପୁଣି ଦେଢ଼ ମାସକ ପରେ Utkal ରେ ମାଇନର୍ । ତାକୁହିଁ ପଡାଉଛି ଦଣ୍ଡେ ଘଡ଼ିଏ । ଟିକେ ଫୁର୍ସତ୍ ହେଲେ ଯିବି Bhadrak Bus ରେ। ଦେଖା କରିବି ନରବାବୁଙ୍କୁ ଓ ଆପଣଙ୍କୁ । କିନ୍ତୁ ବର୍ତ୍ତମାନ ମାର୍ଚ୍ଚ ମାସ । ସକାଳୁ ଜଳକର ପିଆଦା ମୁନିସିପାଲ୍ ନାଗରା- ଦେବନାଗରା ବୋଲାଯାଇପାରେ । "ଜୀବନଟା ଚାଲିଛି ଏହିପରି । ଯିବି, ମୋର ଝିଅର(ଏହି

ଲେଖକର ସ୍ତ୍ରୀ) ଖାନା ନିଶ୍ଚେ ଖାଇବି । ବାଟବଣା ଆପଣ ମାନଙ୍କୁ ନିଶ୍ଚେ ମାହଜଣା ପଥର ନିର୍ଦ୍ଦେଶ ଦେବି । ବହୁ ବାର୍ତ୍ତା ଅଛି ଶୁଣିବାର ଶିଖିବାର । ଲୋକେ କହୁଛନ୍ତି - ବୁଡା ହୋଇ ଏ ମରିବାକୁ ବସିଛି, ତେବେ ବି ଉତ୍ପାତ ବୁଦ୍ଧି ଛାଡୁନି । ସତ୍ୟ କୃଷବାବୁ, ଆଜି ପଛେ ଗାଳି ଦିଅନ୍ତୁ , ଏ 'ଶାଳା କଣା ଖବିସ' ମଲେ, ଆପଣମାନେ ନିଶ୍ଚେ କାନ୍ଦିବେ ।"

(ପ୍ରଫେସର ଡକ୍ଟର କୃଷଚରଣ ବେହେରା)
ସଭାପତି,
ଓଡିଆ ଗବେଷଣା ପରିଷଦ

କଲ୍ୟାଣୀ ନଗର,
କଟକ-୭୫୩୦୧୩
୧୬.୩.୨୦୧୨

●●●

# ଜୀବନାଲେଖ୍ୟ

## ପ୍ରଥମ ପରିଚ୍ଛେଦ

## ଆଦ୍ୟ ପର୍ଯ୍ୟାୟ

### ବଂଶ ପରିଚୟ ଓ ବାଲ୍ୟ ଜୀବନ

୧୮୯୪ ମସିହା ଅକ୍ଟୋବର ୨୧ ତାରିଖ ରବିବାର କବିମଞ୍ଜୁଳ କୃଷ୍ଣପ୍ରସାଦ ଭୂମିଷ୍ଠ ହୋଇଥିଲେ। ଓଡ଼ିଆ ସାହିତ୍ୟ କ୍ଷେତ୍ରରେ ଏଇ ସମୟ ଥିଲା ଆଧୁନିକ ସାହିତ୍ୟ ଅଭ୍ୟୁଦୟର ପ୍ରଥମ ପର୍ଯ୍ୟାୟ। ବସୁଙ୍କ ଜନ୍ମସମୟରେ ଓଡ଼ିଶାରେ ମଧ୍ୟଯୁଗୀୟ ଓ ଆଧୁନିକ ସାହିତ୍ୟ ଆଦର୍ଶକୁ ନେଇ ମସି ସଂଘର୍ଷ ଅବ୍ୟାହତ ରହିଥାଏ। ଆଧୁନିକ ଯୁଗ ଆଧୁନିକ ସାହିତ୍ୟ ପାଇଁ ଉପଯୁକ୍ତ ସମୟ ଓ ରାଧାନାଥ ହିଁ ଆଧୁନିକ ସାହିତ୍ୟର ସର୍ବଶ୍ରେଷ୍ଠ ଶିଳ୍ପୀ ଏହା ପ୍ରତିଷ୍ଠିତ ହେବାକୁ ଯାଉଥାଏ। ରାଧାନାଥ, ମଧୁସୂଦନ, ଫକୀର ମୋହନ, ଗଙ୍ଗାଧର ଆଦି ସ୍ରଷ୍ଟାଗଣ ଆଧୁନିକ ସାହିତ୍ୟର ଅଭିବୃଦ୍ଧି ପାଇଁ ସେମାନଙ୍କର ଆଦ୍ୟ ସାରସ୍ୱତ ଅର୍ଘ୍ୟ ଅର୍ପଣ କରି ସାରିଥାଆନ୍ତି। ଓଡ଼ିଶାର ଭାଷା ଓ ସଂସ୍କୃତି ଅୟନରୁ ଦୁର୍ଭାଗ୍ୟର ଘନତମସା ଅପସୃତ ହୋଇଯାଇ ନବ ଆଲୋକରେ ଏହା ଉଦ୍‌ଭାଷିତ ହୋଇ ଉଠୁଥାଏ, ଏଇ ଶୁଭକ୍ଷଣରେ କବିମଂଜୁଳଙ୍କର ଧରାବତରଣ।

କବି କୃଷ୍ଣପ୍ରସାଦ, ଐତିହାସିକ ଯାଜପୁର ସହରର କୁଆଁସରପୁର ଗ୍ରାମରେ ଏକ ସମ୍ଭ୍ରାନ୍ତ ବଙ୍ଗୀୟ ପରିବାରର ସନ୍ତାନ ଥିଲେ। କବିଙ୍କ ପୂର୍ବପୁରୁଷ ପଶ୍ଚିମ ବଙ୍ଗଳାର ବର୍ଦ୍ଧମାନ ଜିଲ୍ଲା ଅନ୍ତର୍ଗତ ମାହିନଗର ପ୍ରସିଦ୍ଧ ଦକ୍ଷିଣ ରାଢ଼ୀ ବସୁବଂଶର ଲୋକ ଥିଲେ।[୧] କବି ନିଜ ଆତ୍ମଜୀବନୀରେ ଟୋଡରମଲ୍ଲଙ୍କ ଓଡ଼ିଶା ବନ୍ଦୋବସ୍ତ କାଳରେ ତାଙ୍କ ପୂର୍ବ ପୁରୁଷେ ବଙ୍ଗଳା ମାହିନଗରରୁ ଆସିଥିବା କଥା କହିଛନ୍ତି। କର୍ମଯୋଗୀ ଗୌରୀଶଙ୍କରଙ୍କର ପୂର୍ବପୁରୁଷ ଉପାଧି ମଧ ଥିଲା 'ବସୁ'। ସେମାନେ ରାଜକାର୍ଯ୍ୟ କରୁଥିବାରୁ 'ରାୟ' ଉପାଧି ପ୍ରାପ୍ତ ହୋଇଥିଲେ। ବର୍ଦ୍ଧମାନର ଏମାନେ ମଧ ଦକ୍ଷିଣ ରାଢ଼ୀୟ କାୟସ୍ଥ ଥିଲେ।[୨] ଗୌରୀଶଙ୍କରଙ୍କର ଜନ୍ମଭୂମି ଅସୁରେଶ୍ୱରର ରାୟ ପରିବାର ଓ ଯାଜପୁରର ବସୁ ପରିବାର ସମଗୋତ୍ରୀୟ ଓ ଏକସ୍ଥାନରୁ ଓଡ଼ିଶାକୁ ଆସିଥିଲେ। କବିଙ୍କର ପିତା ଗୋବିନ୍ଦପ୍ରସାଦ ଓ ମାତା ବିଷ୍ଣୁପ୍ରିୟା ଦେବୀ। କବିଙ୍କ ପିତା ଗୋବିନ୍ଦ ପ୍ରସାଦ ସେ ସମୟରେ ଜଣେ ପ୍ରଭାବଶାଳୀ ଜମିଦାର। ତାଙ୍କର ମାତା ବିଷ୍ଣୁପ୍ରିୟା ଜଣେ ଅତିଥି

---

୧. ଅଧ୍ୟାପକ କୃଷ୍ଣମଣି ଜେନା – କବିମଞ୍ଜୁଳ କୃଷ୍ଣପ୍ରସାଦ ଗ୍ରନ୍ଥାବଳୀ, ପୃ ୫୪

୨. ମୃତ୍ୟୁଞ୍ଜୟ ରଥ – ମୃତ୍ୟୁଞ୍ଜୟ ଗ୍ରନ୍ଥାବଳୀ, ପୃ ୩୪୭

ବତ୍ସଳା ଓ ଧର୍ମପରାୟଣା ମହିଳା ଥିଲେ। ଏଇ ଭଳି ଜନକ ଜନନୀଙ୍କ ସ୍ନେହରେ କୃଷ୍ଣପ୍ରସାଦଙ୍କ ବାଲ୍ୟଜୀବନ ଆରମ୍ଭ ହୋଇଥିଲା।

ବସୁଙ୍କ ଜନ୍ମ ସମୟରେ ଯାଜପୁରର ପରିବେଶ ବଡ ବିଚିତ୍ର ଥିଲା। ଯାଜପୁର ଆକାଶରେ ସେଦିନ ଘନକୃଷ୍ଣ ବାଦଲର ଗୁରୁ ଗର୍ଜନ। ସମସ୍ତଙ୍କ ଭିତରେ ଭୟ ହତାଶାର ନିର୍ବେଦଭାବ। ଅଳ୍ପଦିନ ଆଗରୁ ଯାଜପୁରର ବ୍ୟାପକ ଅଞ୍ଚଳରେ ପ୍ରଳୟଙ୍କରୀ ବନ୍ୟାଫଳରେ ଜନଜୀବନ ବିପର୍ଯ୍ୟସ୍ତ ହୋଇପଡିଥାଏ। ବନ୍ୟାର ତାଣ୍ଡବରୁ ଏ ଅଞ୍ଚଳର ଜନଗଣଙ୍କୁ ରକ୍ଷା କରିବା ଓ ସହାୟତା ପ୍ରଦାନ କରିବାକୁ ଓଡ଼ିଶାର ଅଗ୍ରଗଣ୍ୟନେତା ମଧୁବାବୁ ଯାଜପୁର ଅଞ୍ଚଳରେ ରହୁଥାଆନ୍ତି ।[୩] ଏ ବନ୍ୟାର ପୂର୍ବାଭାଷ ଏହାର ଠିକ୍ ପୂର୍ବରୁ ଘଟିଯାଇଥିବା କେତେକ ଅଶୁଭ ସଙ୍କେତରୁ ଜଣାପଡିଥାଏ। ବିରଜାପୀଠର ପବିତ୍ର ଶୁଭସ୍ତମ୍ଭ ଯୋଡାମୁଣ୍ଡରୁ ଖସି ପଡିଥାଏ ।[୪] ବିରଜା ମନ୍ଦିର ଓ ତ୍ରିଲୋଚନେଶ୍ୱର ମନ୍ଦିର ଉପରେ ବାରମ୍ବାର ଶାଗୁଣା ବସି ବିପଦର ବହୁ ଆଶଙ୍କା ସୃଷ୍ଟି କରିଥାଆନ୍ତି ।[୫]

କବିଙ୍କ ପିତା ଓ ପ୍ରପିତା ଉଭୟ ଥିଲେ ଧର୍ମପରାୟଣ, ବୈଷ୍ଣବଧର୍ମ ପ୍ରତି ଗଭୀର ଭାବରେ ଅନୁରକ୍ତ । ତାଙ୍କ ଭାଷାରେ "ଗୋସବାପା (ଗୋପୀକାନ୍ତ ବସୁ) ଥିଲେ ସତ୍ୟସନ୍ଧ ଖ୍ୟାତନାମା ଓକିଲଟିଏ, ସାରା ଜୀବନରେ କି ବାଲେଶ୍ୱର ଜୀବନ; କି ଯାଜପୁରରେ ବୈବାହିକ ଜୀବନରେ– ଥାଇ ମଧ ଦିନେ କହିନାହାନ୍ତି ପଦେ ମିଛ କଥା– ଏହା କି ବିଚିତ୍ର ଏବଂ ଏଥିଲାଗି ସେ ଥିଲେ ପରମେ ଦେଶପୂଜ୍ୟ। ହାକିମହୁକୁମା ସାହେବ ସୁବା ମଧ ତାଙ୍କ ସାଧୁ ପ୍ରକୃତିରେ ମୁଗ୍ଧ ହୋଇ ତାଙ୍କ ନାମରେ ମଧ ନମସ୍କାର କରୁଥିଲେ। ପରମେ ଭଗବତୀ ବାବା ମୋର (ଗୋବିନ୍ଦ ପ୍ରସାଦ ବସୁ) ବୈଷ୍ଣବ ଗୋସ୍ୱାମୀ ନିତ୍ୟାନନ୍ଦ ପ୍ରଭୁ ସନ୍ତାନ ଶ୍ରୀମଦ୍ ରଘୁନାଥ ଗୋସ୍ୱାମୀଙ୍କ ନିଷ୍ଠାପର ଭକ୍ତ ଥାଇ ଦାନ, ଧ୍ୟାନ, କୀର୍ତ୍ତନ ମହୋତ୍ସବରେ x x x ପରୋପକାର ଜୀବେଦୟାରେ କାହାରି ବିରୁଦ୍ଧେ ଖଳଚିନ୍ତା ନକରି, ବେଶ୍ୟା ନିଶାରେ ମାତି କୁଳକ୍ଷୟ ପନ୍ଥାମାନ ଧରିନଥିଲେ। (ଆତ୍ମ ଜୀବନୀ)

**ବିଦ୍ୟାଶିକ୍ଷା, ପ୍ରବାସ ଜୀବନ**

ଗ୍ରାମ ଚାଟଶାଳୀରେ କୃଷ୍ଣପ୍ରସାଦଙ୍କ ବିଦ୍ୟାଆରମ୍ଭ ହୁଏ। ଭଗବାନ ଦାଶ ନାମକ ଜଣେ ଅବଧାନ ଥିଲେ ତାଙ୍କର ଆଦ୍ୟଗୁରୁ। ପିଲାବେଳେ କୃଷ୍ଣପ୍ରସାଦ ନାଲିପାଟର

---

୩. ସୂର୍ଯ୍ୟନାରାୟଣ ଦାସ – ଦେଶପ୍ରାଣ ମଧୁସୂଦନ, ପୃ ୧୦୯

୪. ଉତ୍କଳ ଦୀପିକା – ତା ୭.୪.୧୮୮୪

୫. ତତ୍ରୈବ

ଓଟା ଓ ହାତରେ ଦୁଇପଟ ସୁନାବଳା ପିନ୍ଧୁଥିଲେ। ଛାତି ଉପରେ ସୁନାର ପଦକ ମାଳ ଓ କଟିଦେଶରେ ରୂପାର ବେଙ୍ଗପାଟିଆ ଝୁମୁକା ଦୋଳାୟମାନ ହେଉଥିଲା ।[୬]

ଘରୋଇଭାବେ ଅଧ୍ୟୟନ କରି ଯାଜପୁର ଉଚ୍ଚ ଇଂରାଜୀ ବିଦ୍ୟାଳୟରେ ନବମ ଶ୍ରେଣୀରେ ପ୍ରବେଶ କରିଥିଲେ। ସେ ଜଣେ ମେଧାବୀ ଛାତ୍ରଥିଲେ ମଧ୍ୟ ଅତ୍ୟନ୍ତ ଦୁଷ୍ଟ ଥିଲେ। ଦୁଷ୍ଟ ପିଲାଙ୍କୁ ନେଇ ସ୍ମୋକିଂ କ୍ଲବ ଗଠନ କରି ଶିକ୍ଷକଙ୍କ ଦ୍ୱାରା ଦଣ୍ଡିତ ହୋଇ ଧୂମପାନ ଛାଡି ଦେଇଥିଲେ ।[୭]

କବିଙ୍କ ପିତା ସଙ୍ଗୀତ ପ୍ରିୟ ଥିଲେ। ବିରଜାଦେବୀଙ୍କୁ ଦର୍ଶନ ପାଇଁ ଆସୁଥିବା ସାଧୁସନ୍ଥ ତାଙ୍କ ଗୃହରେ ଆଶ୍ରୟ ନେଉଥିଲେ। ସେମାନଙ୍କ ସହିତ କୃଷ୍ଣପ୍ରସାଦ ଭଜନ କୀର୍ତ୍ତନରେ ନିବିଷ୍ଟ ରହୁଥିଲେ। ସେ ମଧ୍ୟ ପିଲା ଦିନେ କବି ଜଗନ୍ନାଥ ପାଣିଙ୍କ ଆଶୀର୍ବାଦ ଲାଭ କରିଥିଲେ। ତାଙ୍କରି ଭାଷାରେ "ଜଗନ୍ନାଥ ପାଣି ଥିଲେ ବାଙ୍ଗରା ସୌମ୍ୟମୂର୍ତ୍ତି, ଶ୍ରୀ ଅଙ୍ଗେ ଶାନ୍ତିପୁରୀ ଚଦର, ବସିଥାଆନ୍ତି ଆମ ସାହିର ଦୁର୍ଗାମେଢ ତଳେ, ସ୍ୱତନ୍ତ୍ର ଆସନେ, କପାଳେ ଚନ୍ଦନଟିକା। ଘନ ଘନ ଘେନୁଥାନ୍ତି ନସ୍ୟ ××× ଗର୍ବ ମୋର ମୁଁ ଲଭିଛି ଦିନେ ତାଙ୍କର ପଦଧୂଳି ।[୮]

ପିଲାବେଳୁ ସଙ୍ଗୀତ ବିଦ୍ୟାପ୍ରତି ଆଗ୍ରହ ହେତୁ ବିଦ୍ୟାଳୟରେ ଅଧ୍ୟୟନ ବେଳେ ସେ ସମସ୍ତଙ୍କ ଦୃଷ୍ଟି ଆକର୍ଷଣ କରିଥିଲେ। ଭକ୍ତକବି ମଧୁସୂଦନ ଯାଜପୁର ଉଚ୍ଚ ବିଦ୍ୟାଳୟ ପରିଦର୍ଶନ କାଳରେ ସ୍ୱରଚିତ 'ଅଖିଳ ବ୍ରହ୍ମାଣ୍ଡ ପତି' କବିତାର ଗାନ ଛାତ୍ର କୃଷ୍ଣ ପ୍ରସାଦଙ୍କ ଲଳିତ କଣ୍ଠରୁ ଶୁଣି ମୁଗ୍ଧ ହୋଇଥିଲେ।[୯] ୧୯୧୨ ମସିହାରେ କୃଷ୍ଣପ୍ରସାଦ ପ୍ରଥମ ଶ୍ରେଣୀରେ ଏଣ୍ଟ୍ରାନ୍ସ ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇ ଉଚ୍ଚଶିକ୍ଷା ପାଇଁ ରେଭେନ୍ସା ମହାବିଦ୍ୟାଳୟରେ ଯୋଗଦେଲେ। ସେଠାରୁ ଆଇ.ଏସ୍.ସି ପରୀକ୍ଷାରେ ପ୍ରଥମ ଶ୍ରେଣୀରେ ଉତ୍ତୀର୍ଣ୍ଣ ହୋଇ ବିଏସସି ପଢିବା ପାଇଁ କଲିକତାର ସେଣ୍ଟଜେଭିଅର କଲେଜରେ ଯୋଗ ଦେଇଥିଲେ।

ରେଭେନ୍ସା ମହାବିଦ୍ୟାଳୟରେ ଅଧ୍ୟୟନ କାଳରେ କବି କୃଷ୍ଣପ୍ରସାଦ ଯେଉଁ ପ୍ରତିଭାଧାରୀ ଓ ବିଦ୍ୱାନମାନଙ୍କର ସଖ୍ୟ ଓ ସାନିଧ ଲାଭ କରିଥିଲେ, ସେମାନଙ୍କ ମଧ୍ୟରେ ଥିଲେ କାନ୍ତକବି ଲକ୍ଷ୍ମୀକାନ୍ତ ମହାପାତ୍ର, ଚିନ୍ତାମଣି ଆଚାର୍ଯ୍ୟ, ପ୍ରାଣକୃଷ୍ଣ ପରିଜା, ଲକ୍ଷ୍ମୀ ନାରାୟଣ ସାହୁ, ଆର୍ତ୍ତବଲ୍ଲଭ ମହାନ୍ତି, ନାରାୟଣ ମୋହନ ଦେ, ଗୋକୁଳାନନ୍ଦ

୬. କୃଷ୍ଣପ୍ରସାଦ ବସୁ– ପଥଭ୍ରଷ୍ଟର ଜୀବନ କଥା, ୫ମ ଭାଗ
୭. ତତ୍ରୈବ
୮. ଏଜନ – ଆଖଡ଼ା ଘରେ ବୈଠକ, ୯କାର
୯. ଏଜନ – ପଥଭ୍ରଷ୍ଟର ଜୀବନ କଥା, ୧ମ ଭାଗ

ପଟ୍ଟନାୟକ, ବାଙ୍କନିଧି ପଟ୍ଟନାୟକ, ବାଞ୍ଛାନିଧି ମହାନ୍ତି, ଗୋବିନ୍ଦ ଶୂରଦେଓ ଏବଂ ବନବିହାରୀ ପଟ୍ଟନାୟକ।[୧୦]

ଓଡ଼ିଆ ସଙ୍ଗୀତ ନାଟକ ପରମ୍ପରାର ସ୍ମରଣୀୟ ବ୍ୟକ୍ତି ଲକ୍ଷ୍ମୀକାନ୍ତ, ଶୂରଦେଓ, ବାଞ୍ଛାନିଧି ମହାନ୍ତି ଓ କୃଷ୍ଣପ୍ରସାଦଙ୍କ ଏକତ୍ର ସହାବସ୍ଥାନ କିପରି ପ୍ରୀତିପଦ ଓ ସୁଖଦାୟକ ଥିଲା ତାର ସ୍ମୃତିଚାରଣ କରିଛନ୍ତି କୃଷ୍ଣପ୍ରସାଦ। "ଲକ୍ଷ୍ମୀଭାଇ, ଶୂରଦେଓ, ବାଞ୍ଛାନିଧି ଓ ମୁଁ ... ଆମ ଚାରିଙ୍କ ମଧ୍ୟରେ ବନ୍ଧନ ଥିଲା ମଧୁମୟ। ସେହି ସଙ୍ଗୀତ ସାହିତ୍ୟମୟ ଆକାଶରେ ରଚନା କରିଥିଲୁ ଆମର ଗୋଟାଏ ସ୍ୱତନ୍ତ୍ର ଗୋଷ୍ଠୀ - ଲକ୍ଷ୍ମୀ ଭାଇ ଥିଲେ ଶ୍ୟାମ, ଶୂରଦେଓ ରାଧା, ବାଞ୍ଛାନିଧି ସୁବଳ ଓ ମୁଁ ମଧୁମଙ୍ଗଳ ; କେବଳ ତୁମକେ ଏତିକି କହିଲେ ଚଳିବ।[୧୧]

କଲେଜ ଜୀବନରେ କବି କୃଷ୍ଣପ୍ରସାଦ ଓ ଜାତୀୟ କବି ବାଞ୍ଛାନିଧି ଏକ କୋଠରୀରେ ରହୁଥିଲେ। ଉଭୟ ଥିଲେ ସଙ୍ଗୀତ ଅନୁରାଗୀ। ସେତେବେଳେ ରେଭେନ୍‌ସା କଲେଜ ଚାଲୁଥିଲା ଆଜିର କଲେଜିଏଟ ସ୍କୁଲରେ। ପ୍ରତ୍ୟହ ସନ୍ଧ୍ୟାରେ - କାଠଯୋଡ଼ିର ବାଲୁକା ଶଯ୍ୟାରେ ବସି କାନ୍ତକବି, ବାଞ୍ଛାନିଧି ଓ କୃଷ୍ଣପ୍ରସାଦ ସଙ୍ଗୀତ ଚର୍ଚ୍ଚା କରୁଥିଲେ। ଏପରିକି ଦୁହେଁ (ବାଞ୍ଛାନିଧି ଓ କୃଷ୍ଣପ୍ରସାଦ) ଗଣିତ ଶ୍ରେଣୀରେ ମଧ୍ୟ ଡେସ୍କ ଉପରେ ହାତରେ ଆଘାତ କରି ଗୀତସ୍ୱର ଧରୁଥିଲେ।[୧୨] ପ୍ରତିଦିନ ସନ୍ଧ୍ୟାରେ ବନ୍ଧୁମାନଙ୍କ ସହ କୃଷ୍ଣପ୍ରସାଦ ମିଳିତ ହେଉଥିଲେ କିଲିଟାରୀ ନିକଟ କ୍ଷୁଦ୍ର ବୁରୁଜ ଉପରେ। ତାଙ୍କରି ଭାଷାରେ "କି ଜାଣି କି ମନ୍ତ୍ର କୁହୁକର ସେ ମିଳନ" ! ଆମେ ତିନୋଟି ପାରା (ବାଞ୍ଛାନିଧି, କୃଷ୍ଣପ୍ରସାଦ, ଲକ୍ଷ୍ମୀକାନ୍ତ) କେହି କାହାରି ବିଚ୍ଛେଦ ସହିପାରୁନଥିଲୁ। ବେଳେ ବେଳେ ମିଳିଯାଉଥିଲେ ଶୂରଦେଓ। ସଙ୍ଗୀତ ସାହିତ୍ୟ ରାଜ୍ୟର ରସିକ ପଥିକଙ୍କର ଯାତ୍ରାପଥ ହେଲେ ମଧ୍ୟ ଅଳ୍ପଦିନର ସେ ମିଳନ ଥିଲା ମହୋତ୍ସବମୟ, ବଡ କମନୀୟ।[୧୩] ରେଭେନ୍ସାରେ ଅଧ୍ୟୟନ କାଳରେ କୃଷ୍ଣପ୍ରସାଦଙ୍କ ପ୍ରେରଣା ଦାତା ଥିଲେ ଅଧ୍ୟାପକ ସତୀଶ ଚନ୍ଦ୍ର ରାୟ। ତାଙ୍କଠାରୁ ବିଭିନ୍ନ ବାଦ୍ୟଯନ୍ତ୍ରର ବ୍ୟବହାର ଶିକ୍ଷା ପାଇଥିଲେ କୃଷ୍ଣ ପ୍ରସାଦ।

କଲିକତାର ସେଣ୍ଟଜେଭିୟାର୍ସ କଲେଜରେ ରସାୟନ ବିଦ୍ୟାରେ ସମ୍ମାନ

---

୧୦. ଅଧ୍ୟାପକ ସୁଧାଂଶୁ ଶେଖର ରାୟ – କାନ୍ତକବି ଲକ୍ଷ୍ମୀକାନ୍ତ : ଜୀବନୀ ଓ ପ୍ରତିଭା, ପୃ ୧୧

୧୧. କୃଷ୍ଣପ୍ରସାଦ ବସୁ – ଡଗର, କାନ୍ତକବି ସଂଖ୍ୟା, ପୃ ୯୧

୧୨. ଡଃ ମନୀନ୍ଦ୍ର ମହାନ୍ତି – ଜାତୀୟ କବି ବାଞ୍ଛାନିଧି, ପୃ. ୧୬

୧୩. କୃଷ୍ଣପ୍ରସାଦ ବସୁ – ଡଗର, କାନ୍ତକବି ସଂଖ୍ୟା, ପୃ ୯୩

(Honours) ଶ୍ରେଣୀରେ ଛାତ୍ରଭାବରେ ଯୋଗଦେଲେ କୃଷ୍ଣପ୍ରସାଦ । ଏଠାରେ ଅଧ୍ୟୟନ କାଳରେ ତାଙ୍କର ସହାଧ୍ୟାୟୀ ଥିଲେ କରନୋଥିୟାନ ଥିଏଟର୍ସର ମାଲିକ ଜେ. ମ୍ୟାଡେନଙ୍କର ପୁତ୍ର ପ୍ରେମଜୀ ମ୍ୟାଡାନ । ତାଙ୍କରି ସାହଚର୍ଯ୍ୟରେ ସେ କଲିକତାରେ ବହୁ ବିଖ୍ୟାତ କଳାକାରମାନଙ୍କଠାରୁ ସଙ୍ଗୀତ ବିଦ୍ୟାରେ ତାଲିମ ପାଇଥିଲେ ।

କୃଷ୍ଣପ୍ରସାଦଙ୍କ କଲିକତାରେ ଅଧ୍ୟୟନ କାଳରେ ବଙ୍ଗଭଙ୍ଗ ହେତୁ କଲିକତାକୁ କେନ୍ଦ୍ର କରି ସମଗ୍ର ବଙ୍ଗଳାରେ ଇଂରେଜ ଶାସନ ବିରୁଦ୍ଧରେ ଆନ୍ଦୋଳନ ତୀବ୍ର ହୋଇ ଉଠୁଥାଏ । ଏହିଠାରେ ଥିବା ବେଳେ କୃଷ୍ଣପ୍ରସାଦ ସ୍ୱାଧୀନତା ଆନ୍ଦୋଳନରେ ସମ୍ପୃକ୍ତ ଥିବା ସନ୍ତ୍ରାସବାଦୀମାନଙ୍କୁ ସହଯୋଗ କରୁଥିଲେ । ବଙ୍ଗଳାର ସୁରେଶ ଧର ଓ କ୍ଷିତୀଶ ଚୌଧୁରୀଙ୍କ ନେତୃତ୍ୱରେ ଯାଜପୁରର ଚୈନପୁରଠାରେ ସନ୍ତ୍ରାସବାଦୀଙ୍କ ଦ୍ୱାରା ସଂଗଠିତ ୧୯୧୪ ମସିହାର ଡକାୟତି ଘଟଣାରେ କୃଷ୍ଣବାବୁଙ୍କର ପ୍ରମୁଖ ଭୂମିକା ଥିଲା । ସନ୍ତ୍ରାସବାଦୀ କାର୍ଯ୍ୟକ୍ରମ ପରିଚଳାନା ପାଇଁ ମୁଖ୍ୟତଃ ଅସ୍ତ୍ରଶସ୍ତ୍ର କ୍ରୟକରି ଇଂରେଜମାନଙ୍କ ମୁକାବିଲା ପାଇଁ ଆବଶ୍ୟକ ଅର୍ଥ ସଂଗ୍ରହ ପାଇଁ ଚଇନିପୁର ସଦେଇ ସାହୁ ଘର ଲୁଣ୍ଠନ କରାଯାଇଥିଲା । ଯାଜପୁରର କୃଷ୍ଣପ୍ରସାଦ ଓ ସାଲେପୁରର ଅଟଳ ବିହାରୀ ଆଚାର୍ଯ୍ୟ ଏହି ଉଦ୍ୟମରେ ସନ୍ତ୍ରାସବାଦୀମାନଙ୍କୁ ଆବଶ୍ୟକ ସହାୟତା ପ୍ରଦାନ କରିଥିଲେ (H. K Mahatab, History of Freedom Movement in Odisha Vol. V P.37) କୃଷ୍ଣପ୍ରସାଦ ପୁଣି କଲିକତାରେ ବନ୍ଦେ ମାତରମ୍ ବିପ୍ଳବୀ ଦଳ ସହିତ ସମ୍ପର୍କ ରଖିଥିଲେ । ଏହାଫଳରେ ସେ ପୋଲିସ ନଜରରେ ରହିଲେ । ତାଙ୍କରି ଭାଷାରେ "ଦୈବକୁ ହଷ୍ଟେଲ ଜୀବନ ମଧ୍ୟରେ ପ୍ରଭୁଙ୍କ ବରାଦରେ ମୁଁ ଜଣେ ବନ୍ଦେ ମାତରମ୍ ଦଳର ବିପ୍ଳବୀ ରାଜଦ୍ରୋହୀ ଡାକୁ ବୋଲି ପୋଲିସର କୃପା କଟାକ୍ଷ ମୋ ଉପରେ ପଡିଲା । ଗଲା, ଆଇଲା, ଶୋଇଲା, ବସିଲା ସବୁଠି ଛାୟା ପ୍ରାୟ ବୁଲିଲେ ପୋଲିସ ମୋ ପଛେ ପଛେ ।[୧୪]

ସେ ଶେଷରେ ୪୬/୧ ଆମହର୍ଷ୍ଟ ଷ୍ଟ୍ରିଟ ମେସରେ ରହିଲେ । ସେ ମେସ୍‌କୁ ମଧ୍ୟ ରାତ୍ରିରେ ପୋଲିସ ଦଖଲ କରି ଅନ୍ୟମାନଙ୍କ ସହିତ କୃଷ୍ଣପ୍ରସାଦଙ୍କୁ ଗିରଫ କରିନେଲେ । ସନ୍ତ୍ରାସବାଦୀ କାର୍ଯ୍ୟକଳାପରେ ସଂପୃକ୍ତ ଥିବା ଅଭିଯୋଗରେ ତାଙ୍କୁ ଅସହ୍ୟ ପୋଲିସ ନିର୍ଯ୍ୟାତନା ମଧ୍ୟରେ ଦୁଇମାସ ଧରି ଜେଲ ହାଜତରେ ରହିବାକୁ ହୋଇଥିଲା ।[୧୫] ଜେଲରୁ ମୁକ୍ତ ହେବାପରେ ସେ ପୋଲିସ୍ ନଜରରେ ରହିଲେ ।

୧୪. କୃଷ୍ଣପ୍ରସାଦ ବସୁ – ତତ୍ରୈବ

୧୫. କୁଳମଣି ଜେନା – କବିମଞ୍ଜୁଳ କୃଷ୍ଣପ୍ରସାଦ ଗ୍ରନ୍ଥାବଳୀ, ପୃ ଛ

ପୋଲିସ ନଜର ଏଡାଇବାକୁ ବନ୍ଧୁ ପ୍ରେମଜୀ ମ୍ୟାଡାନଙ୍କ ପରାମର୍ଶରେ କରୋନେଥିଆନ ଥିଏଟରରେ ଯୋଗଦେଇ ଛଦ୍ମବେଶରେ କିଛିକାଳ କଟାଇଲେ। ପ୍ରଥମେ ପ୍ଲାକକାର୍ଡ ରକ୍ଷକ ଓ ପରେ ଜମାଦାର ଭାବରେ ଦାମୋଦର ମିଶରଜି ଓ ଶେଷରେ ଲାଇଟମାନ ଓ ପରେ ଯନ୍ତ୍ରଶିଳ୍ପୀ ଓ ଅଭିନେତା ଭାବରେ କାମ କରିଥିଲେ (ପଥଭ୍ରଷ୍ଟର ଜୀବନକଥା) । ଏହି ସମୟରେ କରୋନେଥିଆନ ଓ ଷ୍ଟାର ଥିଏଟର ଆଦି ସେ ସମୟର ପ୍ରସିଦ୍ଧ ଥିଏଟରରେ ଅଭିନୟ କରି ମଞ୍ଚକଳାରେ ତାଲିମ ଲାଭ କରିବାର ସୁଯୋଗ ପାଇଲେ। ଏହି ଗୋପନ ରହଣୀ କାଳରେ ସେ ଥିଏଟର ଛାଡି ଚାରଣ କବି ମୁକୁନ୍ଦଦାସଙ୍କ 'ସ୍ୱଦେଶୀ ଯାତ୍ରା' ଦଳରେ ଅଭିନେତା ଭାବରେ ଯୋଗ ଦେଇଥିଲେ। ଲୋକନାଟକ ଯାତ୍ରା ଯେ ସ୍ୱଦେଶୀ ଭାବନା ପ୍ରଚାରର ଏକ ବଳିଷ୍ଠ ମାଧ୍ୟମ ତାହା ମୁକୁନ୍ଦ ଦାସଙ୍କ ସାହଚର୍ଯ୍ୟରୁ ଜାଣିପାରିଥିଲେ। ସେଠାରୁ ବିଦାୟ ନେଇ ମତିଲା ରାୟ ଓ ରାଜକୃଷ୍ଣ ରାୟ ଆଦିଙ୍କ ଅପେରା ପାର୍ଟିରେ ଯୋଗଦେଇ ଅପେରା ପରିଚାଳନା ସମ୍ବନ୍ଧରେ ପ୍ରତ୍ୟକ୍ଷ ଅଭିଜ୍ଞତା ଓ ଜ୍ଞାନ ଲାଭ କରିଥିଲେ।[୧୬] ପ୍ରବାସ ଜୀବନରେ କୃଷ୍ଣପ୍ରସାଦ ଯେଉଁ ବରେଣ୍ୟ ସଙ୍ଗୀତଜ୍ଞ, ଅଭିନେତା, ନାଟ୍ୟକାରଙ୍କ ସାହଚର୍ଯ୍ୟ ଲାଭ କରିଥିଲେ ସେମାନଙ୍କ ମଧ୍ୟରେ ବଙ୍ଗ ରଙ୍ଗମଞ୍ଚର ପ୍ରସିଦ୍ଧ ଗାୟିକା ଆଶ୍ଚର୍ଯ୍ୟମୟୀ, ନିର୍ଦ୍ଦେଶକ ଅମୃତଲାଲ ବସୁ, ଅମର ଦତ୍ତ, ସୁରେନ୍ଦ୍ରନାଥ ଘୋଷ (ଦାନୀ ବାବୁ) ଆଦି ପ୍ରଧାନ। ଏମାନଙ୍କ ପ୍ରଭାବରେ ଛାତ୍ର କୃଷ୍ଣପ୍ରସାଦ ଶିଳ୍ପୀ କୃଷ୍ଣପ୍ରସାଦରେ ପରିବର୍ତ୍ତିତ ହୋଇଯାଇଥିଲେ। ଏହି ମହାନ ଶିଳ୍ପୀମାନଙ୍କ ମଧ୍ୟରୁ ଆଶ୍ଚର୍ଯ୍ୟମୟୀଙ୍କ ସ୍ମୃତିଚାରଣ କରିଛନ୍ତି କୃଷ୍ଣପ୍ରସାଦ ତାଙ୍କ ଆତ୍ମଜୀବନୀ (ପଥଭ୍ରଷ୍ଟର ଜୀବନ କଥା)ରେ। "ସେ ଥିଲେ ବଙ୍ଗ ରଙ୍ଗମଞ୍ଚର ଖ୍ୟାତନାମା ନର୍ତ୍ତକୀ ଓ ଅଭିନେତ୍ରୀ। ସେଦିନ ବଙ୍କିମ ବାବୁଙ୍କ ଦେବୀ ଚୌଧୁରାନୀ ଉପନ୍ୟାସଟି ପରିବେଷିତ ହେଉଥାଏ ମନମୋହନ ଥିଏଟରରେ, ନିଶି ଭୂମିକାରେ ଅବତୀର୍ଣ୍ଣା ଆଶ୍ଚର୍ଯ୍ୟମୟୀ ଗାଇଲେ "କତ ଦିନ ଏସେଛି, କତ ଗାନ ଗେୟେଛି"। ସୁକଣ୍ଠୀଙ୍କର ସ୍ୱରବିନ୍ୟାସର ତାତ୍ପର୍ଯ୍ୟ, ଭାଷାନୁରାଗ କଣ୍ଠର ଭଙ୍ଗୀ ବର୍ଣ୍ଣେ ବର୍ଣ୍ଣେ ଉଠାଇ ନେଲା ମନକୁ ପରା କେଉଁ ମହନୀୟ ଅତିନ୍ଦ୍ରିୟ ରାଜ୍ୟର ବାର୍ତ୍ତା ଶୁଣାଇବାକୁ।" (ପଥଭ୍ରଷ୍ଟର ଜୀବନକଥା)

ଦରବାରୀ, କାନଡ଼ା ରାଗ ଆଧାରିତ ଏ ସଙ୍ଗୀତ ଦର୍ଶକ କୃଷ୍ଣପ୍ରସାଦଙ୍କୁ ଭାବବିହ୍ୱଳ କରି ଦେଇଥିଲା। ବହୁ ଚେଷ୍ଟା ପରେ ସେ ସ୍ୱରଟି ମନେ ନପଡିବାରୁ ନିଜେ ଉପସ୍ଥିତ ହେଲେ ଆଶ୍ଚର୍ଯ୍ୟମୟୀଙ୍କ ଘରେ। ଉଭୟ କବି ଓ ଆଶ୍ଚର୍ଯ୍ୟମୟୀ

---

୧୬. ଶ୍ରୀ ବିଶ୍ୱେଶ୍ୱର ବୋଷ – ଅର୍ଘ୍ୟ, ପୃ ୯

ନିବିଡ ବନ୍ଧୁତାରେ ଆବଦ୍ଧ ହୋଇଗଲେ। ସଙ୍ଗୀତ ଥିଲା ଏ ବନ୍ଧୁତାର ମାଧ୍ୟମ। କବି ତାଙ୍କଠାରୁ ଶ୍ୟାମାସଂଗୀତ, ଟପ୍ପା ଓ ଲୀଳା କୀର୍ତ୍ତନ ଆଦି ଶିକ୍ଷା କଲେ । ତାଙ୍କୁ 'ତୋଲାଗି ଗୋପ ଦାଣ୍ଡ ମନାରେ' ଭଳି କିଛି ଓଡ଼ିଶୀ, ଚମ୍ପୂ, ଛାନ୍ଦ ଶିଖାଇଦେଲେ। ଏ ସମ୍ପର୍କ ଏତେ ଘନିଷ୍ଠ ହେଲା ଯେ କଲିକତାର H.M.V ରେକର୍ଡ କମ୍ପାନୀରେ ତାଲିମଦାତା ଭାବରେ କବିଙ୍କ ନିଯୁକ୍ତି ପାଇଁ ଆଶ୍ଚର୍ଯ୍ୟମୟୀ ସହାୟତା ପ୍ରଦାନ କଲେ। ପୁଣି ମୟୂରଭଞ୍ଜ ରାଜବାଟୀରେ ଆଶ୍ଚର୍ଯ୍ୟମୟୀ ସଙ୍ଗୀତ ପରିବେଷଣ କାଳରେ କୃଷ୍ଣପ୍ରସାଦଙ୍କୁ ରାଜାଙ୍କ ସହିତ ପରିଚିତ କରାଇଥିଲେ। କବିଙ୍କ ପ୍ରତିଭା ପ୍ରତି ଭକ୍ତି ଅର୍ପଣ କରି ତାଙ୍କୁ (କୃଷ୍ଣପ୍ରସାଦ) ଗୁରୁଭାବରେ ରାଜାଙ୍କ ନିକଟରେ ପରିଚିତ କରାଇଥିଲେ। (ଆତ୍ମଜୀବନୀ)

ପ୍ରବାସର ତିକ୍ତ ମଧୁର ଅନୁଭୂତି କୃଷ୍ଣପ୍ରସାଦଙ୍କ ମନରେ ବହୁ ସମ୍ଭାବନା ସୃଷ୍ଟି କରିଥାଏ। ସ୍ୱପ୍ନ ଓ କଳ୍ପନା ପ୍ରବଣ ମନନେଇ ସେ ଭାବୁଥାଆନ୍ତି ଓଡ଼ିଶା ମାଟିରେ ପାଦଦେବା ପରେ ଆଧୁନିକ ରୁଚିର ପରିପନ୍ଥୀ ଓଡ଼ିଆ ଯାତ୍ରାର ସଂସ୍କାର କରିବେ। ଚାରଣ କବି ମୁକୁନ୍ଦ ଦାସଙ୍କ ପରି ଯାତ୍ରା ଦଳ ମାଧ୍ୟମରେ ଓଡ଼ିଶାରେ ଜାତୀୟ ଆନ୍ଦୋଳନକୁ ଅଧିକ ଉତ୍ତାପ ଯୋଗାଇବେ। ତାଙ୍କ ନିଜ ଭାଷାରେ "ପକ୍ଷାନ୍ତରେ କଲିକତା ଅଞ୍ଚଳରେ ହେଉଥିବା ୰ ମୁକୁନ୍ଦ ଦାସଙ୍କର ଯାତ୍ରା ମାଧ୍ୟମେ ସ୍ୱଦେଶୀ ଭାବପ୍ରଚାର ମୋତେ କରିଥାଏ ଯଥେଷ୍ଟ ପ୍ରଭାବାନ୍ୱିତ। ଜଣେ ବିଦ୍ୱାନ ବିଜ୍ଞ ଭଦ୍ର ଲୋକ ନିଜର ଜେଲ୍ ଯିବାକୁ ବେଖାତର କରି ସାରା ବଙ୍ଗଦେଶକୁ ବାୟା କରି ପାରିଛନ୍ତି। ଅନ୍ତରାଳେ ସାରା ଦେଶ ତାଙ୍କୁ ଉତ୍ସାହ, ସହଯୋଗ, ଅପ୍ରତୁଳ ସାହାଯ୍ୟ ଦେଉଛନ୍ତି। ତେବେ ଆମେ ନପାରିବୁ କିଆଁ ?" (ପଥଭ୍ରଷ୍ଟର ଜୀବନକଥା) ବହୁ ଆଶା ଓ ଲକ୍ଷ୍ୟ ନେଇ ଅତି ସନ୍ତର୍ପଣରେ କୃଷ୍ଣପ୍ରସାଦ ଫେରିଲେ ନିଜ ଜନ୍ମଭୂମିକୁ ୧୯୧୬ ମସିହାର ଶେଷ ଆଡ଼କୁ।



# ଜୀବନାଲେଖ୍ୟ

## ଦ୍ୱିତୀୟ ପରିଚ୍ଛେଦ

## ମଧ୍ୟ ପର୍ଯ୍ୟାୟ

**କର୍ମ ଜୀବନ :**

କୃଷ୍ଣପ୍ରସାଦଙ୍କ କର୍ମଜୀବନ ଘଟଣା ବହୁଳ ଓ ବୈଚିତ୍ର୍ୟମୟ, ଉତ୍‌ଥାନ ପତନର ବନ୍ଧୁର ପଥରେ ସେ ଥିଲେ ନିଃସଙ୍ଗ ପଦାତୀ। ପରମ୍ପରାର ସ୍ଥାଣୁତାକୁ ସାମନା କରି ନୂତନତାର ଆବାହନରେ ତାହା ଥିଲା ସତତ ମୁଖର। ତାଙ୍କ ଜୀବନର ଚଲାପଥ କେତେବେଳେ ନବୀନ ସମ୍ଭାବନାରେ ଉଜ୍ଜ୍ୱଳ ତ କେତେବେଳେ ପତନ୍‌ର କ୍ଲେଦ ଯନ୍ତଣା ଭିତରେ ଅସ୍ଥିର। ଦୀର୍ଘ କର୍ମ ପଥରେ ବିଶ୍ରାମହୀନ ତାଙ୍କ ଯାତ୍ରା। ଓଡ଼ିଶାର ଏକ ପ୍ରାନ୍ତରୁ ଅପର ପ୍ରାନ୍ତ ପର୍ଯ୍ୟନ୍ତ ସେ ବୁଲିଛନ୍ତି, ପାଥେୟ ପାଇଁ ସଂଗ୍ରାମ କରିଛନ୍ତି। ବସ୍ତାରୁ ବଲାଙ୍ଗୀର, ବ୍ରହ୍ମପୁରରୁ ବାଲେଶ୍ୱର ପ୍ରତ୍ୟେକ ଅଞ୍ଚଳରେ ନିଜର ପଦାଙ୍କ ଉପସ୍ଥାପନ କରିଯାଇଛନ୍ତି। ଓଡ଼ିଆ ଯାତ୍ରାର ଆଧୁନିକୀକରଣ, ଗଣସାହିତ୍ୟମାଧ୍ୟମରେ, ଲୋକଚେତନାରେ ଜାତୀୟ ଭାବର ପ୍ଲାବନରେ ସେ ଥିଲେ ସଙ୍କଳ୍ପବଦ୍ଧ।

ତାଙ୍କରି ଭାଷାରେ "ଆମର ନିଜକୁ ବେମାଲୁମ କିନ୍ତୁ ଆମେ ହୋଇଗଲୁ ଗୋଟାଏ ବିପ୍ଲବୀ ଡକାୟତ୍ ଦଳର ବିଶିଷ୍ଟ ସଭ୍ୟ। ବ୍ରିଟିଶ ଶାସନର ତୀକ୍ଷ୍ଣ ମୂନିଆ ଦୃଷ୍ଟିରେ ଆମେ ନିପଟ ମଫସଲିଆ କଲିକତା କଲେଜର ଛାତ୍ର ହଠାତ୍ ହୋଇଗଲୁ ଗୋଟାଏ ଗୋଟାଏ ବିପ୍ଲବୀ Suspect। ଆମର ବାପା ମା'ଙ୍କୁ ହେଲା ଗୋପନ ତାଗିଦ୍, କେତେଥର ଅକାରଣେ କାଳେଅକାଳେ ଟଣା ହେଲୁ ଥାନାକୁ। ଫଳରେ ପଢାପଢିରେ ହୋଇଗଲା ଇତିଶ୍ରୀ, ଅଗତ୍ୟା Vagabond ଙ୍କ ପରି ଗାଁରେ ବୁଲିବା, ତାସ୍ ଖେଳିବା ଛଡା ନଥିଲା ଅନ୍ୟ ପନ୍ଥା। କିନ୍ତୁ କୁହୁଳୁ ଥାଏ ମନରେ ଗୋଟିଏ ନିଆଁ। ବିନା ଦୋଷେ ଲାଞ୍ଛନା ଅତଏବ ଦରକାର ପ୍ରତିଶୋଧ" (ମୁଁ କାହିଁକି ଲେଖେ, ଡଗର ୧୪/୨୦) କୃଷ୍ଣ ପ୍ରସାଦଙ୍କ କର୍ମଜୀବନ ଥିଲା ଏଇ ପ୍ରତିଶୋଧ ପାଇଁ ସମୁଦ୍ୟତ। ପ୍ରବାସ ଜୀବନର ସ୍ୱପ୍ନ ଓ ସଂକଳ୍ପକୁ ସାକାର କରିବାକୁ ସେ ଗଠନ କରିବାକୁ ଠିକ୍‌କଲେ ଯାତ୍ରା ଦଳ। ଏ ଦିଗରେ ତାଙ୍କର ଆଦର୍ଶ ହେଲେ ବଙ୍ଗଳାର ମୁକୁନ୍ଦ ଦାସ। ସେ ଲେଖିଛନ୍ତି, "ତେତେବେଳେ ମୈମନସିଂର ଖ୍ୟାତନାମା କବି ଓ ଯାତ୍ରା ବାଲା ବାବୁ ମୁକୁନ୍ଦ ଦାସ ତାଙ୍କ ଯାତ୍ରା ଦଳର ବିପ୍ଲବୀ ଗୀତ ଓ ନାଟକମାନଙ୍କ ଦ୍ୱାରା

ବେପରବାଏ ପ୍ରଚାର କରୁଥାଆନ୍ତି ଜାଗରଣର ମନ୍ତ୍ର, ଆମ ଏ ଦେଶରେ କି ହୋଇପାରେ ନାହିଁ। ସେହିପରି କିନ୍ତୁ ଗୋଟିଏ ବହି କାହିଁ? ସାଥି କିଏ?" (ଡଗର ୧୪/୨୦)

କୃଷ୍ଣପ୍ରସାଦ ନିଜେ ଆରମ୍ଭ କଲେ ଯାତ୍ରା ପାଇଁ ନାଟକ ଲେଖା। ଉତ୍ସାହ ଦେଲେ ବାଞ୍ଛାନିଧି ମହାନ୍ତି। ସେମାନଙ୍କ ମଧ୍ୟରେ ନିଷ୍ପତ୍ତି ହେଲା, ଯଦି ସ୍ୱଦେଶୀ ଯାତ୍ରା ପାଇଁ କବି ମଂଜୁଳଙ୍କୁ ଜେଲ୍ ଯିବାକୁ ପଡେ ତେବେ ଦଳର ନାମ ପରିବର୍ତ୍ତନ କରି ବାଞ୍ଛନିଧି ହେବେ ପରିଚାଳକ, ପର୍ଯ୍ୟାୟକ୍ରମେ ଜେଲ୍ ଯାଇ ମଧ୍ୟ ଦଳଟି ଚଳାଯାଇପାରିବ (ଡଗର ୧୪/୨୦)।

ଯାଜପୁରରେ କୃଷ୍ଣପ୍ରସାଦଙ୍କ ଉତ୍ସାହଦାତା ଥିଲେ ସାହିତ୍ୟିକ ନୀଳମଣି ତର୍କରତ୍ନ। ସେ ମହାଶୟ ଥିଲେ ଅତ୍ୟନ୍ତ ଶୁଚିନିଷ୍ଠବ୍ୟକ୍ତି, ଯାଜପୁର ଉଚ୍ଚବିଦ୍ୟାଳୟରେ କୃଷ୍ଣପ୍ରସାଦଙ୍କ ଶିକ୍ଷକ। ଏହି ଆଦ୍ୟ ଉତ୍ସାହଦାତା ନୀଳମଣିଙ୍କ ଉଦ୍ଦେଶ୍ୟରେ କବି ତାଙ୍କର ବ୍ରାହ୍ମଣ କାବ୍ୟକୁ ଉତ୍ସର୍ଗ କରିଛନ୍ତି। କୃଷ୍ଣପ୍ରସାଦ ଯେତେବେଳେ କଲିକତାରେ ସଙ୍ଗୀତ ଓ ଅଭିନୟରେ ତାଲିମ ନେଉଥିଲେ ସେ ବେଳର ଏକ ଘଟଣା ବର୍ଣ୍ଣନା ଏଠାରେ ଅନେକ ଦୃଷ୍ଟିରୁ ଅପ୍ରାସଙ୍ଗିକ ହେବ ନାହିଁ। ସେ କାଳରେ ଚଉଦ କୁଳାଟର ଗୋପାଳ ଦାସ୍ ଓଡ଼ିଆ ଯାତ୍ରା ଜଗତର ଖୁବ୍ ଜନପ୍ରିୟ ଥିଲେ। ସେ ଯାଜପୁର ବାରୁଣୀ ପଡିଆରେ ଯାତ୍ରା କରୁଥାଆନ୍ତି। ସେ ସମୟ ଯାଜପୁରର ଏସ୍.ଡି.ଓ ଥିଲେ ପୂର୍ଣ୍ଣଚନ୍ଦ୍ର ମଲ୍ଲିକ। ପଣ୍ଡିତ ନୀଳମଣିଙ୍କ ସହ ସେ ମହାଶୟ ଯାତ୍ରା ଦେଖୁଥାଆନ୍ତି। ପୂର୍ଣ୍ଣବାବୁ ଜଣେ ରୁଚିସମ୍ପନ୍ନ ବଙ୍ଗାଳୀ ଭଦ୍ରବ୍ୟକ୍ତି ଥିଲେ। ଯାତ୍ରା ନାଟକ ଥିଲା 'ସୀତା ବନବାସ'। ଯାତ୍ରାର ଗୋଟିପୁଅ ନାଚ, ସଭା ମଧ୍ୟରେ ହନୁମାନର ପ୍ରବେଶ ଓ ହୁଙ୍କାର, ସୀତାଙ୍କ ନୃତ୍ୟ ଓ ଦ୍ୱାରୀର ନିମ୍ନମାନର ହାସ୍ୟ ପରିବେଷଣ ପୂର୍ଣ୍ଣଚନ୍ଦ୍ର ଓ ନୀଳମଣିଙ୍କୁ ପ୍ରୀତିପ୍ରଦ ହୋଇନଥିଲା। ପୂର୍ଣ୍ଣବାବୁ ଓଡ଼ିଆ ଯାତ୍ରା ସମ୍ପର୍କରେ ଦେଇଥିବା କଟୁମନ୍ତବ୍ୟରେ ନୀଳମଣି ବ୍ୟଥିତ ହୋଇ ଛାତ୍ର କୃଷ୍ଣପ୍ରସାଦଙ୍କୁ ପତ୍ରଟିଏ ଲେଖିଲେ। ଏ ପତ୍ର କୃଷ୍ଣପ୍ରସାଦଙ୍କ ଯାତ୍ରା ସଂସ୍କାର ପାଇଁ ଗଭୀରଭାବେ ଅନୁପ୍ରାଣିତ କରିଥିଲା (ଦିଗମ୍ବର ଦାସଙ୍କ ତୁଣ୍ଡର କଥା)। ସେଦିନ ସେ ଯେଉଁ ଦୃଢ ସଂକଳ୍ପ ନେଲେ ତାର ଫଳଶ୍ରୁତି ଥିଲା ଯାଜପୁରର 'ବିରଜା ଅପେରା'। ଏ ବିଷୟରେ କୃଷ୍ଣପ୍ରସାଦଙ୍କ ଅଭିବ୍ୟକ୍ତି ଥିଲା ଏହିପରି– "ଭାବ ଭକ୍ତି ପୂର୍ଣ୍ଣ ଆଖ୍ୟାନ ମଧ୍ୟରେ ପଶିଗଲା କେତେ ଅଶ୍ଳୀଳ ଅଭବ୍ୟ ବିବରଣ। 'ଶଙ୍କରା'ର ତାତ୍ପର୍ଯ୍ୟ ବଢିଗଲା- ଘିଅରେ ଭେଜାଲ୍ ମିଶୁ ମିଶୁ ହୋଇଗଲା ନିରୋଜ ନକଜତା ବନସ୍ପତି । ସେହି ଯୋଗୁ ପୂଜ୍ୟ ଗୁରୁ ୰ ନୀଳମଣି ତର୍କରତ୍ନେ ଲେଖିଛନ୍ତି–

ବଶିଷ୍ଠେ କୁଳର ପୁରୋଧା
ତାହାଙ୍କୁ ଖୁଆଇଲା ବିଧା
ପଣ୍ୟରମଣୀ ବେଶ ହୋଇ
ସୀତା ନାଚିଲେ ଥେଇଥେଇ
ପ୍ରହରୀ ହସ୍ତୁ ବିଧା ଖାଇ
ବଶିଷ୍ଠେ ମାଗିଲେ ଗଂଜାଇ
କିସ କହିବା ଗୋପାଳକୁ
ଠୁକି ରହିବା କପାଳକୁ
ଯାବତ କୃତ ବିଦ୍ୟ ଗଣ
ସଂସ୍କାରେ ହେବେ ଉଦାସୀନ
ତାବତ ଉନ୍ନତି ବାସନା
ଆମ୍ଭମାନଙ୍କ ବୃଥା ସିନା” (ଝଙ୍କାର ୧୫/୧ ପୃଷ୍ଠା ୧୧୯)

ତାଙ୍କର କର୍ମଜୀବନର ପ୍ରଥମ ପର୍ଯ୍ୟାୟ ଆରମ୍ଭ ହୋଇଛି ଅପେରା ସଂଗଠନରୁ। ଓଡ଼ିଆ ଯାତ୍ରାକୁ ନୂତନରୂପ ଦେବା ପାଇଁ ସେ ଗଠନ କଲେ ‘ବିରଜା ଅପେରା’।

**ବିରଜା ଅପେରା :**

କଳିକତାରୁ ଯାଜପୁରକୁ ଫେରିବା ପରେ କୃଷ୍ଣପ୍ରସାଦ ରଚନା କରନ୍ତି ‘ହରି ଅନ୍ୱେଷଣ’, ‘ଶକୁନ୍ତଳା’, ‘ସୀତାବନବାସ’ ଆଦି ଯାତ୍ରା ନାଟକ। ଏ ସବୁର ଅଭିନୟ ପାଇଁ ଗଠନ କରିଛନ୍ତି ବିରଜା ଅପେରା। ଏହି ଅପେରା ଦଳ ୧୯୧୭-୧୯୪୨ ଦୀର୍ଘ ପଚିଶ ବର୍ଷକାଳ ଓଡ଼ିଶା, ପଶ୍ଚିମବଙ୍ଗ, ବିହାରର ଅଗଣିତ ପୁରପଲ୍ଲୀର ନରନାରୀଙ୍କୁ ମୁଗ୍ଧ କରିଥିଲା।[୧]

ଯାଜପୁରର ଅଧିଷ୍ଠାତ୍ରୀ ଦେବୀ ବିରଜାଙ୍କ ନାମାନୁସାରେ ଏହି ଅପେରା ନାମକରଣ କରାଯାଇଥିଲା। ସ୍ୱରଚିତ ନାଟକରେ ସେ ଅଭିନୟ କରି ଏହି ଅପେରା ଦଳ ପରିଚାଳନା କରୁଥିଲେ। ସେ ଥିଲେ ଏହି ଦଳର ଓସ୍ତାଦ, ପରିଚାଳକ ଓ ସ୍ୱତ୍ତ୍ୱାଧିକାରୀ। ସେତେବେଳେ ବାଳକୃଷ୍ଣ ମହାନ୍ତି, ଗୋପାଳ ଦାଶ ଓ ବୈଷ୍ଣବ ପାଣିଙ୍କ ଯାତ୍ରା ଦଳ ଓଡ଼ିଶାରେ ସୁପରିଚିତ ଥିଲେ। ସେମାନଙ୍କ ସହିତ ବହୁ ସ୍ଥାନରେ ବିରଜା ଅପେରାକୁ ପ୍ରତିଦ୍ୱନ୍ଦିତା କରିବାକୁ ପଡୁଥିଲା।

---

୧. ଶ୍ରୀ ବିଶ୍ୱେଶ୍ୱର ବୋଷ– ଅର୍ଘ୍ୟ, ପୃ ୧୦

ଅଭିନୟ ପରିପାଟୀ, ସଙ୍ଗୀତ ସଂଯୋଜନା, ଯନ୍ତ୍ର ସଙ୍ଗୀତର ପରିବେଷଣ ଶୈଳୀ, ଉନ୍ନତ ପୋଷାକ ପରିଚ୍ଛଦ ଯୋଗୁ ସେ ଦିନ ବିରଜା ଅପେରାର ସମକକ୍ଷ ଦଳ ଓଡ଼ିଶାରେ ନଥିଲେ। ପ୍ରତି ରାତ୍ରରେ ଅଭିନୟ ପ୍ରାରମ୍ଭରେ କବିମଂଜୁଳ ନିଜେ ମଞ୍ଚଉପରକୁ ଆସି ଜାତୀୟ ଭାବନାମୂଳକ ଓ ବ୍ରିଟିଶ ଶାସନ ବିରୋଧି ସଙ୍ଗୀତ ଗାନ କରୁଥିଲେ। ଲୋକମନରେ ସରକାର ବିରୋଧୀ ମନୋଭାବ ସୃଷ୍ଟି କରୁଥିବାରୁ ତାଙ୍କୁ ନିବର୍ତ୍ତାଇବା ପାଇଁ ସରକାରଙ୍କ ତରଫରୁ କବିଙ୍କୁ ପୋଲିସ ସବ୍‌ଇନିସ୍‌ପେକ୍ଟର ଚାକିରୀ ମଧ ଯଚାଗଲା।[୨] ଏଥିରେ ସ୍ୱାଧୀନଚେତା କୃଷ୍ଣପ୍ରସାଦ ଅମଙ୍ଗ ହେବାରୁ ତାଙ୍କ ପିତାଙ୍କ ସହିତ ମନ ଅମେଳ ହେଲା। ଶେଷରେ ତାଙ୍କୁ ଗୃହତ୍ୟାଗ କରିବାକୁ ପଡିଲା। ବିରଜା ଅପେରା ସେତେବେଳେ ଅତ୍ୟନ୍ତ ଜନପ୍ରିୟତା ହାସଲ କରିଥିଲେ ମଧ ଅକାଳରେ ବନ୍ଦ ହୋଇଗଲା।

୧୯୨୭ ମସିହା ବେଳକୁ କବି ସ୍ୱଗୃହକୁ ଫେରି ପୁଣି ନିଜର ଅପେରାକୁ ସଂଗଠିତ କଲେ। କବିଙ୍କ ରଚିତ 'ବଭ୍ରୁବାହନ' ପାଣ୍ଡୁଲିପିରେ ବିରଜା ଅପେରାର ଦ୍ୱିତୀୟ ଦଳ ଏହାକୁ ୧୯୨୭ ଜୁନ୍ ୨୪ ତାରିଖରେ ଅରାଳପଙ୍କରେ ଅଭିନୟ କରିବା କଥା କୁହାଯାଇଛି। ଚମ୍ପୁଆରେ ଅଭିନୟ ପ୍ରଦର୍ଶନ କଲାବେଳେ ଆକସ୍ମିକ ଅଗ୍ନିସଂଯୋଗ ହେତୁ ଅପେରା ଦଳର ସମସ୍ତ ସମ୍ପତ୍ତି ଭସ୍ମୀଭୂତ ହୋଇଗଲା। ପୁଣି ବିରଜା ଅପେରା ବନ୍ଦ ହୋଇଗଲା। କିଛିବର୍ଷ ପରେ କେନ୍ଦୁଝର ରାଜାଙ୍କ ସହାୟତାରେ ୧୯୩୫ ବେଳକୁ ପୁଣି ବିରଜା ଅପେରା ସଂଗଠିତ ହୋଇଥିଲା। ନାଟ୍ୟାଚାର୍ଯ୍ୟ ରଘୁନାଥ ପଣ୍ଡା ଏହି ସମୟରେ ବିରଜା ଅପେରାରେ ଯୋଗ ଦେଇଥିଲେ। ସେ ବଭ୍ରୁବାହନ, ଶକୁନ୍ତଳା, ବିଲ୍ୱମଙ୍ଗଳ, ମେଘନାଦ ବଧ ଆଦି ନାଟକରେ ମୁଖ୍ୟ ଭୂମିକାରେ ଅଭିନୟ କରିଥିଲେ।[୩]

ତୃତୀୟଥର ପାଇଁ ସଂଗଠିତ ବିରଜା ଅପେରା କୃଷ୍ଣପ୍ରସାଦଙ୍କ ସର୍ବଶ୍ରେଷ୍ଠ ଦଳ ଥିଲା। ଏଥିରେ ଓଡ଼ିଶାର ସୁପରିଚିତ କଳାକାର ଯାଜପୁରର ଯୋଗୀନ୍ଦ୍ର ପତି, ନାଟ୍ୟକାର ରଘୁନାଥ ପଣ୍ଡା, ଯାତ୍ରା ସଂଗଠକ ଫକୀର ସାହାଣି ଆଦି ଅଭିନୟ କରୁଥିଲେ।[୪] ଅନ୍ୟ ଅଭିନେତାମାନେ ଥିଲେ ପ୍ରହରାଜପୁର ଲକ୍ଷ୍ମୀଧର ମିଶ୍ର, ଭଣ୍ଡାରି ପୋଖରି ଉଦୟନାଥ ଦାସ (ଉଦିଆନା), ଜଗନ୍ନାଥ ପ୍ରସାଦର ବିମ୍ବାଧର ସାହାଣି, ବୈଦ୍ୟରାଜପୁର

---

୨. ଅଧାପକ କୁଞ୍ଜମଣି ଜେନା– କବିମଞ୍ଜୁଳ କୃଷ୍ଣପ୍ରସାଦ ଗ୍ରନ୍ଥାବଳୀ, ପୃ- ୯

୩. ନାଟ୍ୟକାର ରଘୁନାଥ ପଣ୍ଡାଙ୍କ ତୁଣ୍ଡର କଥାରୁ

୪. ଅଭିନେତା ଯୋଗେନ୍ଦ୍ର ପତିଙ୍କ ତୁଣ୍ଡର କଥାରୁ

ଲକ୍ଷ୍ମୀଧର ସାହୁ, ଷୋଳମପୁର ଦଶରଥ ନାୟକ। ଏ ଦଳର ମଧ୍ୟ ପତନ ହେଲା। ଯେଉଁ କଳାବନ୍ତମାନେ ଉପଯୁକ୍ତ ତାଲିମ ପାଉଥିଲେ ସେମାନେ ନିଜ ନିଜର ଦଳ ଗଠନ କରି ଲାଭବାନ ହେବା ଆଶାରେ ବିରଜା ଅପେରାକୁ ଛାଡି ଚାଲିଯାଉଥିଲେ। ଆଖଡାଘରେ ବୈଠକ ଶିରୋନାମାରେ ନିଜର ଅନୁଭୂତି 'ଝଙ୍କାର'ରେ ପ୍ରକାଶ କରି କୃଷ୍ଣପ୍ରସାଦ ଏହି ଦୁଃଖଦ ଅନୁଭବର କଥା କହିଯାଇଛନ୍ତି।[୫]

ଶେଷଥର ପାଇଁ ବିଂଶଶତାବ୍ଦୀର ଚତୁର୍ଥଦଶକ ବେଳକୁ ପୁଣି ବିରଜା ଅପେରା ସଂଗଠିତ ହୋଇଥିଲା। 'କୃଷ୍ଣଚରିତ' ପାଣ୍ଡୁଲିପିର ପ୍ରଥମ ପୃଷ୍ଠାରେ ଏହା ବିରଜା ଅପେରାର ରଜତ ଜୟନ୍ତୀ (୧୯୪୨) ପାଇଁ ପ୍ରସ୍ତୁତ ହୋଇଥିବା କଥା ଲେଖାଯାଇଛି। ୧୯୩୯ ମସିହା ବେଳକୁ କୃଷ୍ଣପ୍ରସାଦ ଆଳିର ରାଜା ବ୍ରଜସୁନ୍ଦର ଦେବଙ୍କ ଅନୁରୋଧରେ ଏକାଧିକ ରାତ୍ର ନାଟକ ପରିବେଷଣ କରିଥିଲେ। ସେଠାରେ ମେନେଜର ଥିବା ରାମବାଗର ଗୋବିନ୍ଦ ସିଂ ସବୁର ଆୟୋଜନ କରାଇଥିଲେ। ନାଟକ ଯଯାତିକେଶରୀ ଓ ମେଘନାଦ ବଧ ଅଭିନୟରେ ନିଜେ କବି ମୁଖ୍ୟ ଭୂମିକାରେ ଅଭିନୟ କରିଥିଲେ। ଗୋପାଳ ଦାଶ ଆଳିରେ ଯାତ୍ରା କରି ରାଜରୋଷର ଶିକାର ହୋଇଥିଲେ। ଗୋପାଳ ରାଜା ଭୂମିକାରେ କପାଳରେ ସିନ୍ଦୂର କଳି ମାରି ମଞ୍ଚରେ ଚେୟାର ଉପରେ ବସିବାକୁ ନେଇ ତାଙ୍କୁ ଆଳିରୁ ରାଜା ବାହାର କରିଦେଲେ (ଗଣକବି ଗୋପାଳ ଦାଶ, ବୈଷ୍ଣବ ଚରଣ ସାମଲ- ପୃଷ୍ଠା ୨୦) ଏଇ ସମୟରେ କୃଷ୍ଣବାବୁ ସେଠାରେ ଯାତ୍ରା କରି କବିମଂଜୁଳ ଉପାଧି ପ୍ରାପ୍ତ ହୋଇଥିଲେ। ଦ୍ୱିତୀୟ ବିଶ୍ୱଯୁଦ୍ଧ ଫଳରେ ଚାରିଆଡେ ନିଷ୍ପ୍ରଦୀପ ପାଳନ କରିବାକୁ ସରକାରୀ ଆଦେଶ ହେବାରୁ ଆଉ ଯାତ୍ରା ଦଳ ବଞ୍ଚାଇ ରଖିବା ସମ୍ଭବ ହେଲା ନାହିଁ। ଶେଷଥର ସଂଗଠିତ ବିରଜା ଅପେରାର ଅନ୍ତିମ ଦିନ ଆସିଗଲା। ଜନା ନାମକ ଗ୍ରାମରେ ଏହି ଅପେରାର ଶେଷ ନାଟକ ୧୯୪୨ରେ ଅଭିନୀତ ହୋଇଥିଲା।[୬]

ଓଡ଼ିଶା ଯାତ୍ରା ଇତିହାସରେ ତାଙ୍କ ସମସାମୟିକ କୌଣସି ଦଳ ଏତେ କାଳ ଧରି ନାଟ୍ୟ ପରିବେଷଣ କରିଥିବାର ଦେଖାଯାଇ ନାହିଁ। ଓଡ଼ିଶା ଓ ଓଡ଼ିଶା ବାହାରେ ବହୁ ସ୍ଥାନରେ ବୁଲି ଓଡ଼ିଆ ଯାତ୍ରାର ବୈଶିଷ୍ଟ୍ୟ ପ୍ରତିପାଦନରେ ସେ ସମର୍ଥ ହୋଇଥିଲେ। ଏ ଅପେରା ଦଳ ଭାଙ୍ଗିଯିବା ପରେ କଳାକାରମାନେ ଓଡ଼ିଶା ଥିଏଟର୍ସ ଓ ଅନ୍ନପୂର୍ଣ୍ଣା 'ବି' ଗ୍ରୁପ୍‌ରେ ଯୋଗଦେଇଥିଲେ।

---

୫. କୃଷ୍ଣପ୍ରସାଦ ବସୁ– ଝଂକାର ୨ / ୭, ପୃ ୬୦୫

୬. ଏଜନ– ପଥଭ୍ରଷ୍ଟର ଜୀବନ କଥା, ୨ୟ ଭାଗ

କୃଷ୍ଣପ୍ରସାଦଙ୍କ ଜୀବନ ଯଥାର୍ଥରେ ଜଣେ କଳାକାରର ଜୀବନ। ବିରଜା ଅପେରାର ଉଠାପକା ଭିତରେ ସେ ଦିନେ ବିଶ୍ରାମ ନେଇନାହାନ୍ତି। ଓଡ଼ିଶାର ବିଭିନ୍ନ ସ୍ଥାନକୁ ଯାଇ ନୂତନ ଦଳ ଗଠନ କରିଛନ୍ତି। ଅପେରା ଛାଡି ଥିଏଟରରେ ମଜ୍ଜିଛନ୍ତି। ବହୁନାଟକ ଓ ସଙ୍ଗୀତ ରଚନାରେ ମନୋନିବେଶ କରିଛନ୍ତି। ଭଦ୍ରକ ଏଡତାଳରେ 'ଶ୍ୟାମସୁନ୍ଦର ଥିଏଟର', ବ୍ରହ୍ମପୁରରେ 'ନାଟ୍ୟମନ୍ଦିର', ବସ୍ତାରେ 'ବାସନ୍ତୀ ଥିଏଟର' ପ୍ରତିଷ୍ଠା କରି ସେ ନିଜର ସାଂଗଠନିକ ଶକ୍ତି ସହିତ କଳାନୁରକ୍ତିର ପରିଚୟ ଦେଇ ଯାଇଛନ୍ତି।

**ଶ୍ୟାମସୁନ୍ଦର ଥିଏଟର :**

ବିରଜା ଅପେରାର ପ୍ରଥମ ଦଳ ଭାଙ୍ଗିଗଲା ପରେ ଜୀବିକା ଅର୍ଜନ ପାଇଁ କୃଷ୍ଣପ୍ରସାଦ କ୍ଷେତ୍ର ସନ୍ଧାନରେ ସ୍ୱଗୃହ ପରିତ୍ୟାଗ କରିଥିଲେ। ବହୁ ଅନୁସନ୍ଧାନ ପରେ ଶେଷରେ କଲିକତା ଯାଇ ଭୂୟାଁ ଭାସ୍କର ଚନ୍ଦ୍ର ମହାପାତ୍ରଙ୍କ ଜାହାଜରେ ଲୋଡିଂ ଅନଲୋଡିଂ କାର୍ଯ୍ୟ ତଦାରଖରେ ନିଯୁକ୍ତ ହେଲେ। ଭାସ୍କର ଚନ୍ଦ୍ରଙ୍କ ପୁତ୍ରର ଜନ୍ମଦିନରେ ତାଙ୍କର ଜନ୍ମସ୍ଥାନ ଭଦ୍ରକ ଏଡତାଳରେ ଏକ ନାଟକ ଅଭିନୟ କରାଇ କୃଷ୍ଣପ୍ରସାଦ ପ୍ରଶଂସିତ ହେଲେ। ଏହାପରେ ଭୂୟାଁ ସାହେବଙ୍କ ପ୍ରେରଣା ଲାଭ କରି ତାଙ୍କର କୁଳଦେବତା ଶ୍ୟାମସୁନ୍ଦରଙ୍କ ନାମାନୁସାରେ ସେଠାରେ ସେ ଗଠନ କଲେ ଶ୍ୟାମସୁନ୍ଦର ଥିଏଟର। ନିଜ ରଚିତ ବିରଜା ଅପେରାରେ ପୂର୍ବରୁ ଅଭିନୀତ 'ଗୟାସୁରର ବଧ', ଯଯାତିକେଶରୀ, କୃଷ୍ଣଚରିତ ଆଦି ନାଟକକୁ ନେଇ ସେ ଏହି ନାଟ୍ୟଦଳ ପରିଚାଳନା କଲେ। ଏହି ଦଳର ମୁଖ୍ୟ ଅଭିନେତାମାନେ ଥିଲେ ଏଡତାଳ ଗ୍ରାମର ମଧୁସୂଦନ ପଳାଇ, ବଂଶୀଧର ପୁହାଣ, ପୁରୁଷୋତ୍ତମ ମହାଲିକ, ଲୋକନାଥ ମହାପାତ୍ର ଆଦି ବ୍ୟକ୍ତିଗଣ। ବାଲେଶ୍ୱର ସହରରେ ମାସେ କାଳ ଏହି ଥିଏଟର ଅଭିନୟ ସେ ସମୟରେ ଚହଳ ସୃଷ୍ଟି କରିଥିଲା। ନିଜର ଆତ୍ମଜୀବନୀରେ ଶରତଚନ୍ଦ୍ର ମହାରଣା ଲେଖିଛନ୍ତି, "ଯାଜପୁରର ତେନ୍ତୁଲୀମାଳ ନିବାସୀ କୃଷ୍ଣପ୍ରସାଦ ବସୁ (ବଙ୍ଗାଳୀ) ବାଲେଶ୍ୱରରେ ଥିଏଟର ପ୍ରାୟ ୧ ମାସ କଲେ। ବହୁତ ଦର୍ଶକ ଦର୍ଶିକା ହେଉଥିଲେ। ଆମେ ଲାଇବ୍ରେରୀ ପାଇଁ ଚାନ୍ଦା ମାଗିବାରୁ ସେ ଏକ benefit night ର ସବୁ ଆୟ ଟ. ୧୨୬/- ଆମକୁ ଦେଇଥିଲେ।" (ଅନୁଭବ ମାଳା- ଶ୍ରୀ ଶରତ ଚନ୍ଦ୍ର ମହାରଣା ପୃ୬୬, ଶିକ୍ଷାସନ୍ଧାନ)

୧୯୨୮ ବେଳକୁ ଏ ଦଳ ଖୁବ୍ ଲୋକପ୍ରିୟ ହୋଇଉଠିଥିଲା। ୧୯୨୮ ପର୍ଯ୍ୟନ୍ତ ଏହି ନାଟ୍ୟଦଳର ଅସ୍ତିତ୍ୱ ସମ୍ପର୍କରେ ସୂଚନା କବିଙ୍କ ଲିଖିତ ଖଣ୍ଡକାବ୍ୟ

'କବିନିର୍ଣ୍ଣୟୀ'ର ଆରମ୍ଭରେ ପ୍ରଦତ୍ତ ସୂଚନାରୁ ଜଣାଯାଏ। ସ୍ୱାଧୀନଚେତା କୃଷ୍ଣପ୍ରସାଦ ଏଡତାଳରେ ଅଧିକ ଦିନ ରହିପାରିଲେ ନାହିଁ। ଇଂରେଜ ଶାସକମାନଙ୍କ ସହିତ ସୁସମ୍ପର୍କ ଯୋଗୁ ଭୂୟାଁ ଭାସ୍କର ଚନ୍ଦ୍ର ଶ୍ୟାମସୁନ୍ଦର ଥିଏଟରର ଦେଶପ୍ରେମ ମୂଳକ ସଙ୍ଗୀତ ପରିବେଷଣକୁ ବିରୋଧ କଲେ। ନିଜର ସ୍ୱାଧୀନତା ଅନେକ ଦିଗରେ ସଂକୁଚିତ ହେବାର ଦୁଃଖରେ କୃଷ୍ଣପ୍ରସାଦ ଏଡତାଳ ଛାଡିଲେ। ତାଙ୍କ ଭାଷାରେ "ସେଠାରେ ବଡ ଲୋକ ଜମିଦାରଙ୍କ ଦଳରେ ମୋର ପୂର୍ଣ୍ଣ ସ୍ୱାତନ୍ତ୍ର୍ୟ ଲୋପ ହେଲା, ସ୍ୱଦେଶୀ ପ୍ରଚାରର ଢେଉ ନିଭିଗଲା- ଅବଶ୍ୟ ଏଥିଲାଗି ଅଳ୍ପ ଲାଞ୍ଛନା ପାଇନଥିଲି ତାଙ୍କ (ଲକ୍ଷ୍ମୀଭାଇ) ଠାରୁ।" ।[୭]

ଏଡତାଳରେ ନାଟ୍ୟଦଳ ପରିଚାଳନା କାଳରେ ନିଜର ଯାତ୍ରାନାଟକର ସଙ୍ଗୀତଗୁଡିକୁ ନେଇ ସେ 'ଫୁଲହାର' ନାମରେ ଏକ ଗୀତି କବିତାର ସଂକଳନ ପ୍ରକାଶ କରିଥିଲେ। ୧୯୨୩ ମସିହା ରଜ ସଂକ୍ରାନ୍ତି ଦିନ ଏହା ପ୍ରକାଶିତ।[୮]

ଶ୍ୟାମସୁନ୍ଦର ଥିଏଟର ପରିଚାଳନା କରି କୃଷ୍ଣପ୍ରସାଦ ସମୁଦାୟ ବାଲେଶ୍ୱର ଜିଲ୍ଲାରେ ସୁପରିଚିତ ହୋଇଗଲେ। ବାଲେଶ୍ୱରରେ ସେତେବେଳେ ବଙ୍ଗଳାଯାତ୍ରାର ଅପ୍ରତିହତ ପ୍ରଭାବ। ବସ୍ତୁତଃ ଅଦମ୍ୟ ଚେଷ୍ଟା ଫଳରେ ସେତେବେଳେ ଲୋକରୁଚିର ପରିବର୍ତ୍ତନ ଘଟିଲା। ଦେଶପ୍ରେମରେ ଉଦ୍‌ବୁଦ୍ଧ ବନ୍ଧୁ ବ୍ୟକ୍ତି ମୌଳିକ ଓଡ଼ିଆ ଯାତ୍ରାର ପ୍ରସାରରେ କୃଷ୍ଣବାବୁଙ୍କୁ ସହାୟତା ପ୍ରଦାନ କଲେ। ସ୍ୱଦେଶୀ ଭାବନାର ପ୍ରଚାର, ଓଡ଼ିଆ ପରମ୍ପରାର ସୁରକ୍ଷା ସହ ଓଡ଼ିଆ ରାଗ ଯୁକ୍ତ ସଙ୍ଗୀତ, ଚମ୍ପୂ ଓ ଓଡ଼ିଶୀ ଆଦି ପରିବେଷଣ ପାଇଁ ଏ ଦଳର ଆଦର ବଢି ଯାଉଥିଲା। ଉତ୍ତର ବାଲେଶ୍ୱର ଅଞ୍ଚଳରେ କବିସୂର୍ଯ୍ୟ ଓ ଗୋପାଳକୃଷ୍ଣଙ୍କ ସଙ୍ଗୀତକୁ ଶ୍ୟାମସୁନ୍ଦର ଥିଏଟର ପ୍ରଚାର କରି ବଙ୍ଗଳା ଯାତ୍ରାର ଅପ୍ରତିହତ ଅଗ୍ରଗତିରେ ପୂର୍ଣ୍ଣଚ୍ଛେଦ ଟାଣିବାକୁ ସକ୍ଷମ ହେଲା।[୯]

**ବାସନ୍ତି ଥିଏଟର :**

ବସ୍ତା ଉଚ୍ଚ ବିଦ୍ୟାଳୟର ପ୍ରଧାନଶିକ୍ଷକ ସୋରର ମାଧବ ଚନ୍ଦ୍ର ପାତ୍ର କୃଷ୍ଣବାବୁଙ୍କୁ ସହାୟତା ପ୍ରଦାନ କରି ବସ୍ତାରେ ଏକ ଯାତ୍ରା ଦଳ ଗଠନରେ ସାହାଯ୍ୟ କଲେ। ବସ୍ତାର ପୂର୍ଣ୍ଣଚନ୍ଦ୍ର ମହାନ୍ତି ଥିଏଟର ପ୍ରଚେଷ୍ଟାରେ ଉତ୍ସାହିତ କଲେ। ଏ ଦଳ ବାସନ୍ତୀ ଥିଏଟର ଭାବରେ ପରିଚିତ ହୋଇ କୃଷ୍ଣପ୍ରସାଦଙ୍କ ଲିଖିତ ନାଟକମାନ ପରିବେଷଣ କରୁଥଲା। ଜଳେଶ୍ୱରର ଜମିଦାର ଯତୀନ୍ଦ୍ରନାଥ ଗିରି ସେଠାରେ ନାଟ୍ୟ ସମ୍ପ୍ରଦାୟଟିଏ

---

୭. କୃଷ୍ଣପ୍ରସାଦ ବସୁ – କାନ୍ତକବି ସଂଖ୍ୟା, ଉତ୍ତର ପୃ ୯୮

୮. କୃଷ୍ଣପ୍ରସାଦ ସ୍ମରଣିକା – ଯାଜପୁର ଜିଲ୍ଲା ଲେଖକ ସମ୍ମେଳନ, ପୃ ୯୩

୯. ଏଜନ – ପଥଭ୍ରଷ୍ଟର ଜୀବନ କଥା, ୧ମ ଭାଗ

ଗଢ଼ିବାରେ ସହାୟତା କରିଥିଲେ। ଏ ଦଳ ବନ୍ଦ ହୋଇଯିବା ପରେ ସ୍ୱଦେଶ ପ୍ରାଣ ହରେକୃଷ୍ଣ ମହତାବଙ୍କ ପ୍ରେରଣା ଲାଭକରି ସେ ଭୋଗରାଇରେ ଏକ ନାଟ୍ୟଦଳ ଗଠନ କରି ଉତ୍ତର ବାଲେଶ୍ୱର ଅଞ୍ଚଳରୁ ବଙ୍ଗଳାଭାଷା ଓ ବଙ୍ଗଳାଗୀତ ଓ ଯାତ୍ରାର ପ୍ରଭାବକୁ ପ୍ରତିହତ କରିବାରେ ସକ୍ଷମ ହୋଇଥିଲେ।

କୃଷ୍ଣପ୍ରସାଦଙ୍କ ମୃତ୍ୟୁରେ ଶ୍ରଦ୍ଧାନିବେଦନ କରି ଡକ୍ଟର ମହତାବ ଲେଖିଥିଲେ "ସେ ସମୟରେ ଉତ୍ତର ବାଲେଶ୍ୱରରେ ବଙ୍ଗଳା ଗୀତର ଏକାଧିକାର। ଏପରିକି ୧୯୨୪ରେ ଯେତେବେଳେ ମୁଁ ଜିଲା ବୋର୍ଡ ଚେୟାରମ୍ୟାନ ଥିଲି ସେତେବେଳେ ମୋ ପାଇଁ ରଚିତ ହୋଇଥିଲା ବଙ୍ଗଳାରେ ସ୍ୱାଗତ ସଙ୍ଗୀତ। ତାପରେ ଆମ୍ଭେ କୃଷ୍ଣବାବୁଙ୍କୁ ଛାଡ଼ିଲୁ ସେ ଅଞ୍ଚଳରେ। ଭୋଗରାଇରେ ଏକ ଯାତ୍ରା ଦଳ ସେ ଗଠନ କଲେ। ବର୍ଷକ ମଧ୍ୟରେ ବଙ୍ଗଳା ଗୀତର ପ୍ରଭାବ ଜଣାପଡ଼ିଲା। ଏହି ଯାତ୍ରା ଦଳର ପ୍ରଭାବ ସେଦିନ ସମୁଦାୟ ଉତ୍ତର ଓଡ଼ିଶା ସହିତ କଣ୍ଟାଇ ରୋଡ, ଦାନ୍ତୁନ, କାନ୍ଥି ଆଦି ବଙ୍ଗଳା ଅଞ୍ଚଳରେ ଅନୁଭୂତ ହୋଇଥିଲା।" ।[୧୦]

**ନାଟ୍ୟମନ୍ଦିର :**

ବାଲେଶ୍ୱର ଅଞ୍ଚଳରୁ ଫେରି କବି ଯାଜପୁରରେ ବିରଜା ଅପେରାକୁ ପୁଣି ସଂଗଠିତ କରିବାରେ ଲାଗିଲେ। କେତେବର୍ଷ ଚଳାଇବା ପରେ ଏ ଦଳ ଭାଙ୍ଗିଯିବାରୁ ଏଥର ସେ ଦକ୍ଷିଣ ଓଡ଼ିଶା ଉଦ୍ଦେଶ୍ୟରେ ବାହାରି ପଡ଼ିଲେ। ଦକ୍ଷିଣୀ ସଙ୍ଗୀତ ପଦ୍ଧତିରେ ଅଧିକ ଜ୍ଞାନ ଆହରଣ ଉଦ୍ଦେଶ୍ୟରେ ସେ ଗଞ୍ଜାମରେ ପହଞ୍ଚିଲେ। ତାଙ୍କରି କଥାରେ "ପୁଣି ଦେଖିଲି ଆମେ ଏହି କଟକିଆ ଓ ବାଲେଶ୍ୱରିଆଙ୍କ ବାସ୍ତବ ଦକ୍ଷିଣୀ ସଙ୍ଗୀତ ପଦ୍ଧତିରେ ଜ୍ଞାନ ଅତି ଅଳ୍ପ। ୩/୪ ଜଣ ମେଧାବୀ ଛାତ୍ରଙ୍କୁ ସଙ୍ଗରେ ଧରି କିଛିଦିନ ଗଞ୍ଜାମରେ ରହିଲି। କିଛି କିଛି ତେଲଙ୍ଗା ସଙ୍ଗୀତର ପଦ୍ଧତି, ଶିକ୍ଷାପ୍ରଣାଳୀ ଓ ଗୀତ ଆୟତ୍ତ କଲି। ସେହି ସ୍ୱର ସଙ୍ଗେ ଯେପରି ପିଆଜ ବଘାର ଦେଇ କେତୋଟି ଗୀତ ମଧ୍ୟ ରଚନା କଲି।"[୧୧]

ଗଞ୍ଜାମରେ ଥିବାବେଳେ କୃଷ୍ଣପ୍ରସାଦଙ୍କ ସହିତ 'ଦୈନିକ ଆଶା'ର ସଂପାଦକ ଶଶୀଭୂଷଣଙ୍କର ଘନିଷ୍ଠ ବନ୍ଧୁତ୍ୱ ସ୍ଥାପିତ ହେଲା। ଶଶୀଭୂଷଣଙ୍କ ସହାୟତାରେ ଆସ୍କା ଚିନି କଳର ମ୍ୟାନେଜର ସାରଥି ସାହୁଙ୍କ ସହିତ କୃଷ୍ଣବାବୁଙ୍କର ପରିଚୟ ହେଲା। ବ୍ରହ୍ମପୁରଠାରେ ସାରଥି ସାହୁ ପ୍ରତିଷ୍ଠା କରିଥିଲେ ବ୍ରହ୍ମପୁର ନାଟ୍ୟ ମନ୍ଦିର। ଏହା ମଧ୍ୟ

୧୦. ଦୈନିକ ପ୍ରଜାତନ୍ତ୍ର, ୩୧.୮.୧୯୬୮

୧୧. କୃଷ୍ଣପ୍ରସାଦ ବସୁ– ଡଗର ୧୪/୨୦ ପୃ ୮

ସାରଥି ଥିଏଟର ନାମରେ ପରିଚିତ ହେଉଥିଲା।[୧୨] ୧୯୩୪ରେ ବନମାଳୀ ଆର୍ଟଥିଏଟର ବ୍ରହ୍ମପୁର ସହରରେ ଯେଉଁ ରଙ୍ଗମଞ୍ଚରେ ଅଭିନୟ କରି ଫେରି ଆସିଲେ ସେହି ମଞ୍ଚକୁ ବଞ୍ଚାଇ ରଖିବା ଥିଲା ସାରଥି ଥିଏଟରର ଲକ୍ଷ୍ୟ। କୃଷ୍ଣପ୍ରସାଦ ପୂର୍ବ ବିରଜା ଅପେରାର କେତେକ କଳାକାରଙ୍କ ସହିତ ଏହି ଦଳରେ ଯୋଗ ଦେଲେ। ଏହାର ମେନେଜର ଭାବରେ ନିଜ ପରିଚାଳନାଗତ ଦକ୍ଷତାର ପ୍ରମାଣ ଦେଲେ।[୧୩]

ପାରଳା, ଜଟଣୀ, ଧରାକୋଟ ଓ ପୁରୀ ଆଦି ଅଞ୍ଚଳରେ ଏହି ଦଳ ଯାତ୍ରା ପରିବେଷଣ କରୁଥିଲେ। ଏହିଠାରେ ଅଭିନେତା ଭାବରେ ନାଟ୍ୟକାର କାର୍ତ୍ତିକ କୁମାର ଘୋଷ ଓ ରାମଚନ୍ଦ୍ର ମାଣିଆ ଆଦି କୃଷ୍ଣପ୍ରସାଦଙ୍କ ସାହଚର୍ଯ୍ୟ ଲାଭ କରିଥିଲେ। କୃଷ୍ଣବାବୁଙ୍କ ନିର୍ଦ୍ଦେଶନାରେ ଏଦଳ ସେଦିନ ଓଡ଼ିଶାରେ ମର୍ଯ୍ୟାଦାପୂର୍ଣ୍ଣ ସ୍ଥାନ ଲାଭ କରିଥିଲା। ଗୃହ ଜଂଜାଳ ହେତୁ କୃଷ୍ଣ ବାବୁଙ୍କୁ ବାରମ୍ବାର ଯାଜପୁର ଆସିବାକୁ ପଡୁଥିବାରୁ ସେ ଦଳ ଛାଡିବାକୁ ବାଧ୍ୟ ହୋଇଥିଲେ।[୧୪]

କୃଷ୍ଣପ୍ରସାଦଙ୍କର ଥିଲା ଭବଘୁରା ଜୀବନ। ଗୋଟିଏ ସ୍ଥାନରେ ତାଙ୍କ ଉଦ୍ୟମରେ ପ୍ରତିଷ୍ଠିତ ହେଉଥିବା ଦଳ ଭାଙ୍ଗିଗଲେ ସେ ହତୋତ୍ସାହିତ ନହୋଇ ଅନ୍ୟସ୍ଥାନରେ ଦଳଟିଏ ଗଢି ଦେଉଥିଲେ। 'ଆଖଡା ଘରେ ବୈଠକ' ରଚନାମାନଙ୍କରେ ସେ ଯାତ୍ରାଦଳ ଗଠନ ଓ ପରିଚାଳନାରେ ନିଜ ଅଭିଜ୍ଞତାର ଅନୁପମ ଚିତ୍ର ଅଙ୍କନ କରିଯାଇଛନ୍ତି। ଦଳଗଠନ ଓ ଛାତ୍ରମାନଙ୍କୁ ଉପଯୁକ୍ତ ତାଲିମ ଦେଉଥିବା କ୍ଷେତ୍ରରେ କୃଷ୍ଣପ୍ରସାଦଙ୍କ ଦକ୍ଷତା ସମସ୍ତଙ୍କ ଦୃଷ୍ଟି ଆକର୍ଷଣ କରିଥିଲା। ସେ ନିଜ ସମୟରେ ଥିଲେ ଅପ୍ରତିଦ୍ୱନ୍ଦୀ ସଙ୍ଗୀତ ସମ୍ରାଟ। କଣ୍ଠ ଓ ଯନ୍ତ୍ର ଉଭୟ ସଙ୍ଗୀତରେ ସେ ଥିଲେ ପ୍ରବୀଣ। ଜୀବନର ଆରମ୍ଭରୁ ସେ ବିଭିନ୍ନ ସ୍ଥାନରେ ତାଲିମ ପାଇଥିବାରୁ ସମସ୍ତ ଶାସ୍ତ୍ରୀୟ ପଦ୍ଧତିରେ ତାଙ୍କ ଅସପତ୍ନ ପ୍ରତିଷ୍ଠା ଥିଲା। ଏହି ସୁନାମ ଯୋଗୁ ସେ H.M.V. ଗ୍ରାମଫୋନ୍ କମ୍ପାନୀରେ ତାଲିମଦାତା ଭାବରେ ନିଯୁକ୍ତ ହୋଇଥିଲେ। ତାଙ୍କରି ଉଦ୍ୟମରେ ବହୁ ଓଡ଼ିଆ କଳାକାର ଲୋକଲୋଚନକୁ ଆସି ପାରିଥିଲେ। ପ୍ରତିଷ୍ଠା ଲାଭ କରିଥିବା ଶିଳ୍ପୀମାନଙ୍କ ମଧ୍ୟରେ ଥିଲେ ନିମାଁଇ ଚରଣ ହରିଚନ୍ଦନ, ଗୋକୁଳାନନ୍ଦ ମହାନ୍ତି, ଅପର୍ଣ୍ଣା ପାଣିଗ୍ରାହୀ, ଗୋକୁଳ ଚନ୍ଦ୍ର ଶ୍ରୀଚନ୍ଦନ ଆଦି ଶିଳ୍ପୀ ବର୍ଗ। ସେ ନିଜେ ମଧ୍ୟ କେତୋଟି ରେକର୍ଡରେ ଗାଇଥିଲେ ଓ ସଂଗୀତ ରଚନା କରିଥିଲେ। ତାଙ୍କର

---

୧୨. ଡଃ ରବି ନାୟକ– ଓଡ଼ିଆ ନାଟକର ସଂକ୍ଷିପ୍ତ ଇତିବୃତ୍ତ, ପୃ ୩୩୧

୧୩. ନାଟ୍ୟ ଶତଦଳ– ପୃ ୬୨

୧୪. ଶ୍ରୀ କାର୍ତ୍ତିକ କୁମାର ଘୋଷ– ଓଡ଼ିଶାର ରଙ୍ଗମଞ୍ଚ ଓ ମୋର ନଟ ଜୀବନ, ପୃ ୧୮୨

ଏହି ରେକର୍ଡ ସଙ୍ଗୀତଗୁଡିକ 'ପ୍ରସାଦ ଗୀତାବଳୀ' ନାମକ ପୁସ୍ତକରେ ସନ୍ନିବେଶିତ ହୋଇଛି ଓ ପ୍ରକାଶିତ ହୋଇଛି । ସେ ମଧ୍ୟ 'ବାମନାବତାର' ଓ 'ଧ୍ରୁବଚରିତ' ଦୁଇଟି କ୍ଷୁଦ୍ର ନାଟିକାକୁ ଗ୍ରାମଫୋନ ରେକର୍ଡ କରାଇଥିଲେ । ବ୍ୟବସାୟିକ ଯାତ୍ରା ଦଳରୁ ବିରତ ହୋଇ କୃଷ୍ଣପ୍ରସାଦ ଏଇଭଳି ଜଣେ ସଙ୍ଗୀତଜ୍ଞ ଭାବରେ ଜୀବନ ବିତାଉଥିଲେ । ଶ୍ରୀ ନିମାଇଁ ହରିଚନ୍ଦନଙ୍କ କଣ୍ଠରେ କୃଷ୍ଣପ୍ରସାଦଙ୍କ ରଚିତ 'ଏହି ଯା ଦେଖୁଛୁ ଦୂର ଆକାଶରେ ନୀଳଚକ୍ରଟିଏ ଥାଇ, ନାତୁଣୀଲୋ ବଡ ଦେଉଳଟି ସେହି ।" ଗୀତଟି ଏକଦା ଓଡ଼ିଶାରେ ଜନପ୍ରିୟ ରେକର୍ଡ ସଙ୍ଗୀତ ଥିଲା ।

କୃଷ୍ଣପ୍ରସାଦ ଜଣେ ରୁଚିସମ୍ପନ୍ନ ଅଭିଜାତ ଶିଳ୍ପୀ ଥିଲେ । କର୍ମଜୀବନର ପ୍ରଥମ ପର୍ଯ୍ୟାୟରେ ସେ ତାଙ୍କ ସମୟର ଅନେକ ନାଟ୍ୟ ଦଳ ସହିତ ପ୍ରତିଯୋଗିତାରେ ଅବତୀର୍ଣ୍ଣ ହୋଇଛନ୍ତି । ଜୟ ଓ ପରାଜୟର ବିବରଣୀ ତାଙ୍କର କଳାକାର ଜୀବନପାଇଁ ସ୍ମରଣୀୟ ହୋଇ ରହିଛି । ସେ ସମୟର ପ୍ରତିଷ୍ଠିତ ନାଟ ଦଳ ଥିଲେ ଗଣକବି ବୈଷ୍ଣବ ପାଣି ଓ ଗୋପାଳ ଦାଶଙ୍କର ଯାତ୍ରା ଦଳ । ମୋହନସୁନ୍ଦର ଦେବ ଗୋସ୍ୱାମୀ, ଗୋବିନ୍ଦ ଶୂରଦେଓଙ୍କ ରାସଦଳ, ଭଦ୍ରକର ବାଞ୍ଛାନିଧି ମହାନ୍ତି ଓ ଲକ୍ଷ୍ମୀକାନ୍ତ ମହାପାତ୍ରଙ୍କ ସୌଖୀନ ରାସ ସଂପ୍ରଦାୟ ।

ଲକ୍ଷ୍ମୀକାନ୍ତ ଓ ବାଞ୍ଛାନିଧି କବିମଞ୍ଜୁଳଙ୍କର ଅନ୍ତରଙ୍ଗ ବନ୍ଧୁ ଥିଲେ । ତାଙ୍କ ଦଳ ସହିତ ପ୍ରତିଦ୍ୱନ୍ଦ୍ୱିତାରେ ସେ ଅବତୀର୍ଣ୍ଣ ହେଉଥିଲେ ମଧ୍ୟ ବନ୍ଧୁତ୍ୱର ନିବିଡତା ଯୋଗୁଁ ତାହା ପରିଣତ ହେଉଥିଲା ଏକ ବିଳାସରେ । ତାଙ୍କ ନିଜ ଭାଷାରେ 'ଆମର ଏ ବାଦୀ ପାଲା ଚଳିଲା ସାତଆଠ ବର୍ଷ । କିନ୍ତୁ ଭଦ୍ରକ ବା ଭଦ୍ରକ ଚାରିପିଠି ଦୁଇଚାରିକୋଶ ମଧ୍ୟରେ ଥିଲେ ଦିନ ଦଶଟା ବେଳକୁ ତୁମ କୋଠାରେ (ଲକ୍ଷ୍ମୀକାନ୍ତଙ୍କ ଘର) ବୈଠକ ନାଗୁଥା ।[୧୫]

ଲକ୍ଷ୍ମୀକାନ୍ତ ଓ ବାଞ୍ଛାନିଧିଙ୍କ ସୌଖୀନ ସଂପ୍ରଦାୟ ବ୍ୟତୀତ ସେତେବେଳେ ବୈଷ୍ଣବପାଣି ଓ ଗୋପାଳ ଦାଶଙ୍କ ସହିତ ବହୁ ସ୍ଥାନରେ ବିରଜା ଅପେରାର ଲଢ଼େଇ ଯାତ୍ରା ହୋଇଛି । ବିଶେଷତଃ ବୈଷ୍ଣବ ପାଣିଙ୍କ ଦଳ ସହ କୃଷ୍ଣପ୍ରସାଦଙ୍କ ଦଳ ଓଡ଼ିଶା ଓ ଓଡ଼ିଶା ବାହାରେ ବହୁସ୍ଥାନରେ ମୁକାବିଲା କରିଛନ୍ତି । ଓଡ଼ିଶାର ଦର୍ଶକମାନେ ବୈଷ୍ଣବ ପାଣିଙ୍କୁ ଉଚ୍ଚସ୍ଥାନ ଦେଉଥିବା ବେଳେ ରୁଚିସମ୍ପନ୍ନ ବଙ୍ଗଳାର ଦର୍ଶକ ବସୁଙ୍କ ଯାତ୍ରା ପ୍ରତି ଅଧିକ ଆଗ୍ରହ ପ୍ରକାଶ କରୁଥିଲେ ।

୧୯୩୩ରେ ଉଭୟ ଦଳ ଅଭିନୟ ପାଇଁ ପହଞ୍ଚିଥିଲେ କଲିକତା ବଡବଜାର

୧୫. କୃଷ୍ଣ କୁମାର ବସୁ- ଡଗର, କାନ୍ତକବି ସଂଖ୍ୟା, ପୃ ୯୬

ପାନପୋଷ୍ଟାରେ। ପାଣି ସେଠାରେ ପରାଜିତ ହୋଇ ଫେରିବା ବେଳେ ବିରଜା ଅପେରା ମଞ୍ଚରୁ ବୋଲାଯାଇ ଥିଲା।

ଅତିସରାଗରେ ଗଲୁ କଟକ
ଦେଖାଇବା ପାଇଁ ଗୁଣ ନାଟକ
ବିରଜା ଚୋକାଏ ଦେଲେ ପଟେକ
ରାତିପାଉଁ ପାରି ହେଲୁ କଟକ। [୧୬]

ବିଦେଶ ପରାଜୟର ପ୍ରତିଶୋଧ ବୈଷ୍ଣବ ପାଣି ନେଉଥିଲେ ସ୍ୱଦେଶରେ। କରଳିଂଆରେ ଯାତ୍ରା କଲାବେଳେ କୃଷ୍ଣବାବୁ କିପରି ପରାଜୟ ବରଣ କରିଥିଲେ ବୈଷ୍ଣବ ପାଣି ତାଙ୍କ ଆତ୍ମ ଜୀବନରେ ବ୍ୟକ୍ତ କରିଛନ୍ତି। "କୃଷ୍ଣବାବୁ ବଡ ଅମାୟିକ। ସେ କଲିକତାରୁ ମୂଲ୍ୟବାନ ବ୍ରାଣ୍ଡି ସଙ୍ଗରେ ଆଣିଥିଲେ। ତାଙ୍କ ସଙ୍ଗେ ପୂର୍ବରୁ ମୋର ପରିଚିତ ଥିଲା। ସେ ଦିନ ସନ୍ଧ୍ୟାରେ ମତେ ବ୍ରାଣ୍ଡି ଖୁଆଇବାକୁ ଡାକିନେଲେ। x x x ସେଇ ସୁରାପାନ ଦ୍ୱାରା ମୁଁ ଅତ୍ୟଳ୍ପ କ୍ଷଣ ପରେ ଚେତାଶୂନ୍ୟ ହେଲି। ଦଳର ସଙ୍ଗୀତ ପିଲାମାନେ ମତେ ନେଇ ଆସି ବସାରେ ଶୋଇ ପକାଇଲେ। ସେ ଦିନ ବାବୁ 'ଭୂୟାଁ ପୀଢ' ନାଟକ ନକରି କଲେ 'ଧ୍ରୁବ'।

"ଉତ୍ତାନପାଦ ରାଜା ପାର୍ଟ ନିଜେ ବାବୁ ସଭାସ୍ଥଳକୁ ଦର୍ଶାଇବାକୁ ଯାଇ ସୁରୁଚିଙ୍କ ନିକଟରେ କେବଳ 'ପ୍ରିୟେ !' ଏତିକି ମାତ୍ର ସମ୍ବୋଧନ କଲେ। ତା'ପରେ ବାକ୍ୟରୁଦ୍ଧ କଣ୍ଠ। ଡ୍ରପ ପଡିଗଲା। ଏହାପରେ କୃଷ୍ଣବାବୁଙ୍କ ଯାତ୍ରା ଆଉ ହେଲା ନାହିଁ।[୧୭] ଯାତ୍ରାମଞ୍ଚରେ ନାଟ୍ୟଦଳ ନେଇ ଗଣକବି ଓ କବିମଂଜୁଳ ତୀବ୍ର ପ୍ରତିଦ୍ୱନ୍ଦୀତାରେ ଅବତୀର୍ଣ୍ଣ ହେଉଥିଲେ ବି ଉଭୟଙ୍କ ମଧ୍ୟରେ ବନ୍ଧୁତା ଥିଲା ଘନିଷ୍ଠ। ଯାଜପୁର ସହରରେ ବା ପାଖଆଖରେ ଯାତ୍ରା କଲାବେଳେ ବୈଷ୍ଣବ ପାଣି ବସୁଙ୍କ ଆତିଥ୍ୟ ଲାଭ କରୁଥିଲେ। ଥରେ ପାଣି ମହୋଦୟ ବିରଜା ଦେବୀଙ୍କ ଦର୍ଶନ ପାଇଁ ଆସିଥିବା ବେଳେ କୃଷ୍ଣବାବୁ ତାଙ୍କୁ କିଭଳି ସଙ୍ଗୀତରେ ସ୍ୱାଗତ କରିଥିଲେ ଦେଖନ୍ତୁ ।

"ଆସ ଆସ ନନା ବେଗିବେଗି ଆସ ରସଆଳାପନେ ମାନସ
ଆଣିଛି ଅଚ୍ୟୁତ ଚ୍ୟୁତ ଅନାରସ - କ୍ଷୀରମୋହନ ସନ୍ଦେଶ
ରୋହିତ ମତ୍ସ ମୋହିତ କରିବ - ଦଧି ଚିପିଟକ କୃତକୃତ ହେବ
ଶ୍ରୀମୁଖ ପରଶେ ଗରଭେ ଧସିବେ କାସୁନ୍ଦି ରସିଆ ପଣସ।"

---

୧୬. ଅଭିନେତା ଯୋଗୀନ୍ଦ୍ର ପତିଙ୍କ ତୁଣ୍ଡର କଥାରୁ

୧୭. ବୈଷ୍ଣବ ପାଣି– ପାଣି କବିଙ୍କ ଆତ୍ମ ଜୀବନୀ– ପ୍ରଥମ ସଂସ୍କରଣ, ପୃ ୧୦୦/୧୦୧

ପାଣିଙ୍କ ଭଳି ବରିଷ୍ଠ ଗୋପାଳ ଦାଶଙ୍କ ସହିତ ବାରମ୍ବାର ବାଦୀଯାତ୍ରା କରି ଜୟ ପରାଜୟ ବରଣ କରୁଥିଲେ ବି ଗୋପାଳ ଦାଶ ତାଙ୍କୁ ଶ୍ରଦ୍ଧା କରୁଥିଲେ। 'କଲିକତାରେ ଯାତ୍ରାଭିନୟ କରୁଥିଲା ବେଳେ ଗୋପାଳ ଦାଶ ତାଙ୍କୁ ଧର୍ମପୁତ୍ର କରିଥିଲେ, (ଗଣକବି ଗୋପାଳ ଦାଶ, ବୈଷ୍ଣବ ଚରଣ ସାମଲ, ପୃଷ୍ଠା ୨୫)

ଏଇ ଭଳି ଭାବରେ ଜଣେ ପ୍ରତିଭାବନ୍ତ କଳାପ୍ରାଣ ବ୍ୟକ୍ତିଙ୍କର ଜୀବନର ଅର୍ଦ୍ଧଶତାବ୍ଦୀ ଅତିବାହିତ ହୋଇଗଲା କଳାର ଆରାଧନା କରି। ସେ ଯୌବନ ଅତିକ୍ରମ କରିଗଲେ। ବାର୍ଦ୍ଧକ୍ୟର କଳାଛାଇ ଘୋଟି ଆସିବାକୁ ବାକି ନଥାଏ। ଦିନକୁ ଦିନ ପାରିବାରିକ ଜଂଜାଳରେ ବ୍ୟସ୍ତ ରହି ନାଟ୍ୟଦଳ ଗଠନ କରିବାର ଚେଷ୍ଟାରୁ ସେ ବିରତ ହେଲେ। ଏହାପର ଦଶବର୍ଷ ସେ ଜୀବିକା ଉପାର୍ଜନ ପାଇଁ ଶିକ୍ଷକତାକୁ ବରଣ କରିନେଲେ। ଏହାହିଁ ତାଙ୍କର କର୍ମ ଜୀବନର ଅନ୍ତିମ ପର୍ଯ୍ୟାୟ।



# ଜୀବନାଲେଖ୍ୟ

## ତୃତୀୟ ପରିଚ୍ଛେଦ

## ଅନ୍ତିମ ପର୍ଯ୍ୟାୟ

**ଶିକ୍ଷକ ଜୀବନ :**

କବି ମଞ୍ଜୁଳଙ୍କ ଶିକ୍ଷକ ଜୀବନ ଆରମ୍ଭ ହୋଇଥିଲା ବଲାଙ୍ଗୀରରେ। ବଲାଙ୍ଗୀର ମହାରାଜା ୰ ରାଜେନ୍ଦ୍ର ନାରାୟଣ ଥିଲେ କୃଷ୍ଣପ୍ରସାଦଙ୍କ ଶୁଭାନୁଧ୍ୟାୟୀ। ୧୯୩୭ ମସିହାରେ ଉତ୍କଳ ସାହିତ୍ୟ ସମାଜର ବାର୍ଷିକ ଅଧିବେଶନରେ ସଭାପତି ଥିଲେ ରାଜେନ୍ଦ୍ର ନାରାୟଣ। ସଙ୍ଗୀତ ସମାରୋହରେ ସେଦିନ ସଭାପତିତ୍ୱ କରିଥିଲେ କୃଷ୍ଣପ୍ରସାଦ। କୃଷ୍ଣବାବୁଙ୍କ ସାଙ୍ଗୀତିକ ପ୍ରତିଭାରେ ମୁଗ୍ଧ ରାଜା ସାହେବ ବଲାଙ୍ଗୀର ଯିବା ପାଇଁ ତାଙ୍କୁ ଅନୁରୋଧ କରିଥିଲେ। ଯାତ୍ରା ସଂଗଠନ ଜଂଜାଳରୁ ମୁକ୍ତ ହୋଇ ୧୯୪୨ ମସିହାରେ ସେ ବଲାଙ୍ଗୀରରେ ପହଞ୍ଚିଲେ। ବଲାଙ୍ଗୀର କ୍ଲବରେ କବିଙ୍କ ସମ୍ବର୍ଦ୍ଧନା ପାଇଁ ଏକ ସଙ୍ଗୀତ ଆସରର ଆୟୋଜନ କଲେ କୋଶଳ କଳାମଣ୍ଡଳର ସଂପାଦକ କଳାକାର ଶ୍ରୀ ତ୍ରିବିକ୍ରମ ମିଶ୍ର ଓ ଶ୍ରୀଯୁକ୍ତ ଗୋବିନ୍ଦ ଚନ୍ଦ୍ର ଉଦ୍‌ଗାତା। ଏଥିରେ ପୁରୋଧା ଥିଲେ ପାଟଣାର ଶାସକ ମହାପ୍ରଜା ରାଜେନ୍ଦ୍ର ନାରାୟଣ। ଏହି ଆସରରେ ବସୁ ମହୋଦୟ ଏଠାରେ ସ୍ୱରଚିତ 'ରସଗୋଲା' ବିଷୟକ ଗୀତଟିଏ ଗାନ କରି ଦର୍ଶକଙ୍କୁ ମୁଗ୍ଧ କରିଥିଲେ।[୧] ଏହାପରେ ଶୈଳଶ୍ରୀ ରାଜପ୍ରାସାଦରେ ସେ ମହାରାଜାଙ୍କୁ ଭେଟିଲେ। ପ୍ରଥମେ ତାଙ୍କୁ ରାଜସଙ୍ଗୀତଜ୍ଞ (Court Musician) ପଦବୀର ନିଯୁକ୍ତି ପାଇଁ ପ୍ରସ୍ତାବ ଆସିବାରୁ ସେ ଗ୍ରହଣ କରିନଥିଲେ। ସେତେବେଳେ ମର୍ଯ୍ୟାଦା ଓ ବେତନ ଦୃଷ୍ଟିରୁ ଏହି ପଦବୀଟି ସିଭିଲ ସର୍ଜନ ଓ ବଡବଡ ଅଫିସରଙ୍କ ସହିତ ସମାନ ଥିଲେ ମଧ ସମଗ୍ର ଓଡ଼ିଶାରେ ପରିଚିତ ସ୍ୱାଧୀନଚେତା କୃଷ୍ଣପ୍ରସାଦ ଦରବାରରେ କର୍ମଚାରୀ ଭାବରେ ଯୋଗଦେବାକୁ ସମ୍ମାନଜନକ ବୋଲି ବିଚାର କରିନଥିଲେ।[୨] ଶେଷରେ ତାଙ୍କୁ ବଲାଙ୍ଗୀର ବିଦ୍ୟାଳୟ ସମୂହର ସଙ୍ଗୀତ ଶିକ୍ଷକ ଭାବରେ ନିଯୁକ୍ତି ମିଳିଲା। ସେଠାରେ ସେ ତା୨୬.୧୧.୪୨ରିଖ ରୁ ତା ୩.୧.୪୫ରିଖ ପର୍ଯ୍ୟନ୍ତ କାର୍ଯ୍ୟ କରିଥିଲେ।[୩] ପୃଥ୍ୱୀରାଜ ଉଚ୍ଚ ଓ ମଧ ବିଦ୍ୟାଳୟ, ବାଳିକା ମଧ ଇଂରାଜୀ ବିଦ୍ୟାଳୟର ପିଲାମାନଙ୍କୁ ସଙ୍ଗୀତ ଶିକ୍ଷା ଦେବା ତାଙ୍କର କାର୍ଯ୍ୟ ଥିଲା।

---

୧. ପରିଶିଷ୍ଟରେ ପ୍ରଦତ୍ତ

୨. ଦଶମ୍ବର ଦାସଙ୍କ ତୁଣ୍ଡର କଥାରୁ

୩. Administrative Report of Patna State, 1944-45

ପାଟଣାରେ ତାଙ୍କ କାର୍ଯ୍ୟକାଳ ମଧ୍ୟରେ ସେ 'ରମାଇ ଦେଓ', 'ଦକ୍ଷଯଜ୍ଞ' ଓ 'ହରି ଅନ୍ୱେଷଣ' ଆଦି ନାଟକ ଅଭିନୟ କରାଇଥିଲେ । ସମସ୍ତେ ତାଙ୍କୁ 'ସଙ୍ଗୀତଆଜ୍ଞା' ଭାବରେ ସମ୍ବୋଧନ କରୁଥିଲେ ।

ପାଟଣା ରାଜାଙ୍କ ଶ୍ରାବଣାଭିଷେକ ଓ ପୁଷ୍ୟାଭିଷେକ ଉତ୍ସବରେ ଏହି ନାଟକମାନ ଅଭିନୀତ ହେଉଥିଲା । ୧୦ ବର୍ଷରୁ କମ୍ ଝିଅମାନଙ୍କୁ ନେଇ ୧୯୪୩ ମସିହା ଅଗଷ୍ଟ ୧୫ ତାରିଖରେ ଶ୍ରାବଣାଭିଷେକ ପାଇଁ 'ହରି ଅନ୍ୱେଷଣ' ଦରବାର ହଲରେ ଅଭିନୀତ ହୋଇଥିଲା ।[୪] ଏଥିରେ କୃଷ୍ଣ ଭୂମିକାରେ ଅଭିନୟ କରିଥିବା ବର୍ତ୍ତମାନ ଜଣେ ଅବସରପ୍ରାପ୍ତ ଡାକ୍ତର ଶ୍ରୀମତୀ ସ୍ୱର୍ଣ୍ଣଲତା ମହାପାତ୍ର (ଦାସ) କହନ୍ତି, "ଏହି ନାଟକ ମଞ୍ଚରେ ଅଭିନୀତ ହୋଇଥିଲା । ପଟାଖଟ ପକାଇ ମଞ୍ଚ ନିର୍ମାଣ କରାଯାଇଥିଲା । ଏଥିରେ ଦୁଇଟି ମାତ୍ର ପରଦା ବ୍ୟବହୃତ ହେଉଥିଲା । ମଞ୍ଚରେ ବୃକ୍ଷଲତା ଲଗାଯାଇ ଜଙ୍ଗଲର ମାୟା ସୃଷ୍ଟି କରାଯାଇଥିଲା ।[୫]

ଏହି ହରି ଅନ୍ୱେଷଣ ନାଟକଟିର ଅଭିନୟ କେବଳ ବାଳିକାମାନଙ୍କ ଦ୍ୱାରା ହୋଇଥିଲା । ବାଦ୍ୟଯନ୍ତଠାରୁ ସଙ୍ଗୀତ ଆଦି ସମସ୍ତ ସଂଯୋଜନା କରିଥିଲେ ବଲାଙ୍ଗୀର ବିଦ୍ୟାଳୟ ସମୂହର ବାଳିକାବୃନ୍ଦ, ନାଟକକୁ ଆରମ୍ଭରୁ ଶେଷ ପର୍ଯ୍ୟନ୍ତ ଉପଭୋଗ କରିଥିଲେ ମହାରାଜା ରାଜେନ୍ଦ୍ର ନାରାୟଣ ।[୬]

କୃଷ୍ଣବାବୁଙ୍କ ବଲାଙ୍ଗୀର ରହଣୀ ସମୟରେ ସେଠାରେ ଭାରତର ଗଡଜାତ ରାଜନ୍ୟବର୍ଗଙ୍କର ଏକ ସମ୍ମିଳନୀ ଅନୁଷ୍ଠିତ ହୋଇଥିଲା । ଏହି ଶାସକମାନଙ୍କର ମନୋରଞ୍ଜନ ଭାର ନେଇଥିଲେ କୃଷ୍ଣପ୍ରସାଦ । ବିଭିନ୍ନ ରାତ୍ରରେ ସଙ୍ଗୀତ ଆସର ଓ ନାଟକ ଅଭିନୀତ ହେଉଥିଲା । କେବଳ ଝିଅମାନଙ୍କୁ ନେଇ 'ଦକ୍ଷ ଯଜ୍ଞ', 'ହରି ଅନ୍ୱେଷଣ' ଗୀତିନାଟ୍ୟ ଅଭିନୀତ ହୋଇଥିଲା । କଳିକତାକୁ ଯାଇ କବିମଂଜୁଳ ମଞ୍ଚ ପାଇଁ ଆବଶ୍ୟକ ସାମଗ୍ରୀ ଆଣିଥିଲେ । ଏହାର ସଫଳତା ପାଇଁ ସେ ବହୁ ପରିମାଣ ଅର୍ଥ ପୁରସ୍କାର ରୂପେ ପାଇଥିଲେ ।[୭]

ଏହି ଅବସରରେ ଟିଟିଲାଗଡଠାରେ କୃଷି ଓ ଶିଳ୍ପର ଏକ ପ୍ରଦର୍ଶନୀର ଆୟୋଜନ କରାଯାଇଥିଲା । ସେଠାକୁ ଯାଉଥିବା ରାଜନ୍ୟବର୍ଗଙ୍କୁ ସ୍ୱାଗତ କରିବା ପାଇଁ ସ୍ୱାଗତ ସଙ୍ଗୀତମାନ କବି ମଞ୍ଜୁଳ ରଚନା କରିଥିଲେ । ଏହି ସଙ୍ଗୀତ ଓ ତାର ଇଂରାଜୀ

---

୪. କୃଷ୍ଣପ୍ରସାଦ ବସୁ– ହରି ଅନ୍ୱେଷଣ (ପାଣ୍ଡୁଲିପି) ପ୍ରଚ୍ଛଦପଟ

୫. ଡାକ୍ତର ସ୍ୱର୍ଣ୍ଣଲତା ମହାପାତ୍ରଙ୍କ ପତ୍ରରୁ ଗୃହୀତ

୬. ଭାନୁମତୀ ଦାସଙ୍କ ପତ୍ରରୁ ଗୃହୀତ

୭. କୃଷ୍ଣପ୍ରସାଦ ବସୁ– ପଥଭ୍ରଷ୍ଟର ଜୀବନ କଥା, ୪ର୍ଥ ଭାଗ

ଅନୁବାଦ ନିଜେ କରି କଟକ ଉତ୍କଳ ସାହିତ୍ୟ ପ୍ରେସରୁ ମୁଦ୍ରିତ କରି କୃଷ୍ଣପ୍ରସାଦ ବିତରଣ କରିଥିଲେ। (ଏଥିରୁ କେତେକ ପରିଶିଷ୍ଟରେ ଦିଆଯାଇଛି)

ବଲାଙ୍ଗୀରରେ ସଙ୍ଗୀତ ଶିକ୍ଷକ ଭାବରେ ସେ ବହୁ ଛାତ୍ରଛାତ୍ରୀଙ୍କୁ ସଙ୍ଗୀତ ପ୍ରତି ଆକୃଷ୍ଟ କରିପାରିଥିଲେ। ଏବେ ବାର୍ଦ୍ଧକ୍ୟରେ ଥାଇ ବଲାଙ୍ଗୀରରେ ଯେଉଁ କଳାପ୍ରାଣ ବ୍ୟକ୍ତିବୃନ୍ଦ କୃଷ୍ଣପ୍ରସାଦଙ୍କ ସ୍ମୃତିଚାରଣ କରୁଛନ୍ତି ସେମାନଙ୍କ ମଧ୍ୟରେ ଡାକ୍ତର ରାମପ୍ରସାଦ ମିଶ୍ର (ପୂର୍ବତନ ମନ୍ତ୍ରୀ), କଳାକାର ତ୍ରିବିକ୍ରମ ମିଶ୍ର, ପ୍ରାଧ୍ୟାପକ ଗୋବିନ୍ଦ ଚନ୍ଦ୍ର ଉଦଗାତାଙ୍କ ନାମ ଉଲ୍ଲେଖଯୋଗ୍ୟ।

ବଲାଙ୍ଗୀରର ସ୍ୱଚ୍ଛରହଣୀ ମଧ୍ୟରେ କୃଷ୍ଣପ୍ରସାଦ କଳା ଚର୍ଚ୍ଚାର ଏକ ସୁଦୃଢ ପରମ୍ପରା ସୃଷ୍ଟି କରି ଦେଇଥିଲେ। ସେ ସମ୍ପର୍କରେ ଅଧ୍ୟାପକ ଶ୍ରୀଯୁକ୍ତ ଗୋବିନ୍ଦ ଚନ୍ଦ୍ର ଉଦ୍‌ଗାତା କହନ୍ତି "୧୯୪୪-୪୫ ବର୍ଷ ମାନଙ୍କରେ ପ୍ରାୟ ଦୁଇବର୍ଷ ଧରି କବି ମଞ୍ଜୁଳ କୃଷ୍ଣପ୍ରସାଦ ବସୁ ବଲାଙ୍ଗୀରରେ ଅବସ୍ଥାନକରି ଏକ ବିଧିବଦ୍ଧ ସଙ୍ଗୀତ ଶିକ୍ଷା ପରିଚାଳନା କରୁଥିଲେ। ବେହେଲା, ସିତାର, ଏସରାଜ ଓ କ୍ଲାରିଓନେଟ୍ ପ୍ରଭୃତି ବହୁବାଦ୍ୟ ଯନ୍ତର ଶିକ୍ଷା ମଧ୍ୟ ଚାଲିଥିଲା। ଏହାର ଏକ ସୁନ୍ଦର ପରିଣତି ହେଲା ଆମର ସ୍ଥାନୀୟ ନାଟକମାନଙ୍କ ପାଇଁ କେତେକ ସଙ୍ଗୀତଜ୍ଞଙ୍କ ସହାୟତା ପ୍ରାପ୍ତି।[୮]

**ବସ୍ତା ଓ ଯାଜପୁରରେ ଶିକ୍ଷକତା :**

ପିତାଙ୍କର ସ୍ୱାସ୍ଥ୍ୟଗତ କାରଣରୁ ସେ ବଲାଙ୍ଗୀର ଛାଡି ୧୯୪୫ ମସିହା ଆରମ୍ଭରେ ଯାଜପୁର ଫେରିଆସିଲେ। ପିତା ଗୋବିନ୍ଦ ପ୍ରସାଦଙ୍କ ମୃତ୍ୟୁପରେ ୧୯୪୬ ମସିହାରେ କିଛିଦିନ ପାଇଁ ବାଲେଶ୍ୱରର ବସ୍ତା ଉଚ୍ଚବିଦ୍ୟାଳୟରେ ବିଜ୍ଞାନ ଓ ସଙ୍ଗୀତ ଶିକ୍ଷକ ଭାବେ କାର୍ଯ୍ୟ କରିଥିଲେ। ଏହିଠାରେ ଥିବାବେଳେ ସେ 'ବାସନ୍ତି ଥିଏଟର' ନାମରେ ଏକ ଦଳଗଠନ କରିଥିଲେ।[୯] ନିଜର ଗୃହ ପରିଚାଳନା ପାଇଁ ଅନ୍ୟକେହି ନଥିବାରୁ ଉପାୟଶୂନ୍ୟ ହୋଇ ଅନ୍ୟତ୍ର ନଯାଇ ଯାଜପୁରରେ ଅବସ୍ଥାନ କରିବାକୁ ବାଧ ହେଲେ। ଯାଜପୁର ନିକଟ ରାମବାଗ ଉଚ୍ଚବିଦ୍ୟାଳୟରେ କିଛି ମାସ ଶିକ୍ଷକତା ପରେ ୧୯୪୮ ମସିହା ଆରମ୍ଭରେ ସେ ବିରଜା ଉଚ୍ଚ ବିଦ୍ୟାଳୟରେ ବିଜ୍ଞାନ ଶିକ୍ଷକ ଭାବରେ ଯୋଗଦେଲେ। ଏଠାରେ ୧୯୫୯ ପର୍ଯ୍ୟନ୍ତ ଜଣେ ଦକ୍ଷ ଶିକ୍ଷକ ଭାବେ କାର୍ଯ୍ୟ କରିବାରେ ସକ୍ଷମ ହୋଇଥିଲେ। ଭୂଗୋଳ ଓ ବିଜ୍ଞାନକୁ ସଙ୍ଗୀତ ମାଧ୍ୟମରେ

୮. ଗୋବିନ୍ଦ ଚନ୍ଦ୍ର ଉଦ୍‌ଗାତା– ଓଡ଼ିଆ ଲୋକନାଟ୍ୟ କଲ୍‌ଚରାଲ୍ ଏକାଡ଼େମୀ(ରାଉରକେଲା) ପୃ ୩୫୩, ୧୯୭୭-୭୮

୯. ବୀରକିଶୋର ଦାସ– ଯୁଗେ ଯୁଗେ ନାଟ୍ୟ ସାହିତ୍ୟ

ପଢାଇବାରେ ସେ ଏକ ନୂତନ ପରମ୍ପରା ପ୍ରତିଷ୍ଠା କରିଥିଲେ। "ତାଙ୍କର ଶିକ୍ଷାଦାନର ଶୈଳୀ, ପ୍ରକାଶ ଭଙ୍ଗୀ, ସର୍ବୋପରି ଜ୍ଞାନଭଣ୍ଡାରର ଗାମ୍ଭୀର୍ଯ୍ୟ ସମସ୍ତଙ୍କୁ ମୁଗ୍ଧ କରୁଥିଲା।"[୧୦]

୧୯୪୭ ମସିହାରେ ସ୍ୱାଧୀନତା ଦିବସ ଦିନ ହଜାର ହଜାର ଛାତ୍ର ଓ ଶିକ୍ଷକଙ୍କର ଏକ ବିରାଟ ଶୋଭାଯାତ୍ରାର ନେତୃତ୍ୱ ନେଇ ସେ ଯାଜପୁର ସହର ପରିକ୍ରମା କରିଥିଲେ। ନିଜ ରଚିତ ଜାତୀୟ ସଙ୍ଗୀତରେ ପିଲାମାନଙ୍କୁ ତାଲିମ ଦେଇ ସେ ସମୟରେ ସେ ବହୁ ପ୍ରଶଂସିତ ହୋଇଥିଲେ। ଏହିଠାରେ ଶିକ୍ଷକତା କରୁଥିବା ସମୟରେ ତତ୍‌କାଳୀନ ଶିକ୍ଷାବିଭାଗ ଇନ୍ସପେକ୍ଟର କବି ମାୟାଧର ମାନସିଂହଙ୍କ ସହିତ କବିଙ୍କର ବନ୍ଧୁତ୍ୱ ପ୍ରତିଷ୍ଠିତ ହୋଇଥିଲା। ପର ଜୀବନରେ ଏ ବନ୍ଧୁତ୍ୱ ଦୃଢ ହୋଇଥିବାର ଦେଖାଯାଏ। ୧୯୫୫ ମସିହା ବେଳକୁ ସେ ଶିକ୍ଷକତାରୁ ବିଦାୟ ନେଲେ।

**ଅବସର ଜୀବନ :**

ତାଙ୍କ ଅବସର ଜୀବନ ଥିଲା କର୍ମଚଞ୍ଚଳ। ୧୯୬୮ ପର୍ଯ୍ୟନ୍ତ ତେରବର୍ଷ କାଳ କବି ନିଜର ସାଧନାପୀଠ କାଳୀମନ୍ଦିର ଚଉପାଢୀରେ ଶେଷ ଜୀବନ କଟାଇଥିଲେ। ସେ ଘରେ ଖଣ୍ଡେ ଖଟ ଉପରେ କବିଙ୍କର ବିଭିନ୍ନ ବାଦ୍ୟ ଯନ୍ତ୍ର ସବୁ ରଖାଯାଇଥିଲା। ଏହିଠାରେ କବି ଆଗନ୍ତୁକମାନଙ୍କୁ ନେଇ ଆସର ଆୟୋଜନ କରୁଥିଲେ। ଏହି ଘରେ ସେ ବହୁ ଯୁବକଙ୍କୁ ଓ ପାଲାକାରଙ୍କୁ ସଙ୍ଗୀତରେ ବିନା ପାରିଶ୍ରମିକରେ ତାଲିମ ଦେଉଥିଲେ।

ସେତେବେଳେ ଆଉ ନାଟଦଳଗଠନ କରିବା ଶକ୍ତି ତାଙ୍କର ନଥିଲା। ଜୀବନର ପରିଣତ ବୟସରେ ସେ ପାଲା ରଚନାରେ ନିଜକୁ ନିୟୋଜିତ କରିଥିଲେ। ଶାସ୍ତ୍ରୀୟ ସଙ୍ଗୀତରେ ତାଙ୍କର ଜ୍ଞାନ ଓ ଜୀବନର ପ୍ରଚୁର ଅଭିଜ୍ଞତାକୁ ନେଇ ସେ ବହୁଖଣ୍ଡ କାବ୍ୟ ସୃଷ୍ଟି କରିଗଲେ। ଯାହା ଲେଖୁଥିଲେ ବାଦ୍ୟଯନ୍ତ୍ର ସାହାଯ୍ୟରେ ପରୀକ୍ଷା କରୁଥିଲେ। ପିଲାମାନଙ୍କୁ ଶୁଣାଉଥିଲେ, ମନ ମାନିଲେ ବାହାରକୁ ଛାଡୁଥିଲେ। ଦିନରାତି ସବୁ ସମୟ ପାଇଁ ସେ ସାହିତ୍ୟ ସଙ୍ଗୀତ ଚର୍ଚ୍ଚାରେ ନିଜକୁ ବୁଡାଇ ରଖୁଥିଲେ।

ଏଇ ସମୟରେ ସେ ଓଡ଼ିଶାର ବହୁ ପ୍ରତିଷ୍ଠିତ ମାସିକ ପତ୍ରିକାରେ ଗଳ୍ପ, ଉପନ୍ୟାସ ଓ ପ୍ରବନ୍ଧ ଆଦି ଲେଖିବାରେ ସମୟ ଦେଇଥିଲେ। 'ଚତୁରଙ୍ଗ', 'ଶଙ୍ଖ', 'ଝଙ୍କାର', 'ଆସନ୍ତାକାଲି', 'ଡଗର', 'ଅଗ୍ରଣୀ' ଆଦି ପତ୍ରିକାରେ ତାଙ୍କର ବିପୁଳ ରଚନା ସମ୍ଭାର

୧୦. କୃଷ୍ଣପ୍ରସାଦ ସ୍ମରଣିକା, ଯାଜପୁର ଜିଲ୍ଲା ଲେଖକ ସମ୍ମେଳନ

ପ୍ରକାଶିତ ହେବାକୁ ଲାଗିଲା, ୧୯୬୭ ପର୍ଯ୍ୟନ୍ତ। 'ଆଖଡା ଘରେ ବୈଠକ' ଶିରୋନାମାରେ ଅନୁଭୂତି ମୂଳକ ଲେଖା ବର୍ଷ ବର୍ଷ ଧରି ସେ ଝଙ୍କାରରେ ଲେଖି ଚାଲିଥିଲେ।

କବିଙ୍କର ଏହି ଶେଷ ଜୀବନରେ ବିରଜା ହାଟ ବିଷୟକ ମାମଲା ତାଙ୍କୁ ସବୁବେଳେ କ୍ଳାନ୍ତ କରିଦେଉଥିଲା। ତାଙ୍କର ଶରୀର ମଧ ଭଲ ରହୁନଥିଲା। ସେ ଥିଲେ 'ମୂତ୍ରକୃଚ୍ଛ ରୋଗୀ'। ଚାଲୁ ଚାଲୁ ପଡିଯାଇ ବେଳେ ବେଳେ ଚେତାଶୂନ୍ୟ ହୋଇ ପଡୁଥିଲେ। ଶେଷ ବେଳକୁ ତାଙ୍କୁ ଭଲ ଦେଖା ବି ଯାଉନଥିଲା। ଏସବୁ ଅସୁବିଧା ମଧ୍ୟରେ ସେ ପ୍ରତିଦିନ କିଛି କିଛି ଲେଖୁଥିଲେ।

ତାଙ୍କର ରଚନା ସମ୍ଭାରର ବିପୁଳ ଅଂଶ ଏପର୍ଯ୍ୟନ୍ତ ଅପ୍ରକାଶିତ। କୌଣସି ଲେଖା ପ୍ରକାଶ ପାଇଁ ସେ ବ୍ୟାକୁଳ ନଥିଲେ। ତାଙ୍କର ପ୍ରଥମ ଖଣ୍ଡକାବ୍ୟ 'ବାମନାବତାର' ୧୯୩୬ରେ ଲେଖାଯାଇଥିଲେ ମଧ ୧୯୫୨ ମସିହାରେ ପ୍ରକାଶିତ ହୋଇଥିଲା। ସେ ନିଜ ଲେଖାଗୁଡିକୁ ବାରମ୍ବାର ସଂଶୋଧନ କରୁଥିଲେ। ରଚନାଗୁଡିକ ଯେତେବେଳେ ଜନାଦୃତ ହୋଇ ପ୍ରଶଂସିତ ହେଉଥିଲା ସେତେବେଳେ ସେ ପ୍ରକାଶ କରୁଥିଲେ।

ପୋଷାକ ପରିଚ୍ଛଦରେ କବି ବଡ ସମ୍ଭ୍ରାନ୍ତ ଥିଲେ। ଖଦଡ଼ ଧୋତି, ପଞ୍ଜାବୀ, ଚଦର, ହାଫ୍ ସୁ ଥିଲା ତାଙ୍କର ସନାତନ ପୋଷାକ।[୧୧] କବି ବଡ ପ୍ରକୃତିପ୍ରେମୀ ଥିଲେ। କାଳୀ ମନ୍ଦୀର ପ୍ରାଙ୍ଗଣରେ ଚମ୍ପା, ଡାଲିଆ ଓ ମଲ୍ଲି ଆଦି ନାନା ପ୍ରକାର ଫୁଲର ଏକ ଉଦ୍ୟାନ ପ୍ରତିଷ୍ଠା କରିଥିଲେ।

ଅତି ପିଲାଦିନରୁ ସେ ଥିଲେ ବୈଷ୍ଣବ ଧର୍ମ ପ୍ରତି ଆସକ୍ତ। ପରବର୍ତ୍ତୀ ଜୀବନରେ ରାମକୃଷ୍ଣଙ୍କ ଭାବାଦର୍ଶରେ ମଧ ଅନୁପ୍ରାଣିତ ହୋଇଥିଲେ। କୌଣସି ନିର୍ଦ୍ଦିଷ୍ଟ ଧର୍ମ ବା ସମ୍ପ୍ରଦାୟର ସେ ଅନ୍ଧ ଅନୁସରଣ କରିନଥିଲେ। ଅର୍ଥ ସଂଚୟ କରି ବଡଲୋକ ହେବା ଭାବନା ତାଙ୍କର ନଥିଲା। ତେଣୁ ସେ ସମୟରେ ଲକ୍ଷ ଲକ୍ଷ ଟଙ୍କା ଯାତ୍ରାରୁ ପାଇଥିଲେ ମଧ ସେ ସବୁକୁ ସେ ଦରିଦ୍ର କଳାକାରମାନଙ୍କ ପାଇଁ ବ୍ୟୟ କରି ଦେଇ ଜୀବନର ଶେଷ ପର୍ଯ୍ୟାୟରେ ଅର୍ଥ ପ୍ରତି ଅନାସକ୍ତ ହୋଇ ଦିନ କାଟୁଥିଲେ।

**ତିରୋଧାନ :**

କବିଙ୍କର କ୍ଷୁଦ୍ର ପରିବାର, ଏକମାତ୍ର ପୁତ୍ର ବିଶ୍ୱେଶ୍ୱର। ସେ ଥିଲେ ପଶ୍ଚିମ ବଙ୍ଗଳା ସରକାରଙ୍କ ଅଧୀନରେ ଜୁଡିସିଆଲ ଅଫିସର। ୧୯୬୮ ମସିହାରେ କବି ରୋଗଗ୍ରସ୍ତ

---

୧୧. ଶ୍ରୀ ବିଶ୍ୱେଶ୍ୱର ବସୁ- ଆର୍ଯ୍ୟ, ପୃ ୧୭

ହୋଇପଡିଲେ। ବିଶ୍ୱେଶ୍ୱର କଲିକତାରୁ ଆସି ପିତୃଦେବଙ୍କ ସେବାରେ ଲାଗିଲେ। ଅଗଷ୍ଟ ୧୮ ତାରିଖ ଦିନ ତାଙ୍କ ଅବସ୍ଥା ଅତ୍ୟନ୍ତ ସଙ୍କଟପୂର୍ଣ୍ଣ ହୋଇଉଠିଲା। ସେଦିନ ଯାଜପୁର ଆକାଶରେ ପ୍ରଚଣ୍ଡ ଝଡ଼ ଓ ବର୍ଷା। କବି ଜନ୍ମ ନେଇଥିଲେ ଝଡ଼ ବର୍ଷାର ପ୍ରବଳ ତାଣ୍ଡବ ଭିତରେ। ତାଙ୍କ ଜୀବନର ଶେଷଦିନରେ ସେଇ ଝଡ଼ର ତାଣ୍ଡବ। ସେ ମଧ ଥିଲେ ଝଡ଼ର ସଙ୍କେତ। ଯେଉଁ କ୍ଷେତ୍ରରେ ପ୍ରବେଶ କରିଛନ୍ତି ସେଠାରେ ଝଡ଼ ସୃଷ୍ଟି କରିଛନ୍ତି। ରାତି ୧୦ଟା ବେଳକୁ ତାଙ୍କ ପ୍ରାଣ ବାୟୁ ଉଡିଗଲା। ବୈତରଣୀ ମଧ୍ୟସ୍ଥ ବାରୁଣୀ ପଡିଆ ଶ୍ମଶାନରେ କବିଙ୍କର ମର ଶରୀରକୁ ଚିତାଗ୍ନିର ଲେଲିହାନ ଶିଖା ଧୀରେ ଧୀରେ ଭସ୍ମୀଭୂତ କରିଦେଲା। ଓଡ଼ିଶାର ସାରସ୍ୱତ ସାଧନା କ୍ଷେତ୍ରରେ ଅର୍ଦ୍ଧଶତାବ୍ଦୀ କାଳ ବିସ୍ମୟ ସୃଷ୍ଟି କରିଥିବା ଏକ ମହତ ଜୀବନର ମହାପ୍ରୟାଣ ହୋଇଗଲା। ଶତାବ୍ଦୀର ଏକ ଦୀପ୍ତିମାନ ମାର୍ତ୍ତଣ୍ଡ ବାରୁଣୀ ଭୂମିରେ ବାରୁଣୀରେ ଅସ୍ତମିତ ହୋଇଗଲା।

**ସମ୍ବେଦନ :**

ମୃତ୍ୟୁର ଚିତ୍ରପଟରେ ଜୀବନର ଭାସ୍ୱର ରୂପ ଫୁଟି ଉଠେ। ମୃତ୍ୟୁ ମହତ୍ ଜୀବନକୁ ନବ ଜନ୍ମ ଦିଏ। କୃଷ୍ଣପ୍ରସାଦଙ୍କ ବିୟୋଗରେ ଓଡ଼ିଶାର ଜନମାନସରେ ଦୁଃଖ ଓ ବେଦନାର ଯେଉଁ ଛାୟାପାତ ହୋଇଛି ସେଥିରୁ ସେ କିଭଳି ବରେଣ୍ୟ ଓ କରିତ୍କର୍ମା ଥିଲେ ସହଜରେ ଅନୁଭବ କରିହେବ। ତାଙ୍କ କବିତା, ନାଟକ, ସଙ୍ଗୀତ ଓ ହାସ୍ୟ ପରିବେଷଣର ସ୍ମୃତି ସେଦିନ ଜନଚେତନାକୁ କିଭଳି ଉଦବେଳ କରିଥିଲା ତାଙ୍କର ମୃତ୍ୟୁର ଶୋକଚ୍ଛ୍ୱାସରୁ ତାହା ଜାଣିହୁଏ।

ତାଙ୍କ ବିୟୋଗରେ ଦୈନିକ **ସ୍ୱରାଜ** ୨୧.୮.୬୮ ରେ ଲେଖିଲେ "ପ୍ରବୀଣ ନାଟ୍ୟକାର, କବି, ସଙ୍ଗୀତଜ୍ଞ ଓ ଲୋକସାହିତ୍ୟକାରଙ୍କ ଜୀବନାବସାନ। XXX

ସେ ଓଡ଼ିଶାର ଜଣେ ବିଖ୍ୟାତ ହାସ୍ୟରସିକ, ସାହିତ୍ୟିକ, ସଙ୍ଗୀତଜ୍ଞ, ନାଟ୍ୟକାର ଓ କଳାବିତ୍ ଥିଲେ। ତାଙ୍କର ନିଜର ଗୋଟିଏ ଯାତ୍ରା ଦଳ ବି ଥିଲା। ସେ ନିଜେ ନିର୍ଦ୍ଦେଶନା ଦେଉଥିଲେ।

X X X

କଲିକତାରେ ବି.ଏସ୍.ସି ପଢୁଥିବା ବେଳେ ସେ ବନ୍ଦେ ମାତରଂ ବିପ୍ଳବୀ ଦଳର ସଭ୍ୟ ରୂପେ ରାଜଦ୍ରୋହୀ ଭାବରେ ଘୋଷିତ ହୋଇଥିଲେ। ସେଥିରୁ ରକ୍ଷା ପାଇବା ପାଇଁ ପାର୍ସି କରେନଥିଆନ ଥିଏଟରରେ ଯୋଗଦେଇ ଆତ୍ମଗୋପନ କରିଥିଲେ। ଗୁରୁ ଭବାନୀଙ୍କଠାରୁ ସେ ୪ବର୍ଷ କାଳ ହିନ୍ଦୁସ୍ଥାନୀ ଶାସ୍ତ୍ରୀୟ ସଙ୍ଗୀତ ଶିକ୍ଷା କରିଥିଲେ।"

୧୨. ଦୈନିକ ସ୍ୱରାଜ୍ୟ, ୨୧.୮.୧୯୬୮

ମହାପାତ୍ର ନୀଳମଣି ସାହୁଙ୍କ ଅଧ୍ୟକ୍ଷତାରେ ଭୁବନେଶ୍ୱର **ଗୋଦାବରୀଶ ସାହିତ୍ୟ ସଂସଦ** ଏକ ଶୋକପ୍ରସ୍ତାବରେ କହିଥିଲେ "ପାଲାନାଟ୍ୟ ସାହିତ୍ୟ ଜରିଆରେ ସେ ଓଡ଼ିଶାର ଘରେ ଘରେ ପରିଚିତ ଥିଲେ। 'ଆଖଡା ଘରେ ବୈଠକ' ତାଙ୍କର ଅମ୍ଳାନ ସୃଷ୍ଟି। ତାଙ୍କର ସଙ୍ଗୀତ ଗୁଡିକ ମଧ୍ୟ ଅତି ମର୍ମସ୍ପର୍ଶୀ। ଅନ୍ୟମାନଙ୍କ ମଧ୍ୟରେ ସାହିତ୍ୟିକ ବାମାଚରଣ ମିତ୍ର ଓ ଶାନ୍ତନୁ କୁମାର ଆଚାର୍ଯ୍ୟ ସଭାରେ ଶ୍ରଦ୍ଧା ନିବେଦନ କରିଥିଲେ।"[୧୩]

ଦୈନିକ '**ପ୍ରଜାତନ୍ତ୍ର**' ବକ୍ସ ମଧ୍ୟରେ ପ୍ରଥମ ପୃଷ୍ଠାରେ ଖୁବ୍ ବଡ ଅକ୍ଷରରେ ଲେଖିଥିଲେ "ଯଶସ୍ୱୀ କବି କୃଷ୍ଣପ୍ରସାଦ ବସୁଙ୍କର ପରଲୋକ । ୭୮ ବର୍ଷ ବୟସରେ ଯାଜପୁର ବାସଭବନରେ ଉତ୍କଳଭାରତୀଙ୍କର ଜଣେ କୃତୀ ସନ୍ତାନଙ୍କର ଜୀବନାବସାନ।"

X X X

ସ୍ୱର୍ଗତ ବସୁ ଜଣେ ବୟୋଜ୍ୟେଷ୍ଠ କବି, ନାଟ୍ୟକାର ଓ ହାସ୍ୟରସିକ ଭାବରେ ଓଡ଼ିଶାର ପୁରପଲ୍ଲୀରେ ସୁପରିଚିତ। 'ଝଙ୍କାର'ରେ 'ଆଖଡା ଘରେ ବୈଠକ' ଓ ଅନ୍ୟାନ୍ୟ ବ୍ୟଙ୍ଗରଚନାରେ ସେ ନିଜର ଏକକ ଓ ଅନନ୍ୟ ପ୍ରତିଭାର ପରିଚୟ ଦେଇଯାଇଛନ୍ତି।

ତାଙ୍କର ମୃତ୍ୟୁରେ ଓଡ଼ିଶାବାସୀ ଜଣେ ପ୍ରତିଭାଶାଳୀ ସାହିତ୍ୟସାଧକ ଓ କୃତୀ କଳାବିତ୍‌ଙ୍କୁ ହରାଇଲା।[୧୪]

ଅନ୍ୟତମ ସ୍ୱାଧୀନତା ସଂଗ୍ରାମୀ **ଶ୍ରୀ ଗଦାଧର ଦତ୍ତ** ଲେଖିଲେ, "ତାଙ୍କ ଛାତ୍ର ଜୀବନରୁ ଦେଶପ୍ରେମ ଓ ଦେଶାତ୍ମବୋଧ ତାଙ୍କୁ ବହୁ ପରିମାଣରେ ପ୍ରଭାବିତ କରିଥିଲା ଏବଂ ସ୍ୱାଧୀନତା ସଂଗ୍ରାମରେ ମଧ୍ୟ ତାଙ୍କର ଦାନ ଅଛି। ତାଙ୍କର ସଙ୍ଗୀତ, ନାଟକ ଓ ଅଭିନୟ, ସ୍ୱଦେଶପ୍ରେମ ଓ ସ୍ୱାଧୀନତା ସଂଗ୍ରାମର ଉତ୍ତେଜନା ଗ୍ରାମାଞ୍ଚଳରେ ପ୍ରଚାରିତ କରିଥିଲା।[୧୫]

ଓଡ଼ିଶାର ପ୍ରତିଷ୍ଠିତ ଦୈନିକ '**ସମାଜ**' ତାଙ୍କର ସମ୍ପାଦକୀୟରେ ଲେଖିଲେ "ଓଡ଼ିଶାର ଅନ୍ୟତମ ସାହିତ୍ୟ ସାଧକ, ଖ୍ୟାତି ସମ୍ପନ୍ନ ନାଟ୍ୟକାର ସଙ୍ଗୀତ ଶିଳ୍ପୀ ଓ ଅଭିନେତା ଶ୍ରୀ କୃଷ୍ଣପ୍ରସାଦ ବସୁ ଆଉ ଇହ ଜଗତରେ ନାହାନ୍ତି।

---

୧୩. ଦୈନିକ ସ୍ୱରାଜ୍ୟ, ୨୧.୮.୧୯୬୮
୧୪. ପ୍ରଜାତନ୍ତ୍ର, ୨୦.୮.୧୯୬୮
୧୫. ତତ୍ରୈବ, ୨୭.୮.୧୯୬୮

"ତାଙ୍କର ମୃତ୍ୟୁରେ ଓଡ଼ିଶାର ସାହିତ୍ୟ କ୍ଷେତ୍ରରେ ନାଟ୍ୟ ଜଗତରେ ଓ ସଙ୍ଗୀତ କ୍ଷେତ୍ରରେ ଯେଉଁ ସ୍ଥାନଟି ଶୂନ୍ୟ ହେଲା, ବହୁ ବର୍ଷ ଯାଏ ତାହା ଆଉ ପୂରଣ ହେବାର ନୁହେଁ, ତାଙ୍କର ସାହିତ୍ୟକୃତି, ସଙ୍ଗୀତ ଓ ନାଟକ ରଚନା ଏବଂ ଥିଏଟର ଓ ଗୀତିନାଟ୍ୟ ଦଳଗଠନ ଦୃଷ୍ଟିରୁ ବିଚାର କଲେ ସ୍ୱୀକାର କରିବାକୁ ହେବ ଯେ, ସେ ଆଉ କିଛି କାଳ ବଞ୍ଚିଥିଲେ ଓଡ଼ିଶାର ସାହିତ୍ୟ ଓ ସଙ୍ଗୀତ ଗନ୍ତାଘର ଆହୁରି ସମୃଦ୍ଧ ହୋଇଥାନ୍ତା।"[୧୬]

'ଇତିହାସ କେବେ ଭୁଲିବ ନାହିଁ' ଶିରୋନାମାରେ **ଡକ୍ଟର ହରେକୃଷ୍ଣ ମହତାବ** ଲେଖିଥିଲେ-

X X X

ଏମାନଙ୍କ ନାମ ତଥାକଥିତ ଓଡ଼ିଆ ସାହିତ୍ୟରେ କାହିଁକି କୌଣସି ସମୀକ୍ଷାରେ ପଡେନାହିଁ। ୧୯୪୫ ସାଲ ଶେଷ ପର୍ଯ୍ୟନ୍ତ ଜାତୀୟତାର ଯେଉଁ ପ୍ରଖର ସ୍ରୋତ ବହିଥିଲା ସେତେବେଳେ ଯେଉଁମାନେ ପାଣି ଭିତରକୁ ନଯାଇ ବନ୍ଧେ ବନ୍ଧେ ଚାଲୁଥିଲେ ସ୍ୱାଧୀନତା ପରେ ସେହିମାନେ ଆଗେ କୂଳରେ ପହଞ୍ଚିଯାଇ, ଯେଉଁମାନେ ସନ୍ତରଣ କରୁଥିଲେ ବା କ୍ଲାନ୍ତ ହୋଇ ସଲିଳ ସମାଧି ଲାଭ କଲେ ସେମାନଙ୍କ ସ୍ମୃତିକୁ ମଧ୍ୟ ସ୍ୱୀକାର କରୁନାହାନ୍ତି।

X X X

ଆଜିର ଲିଖିତ ଇତିହାସରେ କୃଷ୍ଣବାବୁ ଆଉ ନାହାନ୍ତି, କିନ୍ତୁ ଜ୍ୱଳନ୍ତ ଭାବେ ଅଛନ୍ତି ଭବିଷ୍ୟତର ଇତିହାସରେ।[୧୭]

ନୃତ୍ୟ ବିଶାରଦ **ଦୟାନିଧି ଦାସ** କଳାଭବନ କଟକରୁ ଗୁରୁଙ୍କ ପ୍ରତି ଭକ୍ତି ନିବେଦନ କରି ଲେଖିଲେ "ମାଷ୍ଟ୍ରେ ଚାଲିଗଲେ, ଏକଥା ଭାବିଲା ବେଳକୁ ଆଖିରୁ ସ୍ୱତଃ ଲୁହଧାର ବହିଯାଉଛି। 'ବସୁ ମାଷ୍ଟ୍ରେ' ସେ ହେଉଛନ୍ତି ମାଷ୍ଟରଙ୍କ ମାଷ୍ଟର। କଥାରେ ଅଛି କୃଷ୍ଣବାବୁଙ୍କ ହାତ ଯାହାଠାରେ ଦିନକ ପାଇଁ ବାଜିଛି ସେ ଆଜି ଓଡ଼ିଶାର ଯାତ୍ରା ହେଉ ବା ଥିଏଟର ହେଉ ବା ଚଳଚ୍ଚିତ୍ର ଜଗତରେ ହେଉ, ନିଶ୍ଚୟ ଜଣେ ମାଷ୍ଟର।"[୧୮]

ଯାଜପୁରରୁ ରସରାଜ ଚନ୍ଦ୍ରମଣି ପଣ୍ଡା ଲେଖିଲେ "ବଲାଙ୍ଗୀରରୁ ବାଲେଶ୍ୱର, ବାରିପଦାରୁ ବ୍ରହ୍ମପୁର ତାଙ୍କର ସାହିତ୍ୟକୃତି ଉତ୍କଳର ସାରସ୍ୱତ ସଂପଦ ବିପଣୀରେ ଚିରୋଜ୍ଜ୍ୱଳ ହୋଇ ରହିଗଲା।

---

୧୬. ଦୈନିକ ସମାଜ, ୨୧.୮.୧୯୬୮

୧୭. ଦୈନିକ ପ୍ରଜାତନ୍ତ୍ର, ୩୦.୮.୧୯୬୮

୧୮. ଦୈନିକ ସମାଜ, ୨୧.୮.୧୯୬୮

X X X

ତାଙ୍କର ସେ ସ୍ଥିର ନିଶ୍ଚିତ, ଧ୍ରୁବ ସାଧନାର କଠୋର ଓ ନିୟମିତ ଲିପ୍‌ସା ଏ ଆଧୁନିକ ଯୁଗର ସ୍ଲୋଗାନ 'ଶସ୍ତା ସୁନ୍ଦର ମଜବୁତ୍' ଭିତରେ ହୁଏତ ଆଜି ଆଦୃତ ହୋଇନପାରେ। କିନ୍ତୁ ଝୁରା ଝୁରା ହୋଇ ଝରିପଡୁଥିବା ଆରିଷା ପିଠା ଯେ ଖାଇଛି, ଛେନାପୋଡ଼ ପିଠାର ପୁଚୁପୁଚିଆ ସୁଆଦ ତାକୁ ସେ ଆନନ୍ଦ ଦେଇପାରିବ?"[୧୯]

**ଶ୍ରଦ୍ଧାୟନୀ:**

କବିଙ୍କ ଦେହାବସାନରେ ଏ ଜାତି ଯେଭଳି ଅଶ୍ରୁଳ ବିଦାୟ ଦେଇଥିଲା, ତାଙ୍କ ଜୀବଦ୍ଦଶାରେ ଅଫୁରନ୍ତ ଶ୍ରଦ୍ଧା ନିବେଦନରେ କାର୍ପଣ୍ୟ କରିନଥିଲା। କୃଷ୍ଣପ୍ରସାଦ ପ୍ରଚୁର ଅର୍ଥ ସଂଗ୍ରହ କରିନଥିଲେ। କିନ୍ତୁ ଅଗଣିତ ମଣିଷର ହୃଦୟକୁ ଛୁଇଁବାକୁ ସେ ସମର୍ଥ ହୋଇଥିଲେ। ଦେଶରୁ ବିଦେଶ, ସାଧାରଣ ଜନମଞ୍ଚରୁ ରାଜ ଦରବାର ଯାଏ, ବିଦଗ୍ଧ ମଣ୍ଡଳୀର ଭବ୍ୟ ବରମାଲ୍ୟରୁ ଯାତ୍ରାମଞ୍ଚର ଅନାବିଳ କରତାଳି ଭିତରେ କୃଷ୍ଣପ୍ରସାଦଙ୍କ ସାହିତ୍ୟିକ ଓ ସାଙ୍ଗୀତିକ ପ୍ରତିଭାର ଯେଉଁ ଅନାସକ୍ତ ମୂଲ୍ୟାୟନ ହୋଇଛି ତାର ତୁଳନା ନାହିଁ। ତାଙ୍କର ଗୁଣମୁଗ୍ଧ ବନ୍ଧୁ, ବିଭିନ୍ନ ସାରସ୍ୱତ ଅନୁଷ୍ଠାନ ଓ ତାଙ୍କୁ ଗଭୀର ଭାବରେ ଅନୁଭବ କରିଥିବା ସମଧର୍ମା ବାଣୀ ସାଧକ ମାନଙ୍କର ମତ ଓ ମନ୍ତବ୍ୟ ଭିତରେ ତାଙ୍କ ପ୍ରତିଭାର ଦୀପ୍ତି ଓ ଔଜ୍ଜ୍ୱଲ୍ୟ ଯେଭଳି ଉଦ୍‌ଭାସିତ ତାରି କିଂଚିତ ଆଭାସ ଏଠାରେ ପାଠକମାନଙ୍କ ପାଇଁ ଅପ୍ରାସଙ୍ଗିକ ହେବ ନାହିଁ। କବିଙ୍କ ନାଟ୍ୟ ପ୍ରତିଭାରେ ମୁଗ୍ଧ ହୋଇ ମୟୁରଭଞ୍ଜ **ମହାରାଜା ପୂର୍ଣ୍ଣଚନ୍ଦ୍ର ଭଞ୍ଜ** ତାଙ୍କୁ **'ଉତ୍କଳ ଗନ୍ଧର୍ବ'** ଉପାଧିରେ ଭୂଷିତ କରିଥିଲେ। ସେହିପରି ତାଙ୍କ କବି ପ୍ରତିଭାରେ ଉଦ୍‌ବୁଦ୍ଧ ହୋଇ ଆଳିର କଳାନୁରାଗୀ **ରାଜା ବ୍ରଜସୁନ୍ଦର ଦେବ** ୧୯୩୯ ମସିହାରେ ତାଙ୍କୁ **'କବି ମଞ୍ଜୁଳ'** ଉପାଧିରେ ବିଭୂଷିତ କରିଥିଲେ। ସେହି ସମୟରୁ ସେ କବି ମଞ୍ଜୁଳ ଭାବରେ ପରିଚିତ ହୋଇ ଆସୁଛନ୍ତି। ତାହାହିଁ ତାଙ୍କର ଉପଯୁକ୍ତ ପରିଚୟ।

୧୯୫୨ ମସିହା ଜୁନ୍‌ରେ ନାଟ୍ୟକାର **ଅଶ୍ୱିନୀ କୁମାର ଘୋଷଙ୍କ** ନେତୃତ୍ୱରେ କଲିକତାରେ ପ୍ରବାସୀ ଉତ୍କଳୀୟମାନଙ୍କ ତରଫରୁ ତାଙ୍କୁ ବିପୁଳ ସମ୍ବର୍ଦ୍ଧନା ଜ୍ଞାପନ କରାଯାଇଥିଲା। ଶଶୀଭୂଷଣ ଦେ ଷ୍ଟ୍ରୀଟ୍‌ରେ ଏହି ସଭାରେ ବୃହତ୍ତର କଲିକତା ଉତ୍କଳ ସମାଜର କର୍ମକର୍ତ୍ତାମାନେ ଯୋଗ ଦେଇଥିଲେ। ଆସନ୍ତାକାଲିର ସମ୍ପାଦକ ଶ୍ରୀଯୁକ୍ତ ହୃଦାନନ୍ଦ ମଲ୍ଲିକ ବସୁଙ୍କ ପ୍ରତିଭାର ପରିଚୟ ଦେଇଥିଲେ।[୨୦]

---

୧୯. ଛାରପୋକ, ଯାଜପୁର, ପୃ ୮

୨୦. ଆସନ୍ତା କାଲି, ୧୯୫୨ ଜୁଲାଇ ସଂଖ୍ୟା

ପ୍ରଜ୍ଞାତନ୍ତ୍ର ପ୍ରଚାର ସମିତି ୧୯୫୬ ମସିହାରେ ବିଷୁବ ଉତ୍ସବରେ ଓଡ଼ିଶାର ସର୍ବଶ୍ରେଷ୍ଠ ବ୍ୟଙ୍ଗ ସାହିତ୍ୟିକ ଭାବରେ କବିଙ୍କୁ ପ୍ରୀତି ଉପହାର ଦେଇଛନ୍ତି।[୨୧]

୧୯୬୧ ମସିହାରେ ଓଡ଼ିଶା ସାହିତ୍ୟ ଏକାଡେମୀ କବିଙ୍କୁ ଉପହାର ଓ ମାନପତ୍ର ପ୍ରଦାନ କରି ନିଜକୁ ଗୌରବାନ୍ୱିତ କରିଛନ୍ତି।[୨୨]

କବିଙ୍କର ପ୍ରତିଭା ଉପରେ ମନ୍ତବ୍ୟ ଦେବାକୁ ଯାଇ କାନ୍ତକବି ପ୍ରତିଷ୍ଠିତ 'ଡଗର' ଲେଖିଛନ୍ତି, "ଆମ୍ଭେମାନେ ଓଡ଼ିଆ ସାହିତ୍ୟର ଚିହ୍ନରା ଗ୍ରାହକମାନଙ୍କୁ ଆଉ ଏକ ମତିମାନ୍, ମେଧାବାନ, ଗୁଣବାନ, ରସବିତ୍ ଓ ସ୍ୱର ସଂଳାପୀ କ୍ଷଣଜନ୍ମା ପୁରୁଷଙ୍କର ସ୍ମରଣ ଦେଇ ନିଜକୁ କୃତାର୍ଥ ମନେ କରୁଛୁ। ଓଡ଼ିଆ ସାହିତ୍ୟକୁ ବର୍ତ୍ତମାନ କେତେଖଣ୍ଡ ପତ୍ରପତ୍ରିକା ଓ ଉପନ୍ୟାସ କବିତା ଭିତରେ ଆବଦ୍ଧ କରି ଯେଉଁମାନେ ତାର ବାଗଡୋରି ପୁଞ୍ଜି ବଳରେ କିମ୍ବା ବିଶ୍ୱବିଦ୍ୟାଳୟ ଡିଗ୍ରୀ ଓ ସରକାରୀ ଚାକିରୀ ପ୍ରାପ୍ତିର ଉତ୍ତରାଧିକାରୀ ସୂତ୍ରରେ ଧରିବାର ଗର୍ବ କରନ୍ତି ସେମାନଙ୍କ ଆଗରେ ଜଣେ କୃଷ୍ଣପ୍ରସାଦ ଓ ବୈଷ୍ଣବ ପାଣିଙ୍କର ଉଲ୍ଲେଖ ସାମାନ୍ୟ ହୋଇପାରେ। କିନ୍ତୁ ଏଭଳି ଚରିତ୍ର ତଥାକଥିତ ସାହିତ୍ୟିକମାନଙ୍କ ଅବହେଳା, ଅସମ୍ମାନ ଏବଂ ଯୋଗ୍ୟ ଆସନ ଦେବାର କାର୍ପଣ୍ୟ ସତ୍ତ୍ୱେ ଓଡ଼ିଶାର ଗଣମନରେ ଯଥେଷ୍ଟ ପ୍ରଭାବ ପକାଇଛି।[୨୩]

ଶ୍ରୀରାମଚନ୍ଦ୍ର ଭବନରେ କୃଷ୍ଣପ୍ରସାଦଙ୍କୁ ୧୯୩୭ ମସିହା ବାର୍ଷିକ ଉତ୍ସବରେ ସମ୍ମାନିତ କରାଯାଇଥିଲା। ଏ ସଭାରେ ସଭାପତି ଥିଲେ ପାଟଣା ମହାରାଜା ୰ ରାଜେନ୍ଦ୍ର ନାରାୟଣ ସିଂଦେଓ। ଓଡ଼ିଆ ସାହିତ୍ୟ ବିଭାଗର ମୁଖ୍ୟବକ୍ତା ଥିଲେ ୰ ଗୋପାଳ ଚନ୍ଦ୍ର ପ୍ରହରାଜ ଓ ସଙ୍ଗୀତ ବିଭାଗରେ କୃଷ୍ଣପ୍ରସାଦ ବସୁ। ସଭାରେ ପିତୃତୁଲ୍ୟ ସ୍ୱର୍ଗତ ବାବୁ ଗୋପାଳଚନ୍ଦ୍ର ପ୍ରହରାଜ ମହୋଦୟ ମାଳାଟିଏ ଘେନି କହିଲେ, କେବଳ ବେଳେ ବେଳେ ଆପଣଙ୍କର ଛାତ୍ରମାନଙ୍କର କୃତିତ୍ୱ ଦେଖି, ଜୀବନରେ ଆଶା ଥିଲା ଆପଣଙ୍କୁ ଦେଖିବାକୁ। ଆପଣ ନିଶ୍ଚିତ ଆଚାର୍ଯ୍ୟ ଶ୍ରେଷ୍ଠ। ଆପଣ କବି ମଂଜୁଳ। ଆମ ଜାତିର ଗୌରବ।[୨୪]

କଲିକତାରୁ ପ୍ରକାଶ ପାଉଥିବା ଇଂରାଜୀ ଅମୃତ ବଜାର ପତ୍ରିକାରେ କୃଷ୍ଣପ୍ରସାଦଙ୍କ ଜୀବନୀ ଓ ପ୍ରତିଭା ସମ୍ପର୍କରେ ଏକ ପ୍ରବନ୍ଧ ଲେଖି କବି ଡକ୍ଟର ମାୟାଧର ମାନସିଂ

---

୨୧. ଝଂକାର, ୭ମ ବର୍ଷ ୧୯୫୬, ପୃ ୧୮୨
୨୨. ପରିଶିଷ୍ଟରେ ପ୍ରଦତ୍ତ
୨୩. ଡଗର, ୧୫/୨୩ ପୃ ୬
୨୪. କୃଷ୍ଣପ୍ରସାଦ ବସୁ– ପଥଭ୍ରଷ୍ଟର ଜୀବନକଥା, ୪ର୍ଥ ଭାଗ

ତାଙ୍କୁ ବୃହତ୍ତର ଜଗତରେ ପରିଚିତ କରାଇ ଅଛନ୍ତି। ମାନସିଂ ସେଥିରେ ଲେଖିଛନ୍ତି-

"A School teacher by profession Shri Krishna Prasad Basu is popular throughout Orissa as a folk song and 'Pala' composer and playwright. Known for developing folk entertainment parties in the state, he had his own opera company which was renowned in Orissa. I"[୨୫]

କବି କାଳିନ୍ଦୀ ଚରଣ ପାଣିଗ୍ରାହୀ ଲେଖିଛନ୍ତି "ବୈଷ୍ଣବ ପାଣି ଦେହ ତ୍ୟାଗ କଲେ- ଏଇ ଗତ ମଇ ମାସ (୧୯୫୬)ରେ। ତାଙ୍କର ସମସାମୟିକ ତଥା ସହକର୍ମୀ ରୂପେ ଶ୍ରୀ କୃଷ୍ଣପ୍ରସାଦ ବସୁଙ୍କ ନାମ ଉଲ୍ଲେଖଯୋଗ୍ୟ। ଓଡ଼ିଆ ଯାତ୍ରାକୁ ତାଙ୍କର ଦାନ ଅବିସ୍ମରଣୀୟ। ଏବେ ମଧ୍ୟ ସେ 'ପାଲା' ଲେଖୁଛନ୍ତି।"[୨୬]

ଓଡ଼ିଶାର ସାରସ୍ୱତ ଜଗତରେ କୃଷ୍ଣପ୍ରସାଦ ଜଣେ ଅଭିଜାତ ଶିଳ୍ପୀ ଥିଲେ। ତାଙ୍କରି ପ୍ରତିଭାରେ ଲୋକସାହିତ୍ୟ ଓ ବିଦଗ୍ଧ ସାହିତ୍ୟର ମଂଜୁଳ ସମନ୍ୱୟ ଦେଖିବାକୁ ମିଳେ। କବିମଞ୍ଜୁଳଙ୍କ ଜୀବନର ଇତିହାସ ଉତ୍କଳର ଅର୍ଦ୍ଧ ଶତାବ୍ଦୀର ଲୋକସାହିତ୍ୟର ଇତିହାସ। ଜୀବନର ଶେଷ କାଳ ପର୍ଯ୍ୟନ୍ତ ଲେଖନୀ ଚଳାଇ ସେ ଅଭିନବଭଙ୍ଗୀରେ ଲୋକସାହିତ୍ୟ ସୃଷ୍ଟି କରିଛନ୍ତି। ସାହିତ୍ୟ ଥିଲା ତାଙ୍କ ପାଇଁ ଏକ ସାମାଜିକ ଅଙ୍ଗୀକାର। ଅତି ବିଶ୍ୱସ୍ତତାର ସହିତ ସେ ତାହା ପାଳନ କରିଛନ୍ତି। ଲୋକ ହୃଦୟରେ ସେ ଯେଉଁ ଆସନ ବାଛି ନେଇଛନ୍ତି, ତାହା ଅନନ୍ତ କାଳ ପାଇଁ ଅମ୍ଳାନ ରହିବ। ତାଙ୍କରି ଭାଷାରେ

"ଲେଖନୀ କବିର କବିତା ପରପରାଣ ପାଇଁ
ପର ଧମନୀର ନର୍ତ୍ତନେ କବି ଅମର ଥାଇ।"



୨୫. Dr. M. Manasingha, Amrit Bazar Patrika, 28.4.1956

୨୬. ତଗର, ସାହିତ୍ୟ ବିଶେଷାଙ୍କ ୨୦/୧, ପୃ ୬୭

# ସାରସ୍ୱତ କୃତି ଓ କୃତିତ୍ୱ

## ଚତୁର୍ଥ ପରିଚ୍ଛେଦ

## ନାଟ୍ୟ ଜଗତ

କବିମାଣ୍ଡୁଳ କୃଷ୍ଣପ୍ରସାଦଙ୍କ ସାରସ୍ୱତ ସୃଷ୍ଟି ଆକଳନ ଏକ କଷ୍ଟସାଧ୍ୟ ବ୍ୟାପାର। ଦୀର୍ଘ ଅର୍ଦ୍ଧ ଶତାବ୍ଦୀ ଧରି ଅବିରାମ ଲେଖନୀ ଚାଳନା କରି ଓଡ଼ିଶାର ବାଣୀ ଭଣ୍ଡାରକୁ ସେ ବିଭିନ୍ନ ଦିଗରୁ ସମୃଦ୍ଧ କରି ଯାଇଛନ୍ତି। ତାଙ୍କ ବିପୁଳ ସୃଷ୍ଟି ଏପର୍ଯ୍ୟନ୍ତ ଲୋକଲୋଚନକୁ ଆସି ପାରି ନାହିଁ। ଦୁଇ ଭାଗରେ ବିଭକ୍ତ ହୋଇ ପ୍ରକାଶ ପାଉଥିବା "କବି ମଂଜୁଳ କୃଷ୍ଣ ପ୍ରସାଦ ଗ୍ରନ୍ଥାବଳୀ"ରେ କବିଙ୍କର କେତୋଟି ମାତ୍ର ଖଣ୍ଡକାବ୍ୟ ଓ ୨ଟି ନାଟକ ପ୍ରକାଶିତ ହୋଇଛି। ତାଙ୍କର ଅର୍ଦ୍ଧାଧିକ ସୃଷ୍ଟି ମୁଦ୍ରାଯନ୍ତ୍ରର ମୁଖାବଲୋକନ କରିନାହିଁ। ତାଙ୍କର ସାରସ୍ୱତ ସୃଷ୍ଟି ସମ୍ପର୍କରେ କିଞ୍ଚିତ ଆଲୋଚନା ଆମର ଲକ୍ଷ୍ୟ। ପୁସ୍ତକ ଶେଷରେ ପ୍ରଦତ୍ତ ପରିଶିଷ୍ଟରେ କବିଙ୍କର ରଚନା ସମ୍ଭାରର ଏକ ତାଲିକା ପ୍ରଦାନ କରାଯାଇଛି ମଧ୍ୟ।

**ନାଟ୍ୟଜଗତ :**

କବିଙ୍କର ବହୁବିଧ ରଚନା ସମ୍ଭାର ମଧ୍ୟରେ ନାଟକର ସଂଖ୍ୟା ୨୩ ଖଣ୍ଡ ବୋଲି ଗ୍ରହଣ କରାଯାଇଛି। ନାଟ୍ୟକାରଙ୍କ ନିଜର ମନ୍ତବ୍ୟ ଏହିପରି– "ଗତ ବିଂଶତି ବର୍ଷ ନାଟକ ଓ ସଙ୍ଗୀତ କ୍ଷେତ୍ରରେ ଶ୍ରମ ଓ ଅଧ୍ୟବସାୟ ସହିତ କାର୍ଯ୍ୟକରି ଯେଉଁ ଜ୍ଞାନ ଓ ଅଭିଜ୍ଞତା ଅର୍ଜନ କରିଛି, ତାହାର ଫଳ ସ୍ୱରୂପ ସହସ୍ରାଧିକ ସଙ୍ଗୀତ ଓ ୨୩ ଖଣ୍ଡି ନାଟକ ଓ ୪ ଖଣ୍ଡି ସଙ୍ଗୀତ ଗ୍ରନ୍ଥ ରଚିତ ହୋଇଛି।"[୧] ଏହି ୨୩ ଖଣ୍ଡି ନାଟକ ବ୍ୟତୀତ 'ସମାଜ ଚିତ୍ର' ନାମକ ଏକ ନାଟକ ମଧ୍ୟ ସେ ରଚନା କରିଛନ୍ତି। କବି ନିଜ ରଚିତ 'ଫୁଲହାର' ସଙ୍କଳନର ଭୂମିକାରେ 'ତପସ୍ୱୀ' ଓ 'ରାମ ବନବାସ' ନାମକ ଦୁଇଖଣ୍ଡ ନାଟକର ସୂଚନା ଦେଇଛନ୍ତି।[୨] ଉପରୋକ୍ତ ୩ଖଣ୍ଡ ନାଟକ କବିଞ୍ଜୁଳ ଗ୍ରନ୍ଥାବଳୀ ପ୍ରଥମ ଖଣ୍ଡରେ ଦିଆଯାଇଥିବା ୨୩ ଖଣ୍ଡ ନାଟକର ଅନ୍ତର୍ଭୁକ୍ତ ହୋଇନାହିଁ। ସମାଲୋଚକ ବୀର କିଶୋର ଦାସ ତାଙ୍କର ଯୁଗେ ଯୁଗେ ନାଟ୍ୟ ସାହିତ୍ୟ ପୁସ୍ତକରେ "ରାଷ୍ଟ୍ରପତି ଶିବାଜୀ" ନାଟକର ନାମୋଲ୍ଲେଖ କରିଛନ୍ତି। ଡକ୍ଟର କୃଷ୍ଣ ଚରଣ ବେହେରାଙ୍କ ନିକଟକୁ କବି ଲେଖିଥିବା ପତ୍ରରେ 'ଚଣ୍ଡାଶୋକ' ଓ ବିଶ୍ୱାମିତ୍ର ନାମକ ଦୁଇଖଣ୍ଡ ନାଟକ କଥା ମଧ୍ୟ ଲେଖିଛନ୍ତି।[୩]

---

୧. କୃଷ୍ଣପ୍ରସାଦ ବସୁ– ପ୍ରସାଦ ଗୀତାବଳୀ, ପୃ ୧

୨. ଏଜନ– ଫୁଲହାର, ଭୂମିକା

୩. ଡଃ ଲାବଣ୍ୟ ନାୟକ– ଓଡ଼ିଆ ଚରିତ ସାହିତ୍ୟ, ପୃ ୫୫୦

ଏସବୁକୁ ବିଚାରକୁ ନେଲେ କୃଷ୍ଣ ପ୍ରସାଦଙ୍କ ନାଟକ ସଂଖ୍ୟା ୨୯ ଖଣ୍ଡ ବୋଲି ଧରିନେବାକୁ ହେବ। ପ୍ରସାଦ ଗୀତାବଳୀ ପ୍ରକାଶିତ ହେବା ବେଳକୁ ୨୩ ଖଣ୍ଡ ନାଟକ ରଚିତ ହୋଇଥିଲା। ଏହାପରେ ବୋଧହୁଏ ଅନ୍ୟ ନାଟକ ଗୁଡ଼ିକ ରଚିତ ହୋଇଛି। ଏ ନାଟକାବଳୀ ମଧ୍ୟରୁ 'ମିଠାମହୁରା' ଓ 'କାରାମନ୍ଦିର' ନାଟକ ଦୁଇଟି ପ୍ରକାଶିତ। ଅନ୍ୟ ନାଟକ ଗୁଡିକ ପାଣ୍ଡୁଲିପି ଆକାରରେ ରହିଛି। 'ତପସ୍ୱୀ', 'ରାମ ବନବାସ', 'ଦକ୍ଷ ଯଜ୍ଞ', 'ଅଛୁଆଁ ଝିଅ', 'ବିଶ୍ୱାମିତ୍ର', 'ରାଷ୍ଟ୍ରପତି ଶିବାଜୀ' ଓ 'ଚଣ୍ଡାଶୋକ' ଆଦି ୧୧ ଖଣ୍ଡ ନାଟକର ପାଣ୍ଡୁଲିପି ଏବେ ମିଳିବା କଷ୍ଟକର।

**କାରା ମନ୍ଦିର :**

କାରା ମନ୍ଦିର ଏକ ପୂର୍ଣ୍ଣାଙ୍ଗ ନାଟକ। ଦେବକୀଙ୍କ ବିବାହଠାରୁ କୃଷ୍ଣ ଜନ୍ମ ଓ ନନ୍ଦ ଗୃହରେ ପ୍ରବେଶ ପର୍ଯ୍ୟନ୍ତ ବିଷୟବସ୍ତୁକୁ ନେଇ ଏହା ରଚିତ। ବିଷୟବସ୍ତୁ ପାଇଁ ନାଟ୍ୟକାର ସଂସ୍କୃତ ଭାଗବତ ଉପରେ ନିର୍ଭର କରିଛନ୍ତି। ଦେବକୀଙ୍କ ସ୍ୱୟମ୍ବର, ଅଷ୍ଟମ ଗର୍ଭରେ କଂସ ହନ୍ତାର ଜନ୍ମ ବିଷୟକ ଭବିଷ୍ୟବାଣୀ, ଦେବକୀ ବସୁଦେବଙ୍କର କାରାଜୀବନ, କୃଷ୍ଣ ଜନ୍ମ ଓ ନନ୍ଦଗୃହରେ ପ୍ରବେଶ, ମାୟାକନ୍ୟା ଆନୟନ, ଦେବକୀଙ୍କ ସନ୍ତାନମାନଙ୍କୁ ହତ୍ୟା କଲା ବେଳେ କଂସର କ୍ରୋଧ ଆଦି ବିଷୟ ଭାଗବତରେ ବର୍ଣ୍ଣନା କରାଯାଇ ଥିବା କାହାଣୀର ଅନୁରୂପ।

ପୁରାଣ କାହାଣୀକୁ ନାଟ୍ୟରୂପ ଦେବା ବେଳେ ନାଟ୍ୟକାର ଅନେକ ସ୍ଥଳରେ ମୌଳିକତା ପ୍ରଦର୍ଶନ କରିଛନ୍ତି। ନାଗରାଜ ବିଷୟକ କାହାଣୀ ନାଟ୍ୟକାରଙ୍କ କଳ୍ପନା ପ୍ରସୂତ। କାହାଣୀର ଅଗ୍ରଗତିରେ ଜଟିଳତା ସୃଷ୍ଟି କରି ଦ୍ୱନ୍ଦ୍ୱମୂଳକ କରିବା ସଙ୍ଗେ ସଙ୍ଗେ କଂସ ଚରିତ୍ରର ନିଷ୍ଠୁରତା ପ୍ରଦର୍ଶନ କରିବା ଦିଗରେ ଏହା ଯଥେଷ୍ଟ ସହାୟକ ହୋଇଛି। ପୁରାଣର ସର୍ପ ଅନନ୍ତକୁ ଏକ ଚରିତ୍ର ଭାବରେ ଉପସ୍ଥାପିତ କରାଯାଇଛି। ଅନନ୍ତ ହୋଇଛନ୍ତି ଧର୍ମ ପରାୟଣ ବିଷ୍ଣୁଭକ୍ତ ନାଗରାଜା। ଅନନ୍ତଙ୍କୁ କଂସର ମୁଖ୍ୟ ପ୍ରତିଦ୍ୱନ୍ଦୀ ଚରିତ୍ର ଭାବରେ ଗ୍ରହଣ କରାଯାଇଛି। ଅନନ୍ତଙ୍କ ରାଜ୍ୟର ବ୍ରାହ୍ମଣ ଭଗଦତ୍ତ ଛଦ୍ମବେଶରେ କଂସ ଦରବାରରେ ପହଞ୍ଚି ରାଣୀ ଅସ୍ତି ଓ କଂସଙ୍କର ବିଶ୍ୱାସଭାଜନ ହୋଇଛନ୍ତି। ଅନନ୍ତ ରାଜ୍ୟ ହରାଇ ଛଦ୍ମବେଶରେ ଉଗ୍ରସେନଙ୍କୁ ଭେଟିଛନ୍ତି। ଏମାନଙ୍କର ମିଳିତ ଉଦ୍ୟମରେ କଂସ ଅପଶାସନର ପୂର୍ଣ୍ଣଛେଦ ପଡିଛି।

ନାଟକରେ ଚରିତ୍ରର ବହୁଳତା ଦୃଷ୍ଟିଗୋଚର ହୁଏ ନାହିଁ। ଦଶଟି ପୁରୁଷ ଚରିତ୍ର ଓ ଦୁଇଟି ନାରୀ ଚରିତ୍ରକୁ ନେଇ ନାଟକର ସୃଷ୍ଟି। ଏଥିରେ କଂସକୁ ଭୋଗ, ଅହଙ୍କାରୀ ଓ କୃଷ୍ଣଙ୍କୁ ପରମାତ୍ମା ଭାବରେ ଦେଖାଇଦିଆଯାଇଛି। କଂସ ଜଡ଼ବାଦରେ ବିଶ୍ୱାସୀ ଓ ମୁଖ୍ୟ ଚରିତ୍ର।

ଏହି ନାଟକରେ କୋଡ଼ିଏଟି ସଙ୍ଗୀତ ଦିଆଯାଇଛି। ସଙ୍ଗୀତ ଗୁଡିକ ପ୍ରାଚୀନ ଖମ୍ବାଜ, କଓ୍ୱାଲି, କଳାଂଡା, ଖେମଟା, ନଟମହ୍ଲାର ଆଦି ରାଗରାଗିଣୀ ଯୁକ୍ତ। ସଙ୍ଗୀତ ଗୁଡିକ ମଧ୍ୟରୁ କେତୋଟି ମାତ୍ର ନାଟକୀୟ ଚରିତ୍ରମାନଙ୍କ ଦ୍ୱାରା ଗାନ କରାଯାଇଥିବା ବେଳେ ଅଧିକାଂଶ ସଙ୍ଗୀତ ନିୟତି ଓ ଭିକାରି କଣ୍ଠରେ ନାଟ୍ୟକାର ଦେଇଛନ୍ତି। କେତେକ ସଙ୍ଗୀତରେ ସମାଜରେ ଧର୍ମନାମରେ ଚାଲିଥିବା କୁସଂସ୍କାରର ସମାଲୋଚନା ହୋଇଥିବା ବେଳେ, କେତେକ ନିର୍ମଳ ବିଭୁ ପ୍ରୀତିରେ ଅନବଦ୍ୟ ହୋଇ ଉଠିଛି। 'ପାପପୁଣ୍ୟ ସରଗନରକ କଳ୍ପନାରେ କଳ୍ପନା', 'ଧରମ ଧରମ କର କରମ ନାହିଁ' ଆଦି ସଙ୍ଗୀତରେ ନାଟ୍ୟକାରଙ୍କର ସଂସ୍କାର ଅଭୀପ୍ସା ପରିସ୍ଫୁଟ ହୋଇଛି। କର୍ମ ହିଁ ଧର୍ମ ଏହି ଚିନ୍ତାର ପ୍ରକାଶ ଘଟିଛି ସଙ୍ଗୀତ ଗୁଡିକରେ।

ଏହି ନାଟକଟି କୃଷ୍ଣ ପ୍ରସାଦଙ୍କ ଦ୍ୱାରା ୧୯୫୭ ମସିହାରେ ଯାଜପୁର ନିତ୍ୟାନନ୍ଦ ପୁସ୍ତକାଳୟରୁ ପ୍ରକାଶିତ ହୋଇଛି। ନାଟକର ଆରମ୍ଭରେ ନାଟକର ଅଭିନୟ ସମ୍ପର୍କରେ ଏକ ଭୂମିକା ସଂଯୋଜିତ ହୋଇଛି। ତିନିଗୋଟି ଅଙ୍କ ଓ ବହୁ ଦୃଶ୍ୟରେ ବିଭକ୍ତ ଏହା ଏକ ମିଳନାନ୍ତକ ନାଟକ।

ନାଟକର ନାମକରଣ ପ୍ରତୀକଧର୍ମୀ ହୋଇଛି। କାରାଗାର ସବୁବେଳେ ଯନ୍ତ୍ରଣାର ସ୍ଥଳ, ଦୁଃଖ ଓ ନିର୍ଯାତନାର ସ୍ଥାନ। ଏଠାରେ କିନ୍ତୁ କାରାଗାର ଏକ ମନ୍ଦିର। ଏହି ମନ୍ଦିରରେ ପରମାତ୍ମାଙ୍କର ଦର୍ଶନ ମିଳେ। ସବୁ ଦୁଃଖ ଓ ଯାତନା ଶେଷରେ ଆଶା ଓ ଆନନ୍ଦର ଆଲୋକ ଜଳି ଉଠେ। ତେଣୁ ଏହା କାରା ମନ୍ଦିର।

**କୃଷ୍ଣ ଚ଼ରିତ :**

କୃଷ୍ଣଙ୍କ ଚ଼ରିତକୁ ନେଇ ରଚ଼ିତ 'କୃଷ୍ଣ ଚ଼ରିତ' ବସୁଙ୍କର ଏକ ଜନପ୍ରିୟ ନାଟକ। କୃଷ୍ଣ କାହାଣୀର ପ୍ରଥମ ଭାଗ 'କାରା ମନ୍ଦିର' ନାଟକର କଥାବସ୍ତୁ। 'କୃଷ୍ଣ ଚ଼ରିତ'ରେ କୃଷ୍ଣଙ୍କର ବ୍ରଜଲୀଳା ଓ ମଥୁରା ବିଜୟର ବର୍ଣ୍ଣନା ଦିଆଯାଇଛି। ଭାଗବତରେ ବର୍ଣ୍ଣିତ ପାରମ୍ପରିକ ଘଟଣାର ଏହା ନାଟ୍ୟ ରୂପ। କଥାନକରେ କୌଣସି ଚମତ୍କାରିତା ନଥିଲେ ବି କେତେକ ମୌଳିକ ସଂଯୋଗ ରହିଛି।

ଏହା ବସୁଙ୍କର ସର୍ବବୃହତ୍ ନାଟକ। ଏଥିରେ ଚାଳିଶଟି ପୁରୁଷ ଚରିତ୍ର ସହିତ ପନ୍ଦରଟି ନାରୀ ଚରିତ୍ର ରହିଛି। ନାଟକଟି ପାଞ୍ଚ ଅଙ୍କରେ ବିଭକ୍ତ। ପଞ୍ଚମ ଅଙ୍କ ତୃତୀୟ ଦୃଶ୍ୟ ପର୍ଯ୍ୟନ୍ତ ନାଟକକୁ 'ବ୍ରଜବିହାର' ଓ ଶେଷ ଚାରି ଦୃଶ୍ୟକୁ 'ମଥୁରା ବିଜୟ' ନାମରେ ନାମିତ କରିଛନ୍ତି। ନାଟକର ଆରମ୍ଭରେ ଏକ ପ୍ରସ୍ତାବନା ଦୃଶ୍ୟର ସଂଯୋଜନା କରାଯାଇଛି।

କୃଷ୍ଣ ଜନ୍ମର କାରଣ ଭକ୍ତିଧର୍ମର ପ୍ରଚାର, ପରକୀୟା ଭାବର ବିସ୍ତାର ଓ ନିଗୂଢ଼ ତତ୍ତ୍ୱଜ୍ଞାନକୁ ସାଧାରଣଙ୍କ ନିକଟରେ ବ୍ୟକ୍ତ କରିବା ପାଇଁ ନାଟକର ସୃଷ୍ଟି ବୋଲି ପ୍ରସ୍ତାବନା ଅଂଶରେ କୁହାଯାଇଛି ।

ନାଟକର ଛତ୍ରେ ଛତ୍ରେ ତତ୍ତ୍ୱଦର୍ଶନର ବହୁଳ ପରିପ୍ରକାଶ ଦେଖିହୁଏ । ଲୋକଶିକ୍ଷା ଓ ମନୋରଂଜନ ନାଟକର ଲକ୍ଷ୍ୟ ହେଲେ ବି ଅନାବଶ୍ୟକ ସ୍ଥଳେ ଶିକ୍ଷା ଦେବା ପାଇଁ ବ୍ୟଗ୍ରତା ପ୍ରକାଶିତ ହେଲେ ରସ ସଞ୍ଚାର ବ୍ୟାହତ ହୁଏ । କୃଷ୍ଣ ଚରିତରେ ଏହାହିଁ ହୋଇଛି । ପାଣ୍ଡିତ୍ୟ ଓ ବହୁ ଶାସ୍ତ୍ର ଦର୍ଶିତାର ପ୍ରକାଶ ପାଇଁ ଅନେକ ସ୍ଥଳରେ ସଂଳାପକୁ ଅଯଥା ଦୀର୍ଘ କରାଯାଇଛି । ବୈଷ୍ଣବ ଧର୍ମ ଦର୍ଶନର ତତ୍ତ୍ୱ ବୟାନ ନାଟକର ଉଦ୍ଦେଶ୍ୟ ବୋଲି ନାଟ୍ୟକାର ସ୍ୱୀକାର କରିଛନ୍ତି । "ଯାହା ଶାସ୍ତ୍ର ଜ୍ଞାନ ସିଦ୍ଧ ନୋହେ ତାହା ମୋ କଲମରୁ ବାହାରେ ନାହିଁ । ପୁରାଣ ଶାସ୍ତ୍ରରେ ବେଦବ୍ୟାସଙ୍କର ଅସଲ ମର୍ମ କେଉଁଠି ଖୋଜୁଥାଏ । ବାସ୍ତବରେ ପୁରାଣ ଆଖ୍ୟାନରେ ଟୀକା ବଡ଼ ଜଟିଳ । ଭାଗବତର ଅଧ୍ୟାତ୍ମ ଟୀକା ବାରମ୍ବାର ପଢ଼େ । ତାହାକୁ ଅବଲମ୍ବନ କରି ଲେଖିଛି 'କୃଷ୍ଣ ଚ଼ରିତ' । ତେଣୁ ଏହା ଏତେ ରୁଚିକର ।[୪]

ଏହି ନାଟକରେ ଚରିତ୍ର ଗୁଡ଼ିକ ଭିନ୍ନ ଦୃଷ୍ଟିକୋଣରୁ ଉପସ୍ଥାପିତ । ପ୍ରତ୍ୟେକ ଚରିତ୍ର ସ୍ୱତନ୍ତ୍ର ଆଦର୍ଶର ପ୍ରତୀକ ଭାବରେ ଉଭା ହୋଇଛନ୍ତି । ସ୍ଥୂଳ ବ୍ୟକ୍ତି ସତ୍ତା ତଳେ ଭାବସତ୍ତାଟିକୁ ନାଟ୍ୟକାର ଅଧିକ ଦେଖିଛନ୍ତି । ଇଂରାଜୀ ନୀତିବାଦୀ ନାଟକ (Morality Play) ସୁସ୍ପଷ୍ଟ ଧର୍ମ ଉଦ୍ଦେଶ୍ୟରେ ଲେଖା । ଏଥିରେ ବିଭିନ୍ନ ମାନସିକ ଭାବ ଓ ପ୍ରବୃତ୍ତି ଗୁଡ଼ିକ ଚରିତ୍ରାୟିତ । କୃଷ୍ଣ ଚ଼ରିତରେ ତାହାହିଁ ହୋଇଛି । ଏଥିରେ କୃଷ୍ଣ-ସଚ୍ଚିଦାନନ୍ଦ ବିଗ୍ରହ, କଂସ-ଭୋଗ ଅହଙ୍କାର, ନନ୍ଦ-ସଂସାର, ବସୁଦେବ-ବିବେକ, ବକାସୁର-ନିନ୍ଦୁକ, ଚ଼ାଣୁର-ଦମ୍ଭ, ବଳରାମ ଓ ଅନନ୍ତ- ଦିବ୍ୟଜ୍ଞାନ, ରଜକ ଓ ମାଳାକାର-ବିଳାସ ଲାଳସା, ସତ୍ୟାନନ୍ଦ- ସତ୍ୟାନୁରାଗ ରୂପେ ଉପସ୍ଥାପିତ । ଏଥିରେ ପାପ ଓ ଧର୍ମ ମଧ୍ୟ ଚରିତ୍ର ଭାବରେ ଗୃହୀତ ହୋଇଛନ୍ତି ।

ଭୋଗ ଓ ଅହଙ୍କାରରେ ବୁଡ଼ି ରହିଥିବା ପର୍ଯ୍ୟନ୍ତ ସଚ୍ଚିଦାନନ୍ଦ ବିଗ୍ରହଙ୍କର ଦର୍ଶନ ମିଳିପାରେ ନାହିଁ । କଂସର ଏ ଅହଙ୍କାରକୁ ଅଧିକ ପ୍ରଜ୍ୱଳିତ କରୁଥିଲେ ରଜକ-ମାଳାକାର ବିଳାସ ଲାଳସା ରୂପରେ । ଚ଼ାଣୁର, ମୁଷ୍ଟିକ ଓ ବକାସୁର ଆଦି ଅସୁର ବୃନ୍ଦ ମଧ୍ୟ ଏଥିରେ ଥିଲେ ସହାୟକ । ଏମାନଙ୍କ ପରାଜୟ ଓ ମୃତ୍ୟୁ ପରେ ଅହଙ୍କାରୀ କଂସ ହୃଦୟରେ ଦୁର୍ବଳତା ଆସିଛି । ପୁଣି ରଜକର ମୁକ୍ତି ଓ କୁବୁଜାର ଉଦ୍ଧାର ପରେ ତାର ବିଳାସ ଲାଳସାର ପରିସମାପ୍ତି ଘଟିଛି । ଶେଷରେ ସେ ଦର୍ଶନ ପାଇଛି ପରମ ବ୍ରହ୍ମଙ୍କର ।

୪. କୃଷ୍ଣପ୍ରସାଦ ବସୁ- ପଥଭ୍ରଷ୍ଟର ଜୀବନକଥା, ୧ମ ଭାଗ

କଂସକୁ ନାଟ୍ୟକାର କେବଳ ଅହଙ୍କାରୀ, ନିର୍ବୋଧ ଓ ନିଷ୍ଠୁର ଶାସକ ଭାବରେ ଦେଖି ନାହାନ୍ତି। ସେ ମଧ୍ୟ ଏକଦା ପ୍ରତିଭାଧର ଥିଲା। ବୁଦ୍ଧି ଓ ଜ୍ଞାନର ଉଜ୍ଜ୍ୱଳ ପରିଚ୍ଛଦ ପିନ୍ଧି ମଥୁରା ରାଜକୁମାର ଭାବରେ ସମସ୍ତଙ୍କର ଆଦରଣୀୟ ଥିଲା। ସେ ନ୍ୟାୟ, ସାଂଖ୍ୟ, ବେଦାନ୍ତାଦିର ଆଲୋଚନାରେ ପାରଙ୍ଗମ ଥିଲା। ମାତ୍ର ମଥୁରାର ରାଜମୁକୁଟ ପରିଧାନ ପରେ ଦମ୍ଭ, ଅଭିମାନ, ଅହଙ୍କାରରେ ମଦମତ୍ତ ହୋଇ ଉଠିବାରୁ ପ୍ରତିଭା କୋମଳ ହୃଦୟରେ ପରିବର୍ତ୍ତନ ଆସିଲା। ସେହିପରି କଂସ ହୃଦୟରୁ ମହତ୍ ଚିନ୍ତାର ସମ୍ପୂର୍ଣ୍ଣ ବିଲୋପ ଘଟିନଥିଲା। ନିଜ ଦରବାରରେ ସତ୍ୟାନନ୍ଦ ପରି ପଣ୍ଡିତ ବ୍ରାହ୍ମଣଙ୍କୁ ଉଚ୍ଚ ଆସନ ଦେଇ ତା'ସହିତ ଦର୍ଶନ ତତ୍ତ୍ୱର ନିଗୂଢ଼ ବିଷୟ ଆଲୋଚନାରେ ଏହା ସୂଚୀତ ହୋଇଛି।

ସତ୍ୟାନନ୍ଦ ଚରିତ୍ର ମାଧ୍ୟମରେ ଜଗତ ଜୀବନରେ ଯାହା କଲ୍ୟାଣକର ତାହା ବ୍ୟକ୍ତ କରାଯାଇଛି। କଂସର ମହିଷୀ ଅସ୍ତିଙ୍କ ଚରିତ୍ର 'କାରାମନ୍ଦିର'ର ସେହି ଚରିତ୍ରର ବୈଚିତ୍ର୍ୟହୀନ ପ୍ରଣୟନ ମାତ୍ର। ସେ ପତିବ୍ରତା ଓ କୃଷ୍ଣଗତ ପ୍ରାଣା। ପତିଙ୍କ ପାଇଁ ସେ କୃଷ୍ଣଙ୍କୁ ଛାଡି ପାରନ୍ତି। କଂସର ନିଧନ ପରେ ସେ ଆତ୍ମହତ୍ୟା କରିଛନ୍ତି। ଯଶୋଦା ପୁତ୍ର ଗର୍ବିଣୀ ଜନନଟିଏ। ଦେବକୀ ପାପର ଘନତମିସ୍ରା ମଧ୍ୟରେ ମୁକ୍ତିର ଶୁଭ୍ର ପ୍ରଭାତ ପାଇଁ ଅପେକ୍ଷମାଣା ନାରୀ ମୂର୍ତ୍ତିଟିଏ। ରାଧା-ହ୍ଲାଦିନୀ ଶକ୍ତିର ପ୍ରତୀକ। ସେ ଦିବ୍ୟ ପ୍ରେମର ଆରାଧିକା।

ଏହି ନାଟକରେ ରାଧାକୃଷ୍ଣ ପ୍ରେମଲୀଳାକୁ ଅଧ୍ୟାତ୍ମ ଦୃଷ୍ଟିକୋଣରୁ ବିଚାର କରାଯାଇଛି। ବିଦାୟ ବେଳେ କୃଷ୍ଣଙ୍କ ମାନବୀୟ ଦୁର୍ବଳତା ଆତ୍ମଜ୍ଞାନ ରୂପ ବଳରାମଙ୍କ ଚେତାବନୀରେ ବିଦୂରିତ ହୋଇଛି।

ଏହି ନାଟକର ସଂଳାପ ଅନେକ ସ୍ଥଳରେ ହୃଦୟସ୍ପର୍ଶୀ ହୋଇଛି। ଜନ୍ମ ସମୟରେ ନାଟ୍ୟକାରଙ୍କର ପ୍ରଥମ ପୁତ୍ରର ବିୟୋଗ ଖବର ଶୁଣିବା ବେଳେ ଯଶୋଦାଙ୍କର ସ୍ୱଗତୋକ୍ତି ଲିଖିତ ହୋଇଥିବାରୁ ତାହା ଏତେ କରୁଣ ହୋଇ ଉଠିଛି ବୋଲି କବି ତାଙ୍କ ଆତ୍ମଜୀବନୀର ପଞ୍ଚମ ଭାଗରେ ଲେଖିଛନ୍ତି।

'କୃଷ୍ଣ ଚ଼ରିତ'ରେ ପଚ଼ିଶ ଗୋଟି ସଙ୍ଗୀତ ଦିଆଯାଇଛି। ଓଡ଼ିଶାର କେତେକ ପ୍ରାଚୀନ ସଙ୍ଗୀତର ଉପସ୍ଥାପନା ଏ ନାଟକର ବିଶେଷତ୍ତ୍ୱ।

କବି ବୈଷ୍ଣବ ପାଣିଙ୍କର 'ରଙ୍ଗସଭା' ଓ ବସୁଙ୍କ କୃଷ୍ଣ ଚରିତ ଏକପ୍ରକାର ପୌରାଣିକ କାହାଣୀ ଆଶ୍ରୟରେ ଲେଖାଯାଇଛି। ପାଣି ଗୀତାଭିନୟ ଲେଖିବା ବେଳେ ବସୁ ଏକ ପୂର୍ଣ୍ଣାଙ୍ଗ ନାଟକ ଲେଖିଛନ୍ତି। ପାଣି ସୃଷ୍ଟି ଆନନ୍ଦଦାନ ପାଇଁ ଉଦ୍ଦିଷ୍ଟ ହୋଇଥିବା

ବେଳେ ବସୁଙ୍କ ନାଟକ ଦର୍ଶନର ନିଗୂଢ଼ ତତ୍ତ୍ୱକୁ ଅତି ସରଳ ଭାବରେ ପରିବେଷଣ କରିଛି। ଲୋକଶିକ୍ଷା ଏହାର ମୁଖ୍ୟ ଲକ୍ଷ୍ୟ ହୋଇଛି। 'ରଙ୍ଗସଭା' କ୍ଷୁଦ୍ର କଳେବର ବିଶିଷ୍ଟ। 'କୃଷ୍ଣ ଚରିତ' ବହୁ ଘଟଣା ଓ ଚରିତ୍ରର ଏକ ଚିତ୍ରଶାଳା। 'ରଙ୍ଗସଭା'ରେ ସାଙ୍ଗୀତିକ ସଂଳାପ ଥିବାବେଳେ 'କୃଷ୍ଣ ଚରିତ'ରେ ପରିଚ୍ଛନ୍ନ ଗଦ୍ୟ ସଂଳାପ ଦିଆଯାଇଛି। କଂସର ମୃତ୍ୟୁରେ ଉଗ୍ରସେନର ସଂଳାପ "ଗଲା, ଓଃ ଗଲା। ତେଜ ଅଭିମାନର ସେ ଦର୍ପିତ ପ୍ରଚଣ୍ଡ ପ୍ରଭାକର ଚାଲିଗଲା, ଅହଂକାରର ଗୋଟାଏ ଉନ୍ନତ ମୈନାକ - ସାମାନ୍ୟ କୁସୁମର ଆଘାତରେ ଧୂଳି ହୋଇଗଲା। ବିକ୍ରମର ମହାସିନ୍ଧୁ ଚାହୁଁ ଚାହୁଁ ଖଣ୍ଡେ ଶୋଳଦ୍ୱାରା ଶୁଷ୍କ ହୋଇଗଲା, ଭୋଜବଂଶ ଲୁପ୍ତ ହେଲା। ଦୟାମୟ ! କଣ କଲ ? ମୋର କଂସକୁ ନେଇଗଲ, ମୋର ଜୀବନ ତରୁର ସେହି କ୍ଷୀଣ ରଜ୍ଜୁଟିକୁ କାଟିଦେଲ। ମୁଁ ତୁମକୁ ପ୍ରାଣ ଦାନ କରିଥିଲି ପରା ?

**ହରି ଅନ୍ୱେଷଣ :**

ଆଠଗୋଟି ଦୃଶ୍ୟ ସମ୍ୱଳିତ ଏହା ଏକାଙ୍କ ନାଟକଟିଏ। ଭକ୍ତି ଏହାର ମୁଖ୍ୟ ରସ, ଏକାଗ୍ରତା ପ୍ରତ୍ୟେକ କର୍ମ ସାଧନର ମୂଳ କଥା। କାମନା ରହିତ ଅନ୍ତରର ଭକ୍ତି ନିବେଦିତ ହେଲେ ଈଶ୍ୱରଙ୍କ ଦର୍ଶନ ମିଳେ। ଚିନ୍ତା ତ୍ୟାଗ କଲେ ଚିନ୍ତାମଣି ମିଳନ୍ତି ଏହା ହିଁ ପ୍ରତିପାଦିତ ହୋଇଛି। ରାଧାଙ୍କ ପରି ସମସ୍ତ ପାରିବାରିକ ଆକର୍ଷଣ ତ୍ୟାଗ କରି ପରିପୂର୍ଣ୍ଣ ସମର୍ପଣର ପଥ ବାଛି ନେଲେ ପରମାତ୍ମାଙ୍କ ପରମ ପଦ ଲାଭ ହୁଏ। ଏହା ଦେଖାଇ ଦିଆଯାଇଛି ଏକ ବ୍ୟାଧ ଚରିତ୍ର ମାଧ୍ୟମରେ। ଜଣେ କ୍ଷୁଧାତୁର ବ୍ୟାଧ ବନ ମଧ୍ୟରେ ପକ୍ଷୀଟିଏ ମାରିବା ପାଇଁ ଏକାଗ୍ର ଚିତ୍ତରେ ଅତି ତନ୍ମୟ ଭାବରେ ନଳ ପରେ ନଳ ସଂଯୋଗ କରୁଛି। ମୁନି ଅଗସ୍ତି ତପସ୍ୟାରେ ସମାଧିସ୍ଥ। ବ୍ୟାଧ ଅଜାଣତରେ ମୁନିଙ୍କ ବକ୍ଷ ଉପରେ ଗୋଡ଼ ଦେଇ ଶିକାର କରୁଛି। ତାର ମୁଣ୍ଡ ଉପରେ ଏକ ଅଜଗର ସର୍ପ ଗ୍ରାସ କରିବାକୁ ଆସୁଛି। ଆଗରେ ପୁଣି ଏକ ମହାବଳ ବ୍ୟାଘ୍ର ଆକ୍ରୋମଣୋଦ୍ୟତ। ବ୍ୟାଧ ନିବିଡ଼ ଏକାଗ୍ରତା ଫଳରେ ଏସବୁକୁ ଦେଖିପାରି ନାହିଁ। ହଠାତ୍ ମୁନିଙ୍କର ଧ୍ୟାନ ଭଗ୍ନ ହେଲା। ଯେଉଁ ଏକାଗ୍ରତା ପାଇଁ ମୁନି ତପସ୍ୟାରତ ତାହା ଯେ ବ୍ୟାଧର ଆୟତ୍ତ। ମୁନି କପଟ କ୍ରୋଧ ପ୍ରକାଶ କରି ବ୍ୟାଧକୁ ବୃନ୍ଦାବନରୁ ରାଧାକୃଷ୍ଣଙ୍କୁ ଆଣିବା ପାଇଁ ନିର୍ଦ୍ଦେଶ ଦେଇଛନ୍ତି। ବିଫଳ ହେଲେ ଅଭିଶାପର ଦଣ୍ଡ।

ବ୍ୟାଧ ଚିନ୍ତାମଣିଙ୍କ ଅନ୍ୱେଷଣରେ ଯମୁନାତୀର ବନରେ ବୁଲିଛି। ଅନେକ ପରୀକ୍ଷା ପରେ ରାଧାକୃଷ୍ଣଙ୍କ ଦର୍ଶନ ପାଇଛି। ଦୃଢ଼ ବନ୍ଧନରେ ଆବଦ୍ଧ କରି ମୁନିଙ୍କ ନିକଟକୁ ନେଇ ଆସିଛି। ଏହା ହିଁ ହରି ଅନ୍ୱେଷଣର ବିଷୟ ଭାଗ।

ନାଟକର ରଚନା କାଳ ୧୯୪୩ ମସିହା। ବଲାଙ୍ଗୀରରେ ସଙ୍ଗୀତ ଶିକ୍ଷକ ଭାବେ କାର୍ଯ୍ୟ କଲା ବେଳେ 'ଦକ୍ଷଯଜ୍ଞ' ଓ 'ହରି ଅନ୍ୱେଷଣ' ରଚନା କରାଯାଇଥିଲା। ମହାରାଜା ଶ୍ରୀ ରାଜେନ୍ଦ୍ର ନାରାୟଣ ସିଂହ ଦେଓଙ୍କ ଶ୍ରାବଣାଭିଷେକ ଉପଲକ୍ଷେ ୧୯୪୩ ଅଗଷ୍ଟ ୧୫ ତାରିଖରେ ଶୈଳଶ୍ରୀ ପ୍ରାସାଦରେ ଏହା ଅଭିନୀତ ହୋଇଥିଲା। ଏଥିରେ ବଲାଙ୍ଗୀର ବିଦ୍ୟାଳୟ ସମୂହର ବାଳିକାମାନେ ଅଂଶ ଗ୍ରହଣ କରିଥିଲେ। ସଙ୍ଗୀତ ନୃତ୍ୟ, ବାଦ୍ୟଯନ୍ତ୍ର ସବୁ ପରିଚାଳନା କରିଥିଲେ ବାଳିକାମାନେ। ବୃକ୍ଷଲତା ସାହାଯ୍ୟରେ ରଙ୍ଗମଞ୍ଚରେ ବନର ଦୃଶ୍ୟ ସୃଷ୍ଟି କରାଯାଇଥିଲା।[୫] ଏହି ଅଭିନୟର ସଫଳତା ପାଇଁ ଗଡ଼ଜାତ ରାଜନ୍ୟ ସମ୍ମେଳନ ନାଟ୍ୟକାରଙ୍କୁ ୮ହଜାର ଟଙ୍କା ଓ ବହୁମୂଲ୍ୟ ପରିଚ୍ଛଦରେ ପୁରସ୍କୃତ କରିଥିଲେ।[୬]

**ସୀତା ବନବାସ :**

ରାମାୟଣ କାହାଣୀ ଅବଲମ୍ବନରେ ରଚିତ 'ସୀତା ବନବାସ' କୃଷ୍ଣପ୍ରସାଦଙ୍କର ଏକ ଗୀତାଭିନୟ। ଲଙ୍କାରୁ ପ୍ରତ୍ୟାବର୍ତ୍ତନ ପରେ ସୀତାଙ୍କର ପାତାଳ ପ୍ରବେଶ ପର୍ଯ୍ୟନ୍ତ କଥାବସ୍ତୁ ଏଥିରେ ଗର୍ଭୀଭୂତ। ସୀତାଙ୍କ ବନବାସ, ବାଲ୍ମିକ ଆଶ୍ରମରେ ଲବକୁଶଙ୍କ ଜନ୍ମ, ଅଯୋଧ୍ୟାରେ ରାଜସୂୟ ଯଜ୍ଞର ଆୟୋଜନ ଠାରୁ ସୀତାଙ୍କ ପାତାଳ ପ୍ରବେଶ ପର୍ଯ୍ୟନ୍ତ କଥାବସ୍ତୁ ରାମାୟଣର ଅନୁରୂପ।

ଗୀତାଭିନୟଟି ୩ ଅଙ୍କରେ ବିଭକ୍ତ। ସମୁଦାୟ ଦୃଶ୍ୟ ସଂଖ୍ୟା କୋଡ଼ିଏ। ଏଥିରେ ସର୍ବମୋଟ ଚବିଶଟି ସଙ୍ଗୀତ ସନ୍ନିବେଶିତ। ସଙ୍ଗୀତର ଆଧିକ୍ୟ ସତ୍ତ୍ୱେ ମଧ ଗଦ୍ୟ ସଂଳାପ ଉପରେ ଗୁରୁତ୍ୱ ଆରୋପିତ ହୋଇଛି। ଭାବ ଦୃଷ୍ଟିରୁ ସଙ୍ଗୀତ ଗୁଡ଼ିକ ଯେପରି କାଳୋଚିତ ଭାଷା ଦୃଷ୍ଟିରୁ ସଂଳାପ ମଧ ପାତ୍ରୋଚିତ ହୋଇଛି।

କେତେକ ସ୍ଥଳରେ ସଂଳାପ ଅଯଥା ଦର୍ଶନ ତତ୍ତ୍ୱରେ ଭାରାକ୍ରାନ୍ତ ହୋଇ ଉଠିଛି। ନାଟକ ଆରମ୍ଭରେ ଦୁର୍ମୁଖଙ୍କ ସହିତ ଲକ୍ଷ୍ମଣଙ୍କ କଥୋପକଥନ ଅନାବଶ୍ୟକ ମନେ ହୁଏ। ଲକ୍ଷ୍ମଣ କହୁଛନ୍ତି 'କଳାବିଦ୍ୟାର ଓ କବିତାର ପ୍ରତି ଭକ୍ତ ହିଁ ଯୋଗ ମାର୍ଗର ସିଦ୍ଧ ସାଧକ, ହୃଦୟ ଗ୍ରନ୍ଥର ପ୍ରତି ଧାଡ଼ିଟିକୁ ପଢି ନପାରିଲେ କଳାବନ୍ତ ହେବାର ଆଶା ବିଡ଼ମ୍ବନା ନୁହେଁକି।[୭]

ମୁଖ୍ୟ କଥାବସ୍ତୁ ସହିତ କେତେକ ଗୌଣ କଥାବସ୍ତୁର ସଂଯୋଜନା କରାଯାଇଛି। ସର୍ବାର୍ଥସିଦ୍ଧି ବ୍ରାହ୍ମଣ ଓ କୁକୁର ରୂପରେ ଧର୍ମଙ୍କ ପ୍ରବେଶ ଓ ରାମଚନ୍ଦ୍ରଙ୍କୁ ପରୀକ୍ଷା, ବଶିଷ୍ଠ

୫. ଭାନୁମତୀ ଦାସଙ୍କ ପତ୍ରରୁ ଗୃହୀତ
୬. କୃଷ୍ଣପ୍ରସାଦ ବସୁ– ପଥଭ୍ରଷ୍ଟର ଜୀବନ କଥା, ୧ମ ଭାଗ
୭. ଏଜନ– ସୀତା ବନବାସ, ପ୍ରଥମ ଅଙ୍କ / ୧ମ ଦୃଶ୍ୟ

ଆଶ୍ରମରେ କୌଶଲ୍ୟାଙ୍କର ଜୀବନ ଯାପନର ଦୃଶ୍ୟ ଓ ଅଯୋଧାରେ ବ୍ରାହ୍ମଣ ପୁତ୍ରର ହତ୍ୟା ଆଦି ଗୌଣ କଥାବସ୍ତୁ ମୁଖ୍ୟ କଥାବସ୍ତୁ ସହିତ ଦୃଢଭାବରେ ସଂଯୁକ୍ତ।

କବି ବୈଷ୍ଣବ ପାଣି 'ସୀତା ବନବାସ' ଓ 'ଅଶ୍ୱମେଧ ଯଜ୍ଞ' ନାମରେ ଏକ ଗୀତାଭିନୟ ରଚନା କରିଛନ୍ତି। ସେ ଅନେକ ସ୍ଥଳରେ ସଂସ୍କୃତ ରାମାୟଣ ଛାଡ଼ି ବଙ୍ଗଳା କୃତ୍ତିବାସ ରାମାୟଣରୁ ବିଷୟ ଆହରଣ କରିଛନ୍ତି। ବସୁ କିନ୍ତୁ ସଂସ୍କୃତ ରାମାୟଣର ପଥରେ ଗତି କରିଛନ୍ତି। ନାଟକର ମୁଖ୍ୟରସ କରୁଣ ହେଲେ ମଧ ଲବକୁଶଙ୍କର ଯୁଦ୍ଧ ବେଳେ ବୀର ରସ, ଆଶ୍ରମ ଜୀବନର ବର୍ଣ୍ଣନା ବେଳେ ଶାନ୍ତ ରସର ବର୍ଣ୍ଣନା ରହିଛି।

କବି ଗଙ୍ଗାଧରଙ୍କ ତପସ୍ୱିନୀ କାବ୍ୟରେ ପ୍ରକୃତିକୁ ଯେଭଳି ଚରିତ୍ର ଭାବରେ ଗ୍ରହଣ କରାଯାଇଛି, ବସୁ ମହୋଦୟ ସେହିପରି ଗୋଦାବରୀ ଓ ଗଙ୍ଗାଙ୍କୁ ସୀତାଙ୍କ ନିକଟରେ ପହଞ୍ଚାଇ ତାଙ୍କର ଦୁଃଖ ଉପଶମନ ପାଇଁ ଚେଷ୍ଟା କରିଛନ୍ତି।

ଦୁଃଖ ଯନ୍ତ୍ରଣା ଦଗ୍ଧ ସୀତାଙ୍କ ଜୀବନ ଯାତ୍ରା ଭିତରେ ପତିଭକ୍ତିର ବିମଳ ମନ୍ଦାକିନୀର ପ୍ରବାହ ସମଗ୍ର ନାଟକଟିକୁ ଉଚ୍ଚତମ ସୋପାନକୁ ଉନ୍ନୀତ କରିଛି। ଏକ ଦିଗରେ ଅଯୋଧାର ନରପତି ଭାବରେ ନିଜର କର୍ତ୍ତବ୍ୟ ଅନ୍ୟ ଦିଗରେ ସୀତାପତି ଭାବରେ ପତ୍ନୀ ପ୍ରୀତି ଏ ଉଭୟ ଆଦର୍ଶର ପାଳନରେ ରାମ ଚରିତ୍ରର ସାଫଲ୍ୟ ଦେଖାଇବାରେ ନାଟ୍ୟକାର ବ୍ୟର୍ଥ ହୋଇନାହାନ୍ତି।

ହନୁମାନର ଦାସ୍ୟଭକ୍ତି, ଲକ୍ଷ୍ମଣଙ୍କର ଭ୍ରାତୃପ୍ରେମ ଆଦି ପରିବେଷଣ କରିବାରେ 'ସୀତା ବନବାସ' ନାଟ୍ୟକାରଙ୍କର ଏକ ସଫଳ ସୃଷ୍ଟି ବୋଲିବାକୁ ହେବ।

**ହରିଶ୍ଚନ୍ଦ୍ର**

ହରିଶ୍ଚନ୍ଦ୍ରଙ୍କ ଚରିତ୍ରକୁ ନେଇ ଭାରତୀୟ ପୁରାଣମାନଙ୍କରେ କାହାଣୀର ବିଚିତ୍ର ବିନ୍ୟାସ ପରିଲକ୍ଷିତ ହୁଏ। ବସୁ ମହୋଦୟଙ୍କ ହରିଶ୍ଚନ୍ଦ୍ର ନାଟକଟି ୩ଟି ଅଙ୍କରେ ବିଭକ୍ତ। ଏଥିରେ ଚଉଦ ଗୋଟି ଦୃଶ୍ୟ ରହିଛି। ସମୁଦାୟ ସତର ଗୋଟି ସଙ୍ଗୀତର ସଂଯୋଜନା କରାଯାଇଛି। ଚରିତ୍ର ଚିତ୍ରଣ ସଂଳାପ ସଂଯୋଜନା ଓ ବିଷୟ ପରିବେଷଣରେ ମୌଳିକତା ହରିଶ୍ଚନ୍ଦ୍ର ନାଟକର ସଫଳତାର ହେତୁ ବୋଲି ବିଚାର କରିବାକୁ ହେବ।

ବଶିଷ୍ଠ ଓ ବିଶ୍ୱାମିତ୍ରଙ୍କ କଳହରୁ ନାଟକର ଆରମ୍ଭ। ବିଶ୍ୱାମିତ୍ରଙ୍କ ଯଜ୍ଞକୁ ଚଣ୍ଡାଳର ଯଜ୍ଞ ବୋଲି କହି ବଶିଷ୍ଠ ସେଥିରେ ଯୋଗ ନଦେବାରୁ ବିଶ୍ୱାମିତ୍ର କ୍ରୋଧାନ୍ୱିତ ହୋଇ ଏକ ସ୍ୱତନ୍ତ୍ର ଜଗତ ସୃଷ୍ଟି କରିବାକୁ ଧାନମଗ୍ନ ହୋଇଛନ୍ତି। ତାଙ୍କର ଧାନଭଗ୍ନ

କରିବା ପାଇଁ ମାୟାକାମିନୀ ଗଣ ଉପସ୍ଥିତ ହୋଇଛନ୍ତି । ସେମାନେ ବିଶ୍ୱାମିତ୍ରଙ୍କ ଦ୍ୱାରା ଧୃତ ହୋଇ କପଟକ୍ରନ୍ଦନ କରୁଛନ୍ତି । ମୃଗୟାବିହାରୀ ହରିଶ୍ଚନ୍ଦ୍ର ସେମାନଙ୍କ କପଟ କ୍ରନ୍ଦନ ଶୁଣି ବନ୍ଧନ ମୋଚନ କରିଛନ୍ତି । ଏଥିରେ ବିଶ୍ୱାମିତ୍ର କୋପାନ୍ୱିତ ହେବାରୁ ରାଜା ତାଙ୍କୁ ସମଗ୍ର ରାଜ୍ୟ ପ୍ରଦାନ କରି ଶାନ୍ତ କରିବାକୁ ଚେଷ୍ଟା କରିଛନ୍ତି । ଏକଥାକୁ କବି ନିଜର ସ୍ୱଭାବ ସୁନ୍ଦର ସଙ୍ଗୀତରେ ପ୍ରକାଶ କରିଛନ୍ତି ।

"ବ୍ରହ୍ମା ସର୍ଜନାରେ ଦର୍ପ ଦଳିବାକୁ ନବୀନ ବ୍ରହ୍ମାଣ୍ଡ କଳ୍ପନା
କରି କୌଶିକେୟ ବନ୍ଧନେ ଭିଡ଼ିଲେ ରୂପରସ ଗନ୍ଧ ବାସନା
ମାୟା କାମିନୀ - କପଟେ କରିଲେ କ୍ରନ୍ଦନ ।
ଶୁଣି ସେ ଧ୍ୱନିକି ସତ୍ୟ ଅବତାର କରିଲେ ବନ୍ଧନ ମୋଚନ ।
ବାରଦ ଗାଦିରେ ବାଜିଲେ ତଡ଼ିତ ଯଥା ହୁଅଇ ଭୟଙ୍କର,
କ୍ରୋଧେ ଜର ଜର ଉଗ୍ରଜତିବର, ବୋଇଲେ କି କଲୁ ପାମର,
ଆରେ ଦର୍ପିତ କାଳବ୍ୟାଳ ପୁଚ୍ଛେ ଆଘାତ,
ଆବାଲ୍ୟ ସାଧନା ଆଶା ପାଦପକୁ ପଲକେ କରିଲୁ ଆହତ ।"

ଅଯୋଧ୍ୟାର ସିଂହାସନ ଓ ଶାସନ ବିଶ୍ୱାମିତ୍ରଙ୍କୁ ଅର୍ପଣ କରି ଦାନ ପାଇଁ ଅର୍ଥ ସଂଗ୍ରହ ପାଇଁ ହରିଶ୍ଚନ୍ଦ୍ର ନିଜ ପତ୍ନୀ ଶୈବ୍ୟା ଓ ପୁତ୍ର ରୋହିତାଶ୍ୱ ସହିତ କାଶୀ ଯାତ୍ରା କରିଛନ୍ତି ।

କାଶୀରେ ଦାନ ସଂଗ୍ରହ, ଶୈବ୍ୟା, ହରିଶ୍ଚନ୍ଦ୍ରଙ୍କର କରୁଣ ଜୀବନଯାପନ, ସର୍ପାଘାତରେ ରୋହିତାଶ୍ୱର ମୃତ୍ୟୁ ଆଦି ଘଟଣା ପୁରାଣ କାହାଣୀର ଅନୁରୂପ । ମାତ୍ର ଶୈବ୍ୟାଙ୍କ ଶ୍ମଶାନରେ ରୋହିତାଶ୍ୱ ସହିତ ପ୍ରବେଶ ଓ ଅନ୍ୟାନ୍ୟ ଘଟଣାରେ କେତେକ ମୌଳିକ ସଂଯୋଗ ଦେଖିବାକୁ ମିଳେ । ଶବଦାହର ଦେୟ ଦେଇ ନପାରି ଶୈବ୍ୟା ବ୍ରାହ୍ମଣ ଘରକୁ ଫେରିବା ବାଟରେ ବିଶ୍ୱାମିତ୍ରଙ୍କର କପଟତାର ଶୀକାର ହୋଇଛନ୍ତି । ସେ ରାଜ୍ୟର ଯୁବରାଜଙ୍କୁ ବିଶ୍ୱାମିତ୍ରଙ୍କ ସୃଷ୍ଟ ରାକ୍ଷସ 'ପ୍ରଚଣ୍ଡ' ହତ୍ୟା କରିଛି । ପଥ ମଧ୍ୟରେ ପୁତ୍ର ଶୋକ ବିହ୍ୱଳା ଶୈବ୍ୟାଙ୍କ ବସନକୁ ରକ୍ତ ରଂଜିତ କରି ପଣତରେ କିଛି ଅଳଙ୍କାର ବାନ୍ଧି ଦିଆଯାଇଛି । ହତ୍ୟା ଅଭିଯୋଗରେ ଶୈବ୍ୟା ଅଭିଯୁକ୍ତା ହୋଇ ପ୍ରାଣ ଦଣ୍ଡ ପାଇଛନ୍ତି । ଶ୍ମଶାନ ରକ୍ଷକ ହରିଶ୍ଚନ୍ଦ୍ରଙ୍କୁ ନିର୍ଦ୍ଦେଶ ଦିଆଯାଇଛି ଶୈବ୍ୟାଙ୍କ ମୁଣ୍ଡ କାଟ କରିବା ପାଇଁ । ହରିଶ୍ଚନ୍ଦ୍ର ନିର୍ବିକାର ଭାବରେ ଘାତକର କର୍ତ୍ତବ୍ୟ ପାଳନ କଲାବେଳେ ବିଶ୍ୱାମିତ୍ର ଉପସ୍ଥିତ ହୋଇ ଛଳନାର ଇନ୍ଦ୍ରଜାଲ ଅପସାରଣ କରିଛନ୍ତି । ପୁତ୍ରକୁ ଜୀବନ ଦାନ କରି ପତିପତ୍ନୀଙ୍କର ମିଳନ ଘଟାଇଛନ୍ତି ।

ନାଟକର ରଚନା କାଳ ୧୯୨୭ ମସିହା। ୧୯୨୯ ଓ ୧୯୪୨ରେ ଏହା ସଂଶୋଧିତ ହୋଇଥିବା କଥା ନାଟକ ପାଣ୍ଡୁଲିପିରୁ ଜଣାଯାଏ। ୧୪ଗୋଟି ଦୃଶ୍ୟ ସମ୍ବଳିତ ତିନି ଅଙ୍କରେ ଏହାର ପରିକଳ୍ପନା। ଏଥିରେ ସମୁଦାୟ ୧୩ ଗୋଟି ସଙ୍ଗୀତ ସନ୍ନିବେଶିତ ହୋଇଛି। ସମାନ କଥାବସ୍ତୁକୁ ନେଇ ଗଣକବି ବୈଷ୍ଣବ ପାଣି 'ହରିଶ୍ଚନ୍ଦ୍ର' ଗୀତିନାଟ୍ୟ ଓ ବାଳକୃଷ୍ଣ ମହାନ୍ତି 'ଦାନବୀର ହରିଶ୍ଚନ୍ଦ୍ର' ଗୀତାଭିନୟ ରଚନା କରିଛନ୍ତି। ଗଣକବିଙ୍କ 'ହରିଶ୍ଚନ୍ଦ୍ର'ରେ ସଙ୍ଗୀତ ଉପରେ ଗୁରୁତ୍ୱ ଥିବା ବେଳେ ବାଳକୃଷ୍ଣ ଓ ବସୁଙ୍କ ନାଟକରେ ଗଦ୍ୟ ସଂଳାପର ଆଧିକ୍ୟ ଦେଖାଯାଏ। ବସୁଙ୍କ ଗଦ୍ୟଭାଷାର ବଳିଷ୍ଠତା ମହାନ୍ତିଙ୍କଠାରେ ଦେଖାଯାଏନା। ଅଧିକାଂଶ ସ୍ଥଳରେ ବସୁଙ୍କ ନାଟକରେ ଅମିତ୍ରାକ୍ଷର ଛନ୍ଦର ପ୍ରୟୋଗ ହୋଇଥିବାର ଦେଖାଯାଏ।

ବଶିଷ୍ଠଙ୍କ ଉପରେ କ୍ରୋଧାନ୍ୱିତ ବିଶ୍ୱାମିତ୍ରଙ୍କର ସଂଳାପଟି ଅମିତ୍ରାକ୍ଷର ଛନ୍ଦରେ ଏହିପରି-"ତୁଚ୍ଛ କରି ରାଜତ୍ୱ ସଂପଦ, ତୁଚ୍ଛ କରି କ୍ଷତ୍ରୀୟତ୍ୱ ପଣ, ତୁଚ୍ଛ କରି ବାସବ ବିଭୂତି, ହୋଇଛି ତପସ୍ୟାରତ, ଦେଖାଇବି ତପସ୍ୟାର ସର୍ବୋତ୍ତମ ଫଳ। ସତ୍ତ୍ୱ-ରଜ-ତମ ତିନିଗୁଣେ ସୃଷ୍ଟି ସ୍ଥିତି ଲୟ XXX ଏକାକିତା ବିଶ୍ୱାମିତ୍ର କରିବ ଧାରଣ। ନିଶ୍ଚଳ, ନିସ୍ପନ୍ଦ ହୁଅ ଧରା, ଗତୀହୀନ ହୁଅ ସମୀରଣ।"

ବାଳକୃଷ୍ଣ ସଂସ୍କୃତ ନାଟକ ପ୍ରଭାବରେ ନିଜ ନାଟକ ଆରମ୍ଭରେ ପ୍ରସ୍ତାବନାର ସଂଯୋଗ ଓ ରାମଶଙ୍କରଙ୍କର ପ୍ରଭାବରେ ଅଙ୍କ ଗୁଡ଼ିକୁ ଅଭିନୟ ନାମରେ ନାମିତ କରିଛନ୍ତି। ଧର୍ମ ଓ ବିଶ୍ୱାମିତ୍ରଙ୍କ କଳି ଉପରେ ଗୁରୁତ୍ୱ ଆରୋପ କରି ଧର୍ମର ଜୟ ପାଇଁ ହରିଶ୍ଚନ୍ଦ୍ର ଓ ଶୈବ୍ୟା ବାଳକୃଷ୍ଣଙ୍କ ଗୀତାଭିନୟରେ ମାଧ୍ୟମ ଭାବରେ ଗୃହୀତ ହୋଇଥିବା ବେଳେ କୃଷ୍ଣପ୍ରସାଦ କିନ୍ତୁ ଶୈବ୍ୟା ଓ ହରିଶ୍ଚନ୍ଦ୍ର ଚରିତ୍ର ମଧ୍ୟ ଦେଇ ଭାରତୀୟ ସଂସ୍କୃତିରେ ତ୍ୟାଗର ମହାତ୍ମ୍ୟ ପ୍ରତିପାଦନ ପାଇଁ ବିଶ୍ୱାମିତ୍ରଙ୍କୁ ମାଧ୍ୟମ ଭାବରେ ଗ୍ରହଣ କରିଛନ୍ତି। ବସୁଙ୍କ 'ହରିଶ୍ଚନ୍ଦ୍ର' ଅପୂର୍ବ ବିରୋଧାଭାସର ଅଭିବ୍ୟକ୍ତି। ତ୍ୟାଗ ଓ ଭୋଗର ତୁଳନାତ୍ମକ ବିଚାର ସଙ୍ଗେ ଭୋଗ ଉପରେ ତ୍ୟାଗର ମହିମା ପ୍ରତିଷ୍ଠା ନାଟକର ମୁଖ୍ୟ ବିଷୟ। ବିଶ୍ୱାମିତ୍ର ତପସ୍ୱୀ, ତରୁତଳବାସୀ । ଘଟଣା ଚକ୍ରରେ ସେ ହେଉଛନ୍ତି ରାଜ ଚକ୍ରବର୍ତ୍ତୀ। ହରିଶ୍ଚନ୍ଦ୍ର ରାଜା, ଭୋଗ ବିଳାସର ପ୍ରତୀକ; ସେ ହସି ହସି ଚାଲି ଯାଉଛନ୍ତି ସମସ୍ତ ରାଜ୍ୟ ଓ ଅଭିମାନ ତ୍ୟାଗ କରି। ଜଣେ ସଂସାର ବନ୍ଧନମୁକ୍ତ, ବିଷୟ ବେଢ଼ି ଛିଣ୍ଡାଇ ଦେଇ ସ୍ୱଚ୍ଛନ୍ଦ ମନରେ ସ୍ୱାଧୀନ ପ୍ରାଣରେ ଚାଲିଗଲା ବେଳେ ଆଉଜଣେ ସ୍ୱଇଚ୍ଛାରେ ନିଜର ସ୍ୱାଚ୍ଛନ୍ଦ୍ୟ ସ୍ୱାଧୀନତା ଅଗାଧ ପୁଣ୍ୟଫଳକୁ ଅତଳ ଜଳରେ ଫିଙ୍ଗି ଦେଇ କାରାଗୃହରେ ବନ୍ଦି ହେବାକୁ ଆସୁଛି। ଗୃହସ୍ଥର ତ୍ୟାଗ ନିକଟରେ ସନ୍ନ୍ୟାସୀର ଅହଙ୍କାର ପରାଜିତ ହୋଇଛି। ତ୍ୟାଗର ମହତ୍ତ୍ୱ ପ୍ରକଟିତ ହୋଇଛି।

ନାଟକରେ କରୁଣ ରସ ଉପରେ ଗୁରୁତ୍ୱ ଦିଆଯାଇଛି । ହାସ୍ୟରସ ସୃଷ୍ଟି ପାଇଁ ନାଟକରେ କେତେଗୁଡ଼ିଏ 'ଫାର୍ଶ' ଦିଆଯାଇଛି । ଦୁଃଖିଆ-ଶୁଖିଆ, ପଣ୍ଡା ଓ କୈବର୍ତ୍ତ ଆଦି ଚରିତ୍ର ସୃଷ୍ଟିରେ ସମାଜର ନିମ୍ନଜନଙ୍କ ପ୍ରତି ନାଟ୍ୟକାରଙ୍କ ମମତାବୋଧର ପରିଚୟ ମିଳେ ।

**ଗୟାସୁର ବଧ :**

ଦୁଇଟି କାହାଣୀର ସଯତ୍ନ ଗୁମ୍ଫନରେ "ଗୟାସୁର ବଧ" ନାଟକର ସୃଷ୍ଟି। ପ୍ରଥମଟି ତ୍ରିପୁରାସୁର ବଧ ଦ୍ୱିତୀୟଟି ଗୟାସୁରର ନିଧନ । ଦ୍ୱିତୀୟଟି ପ୍ରଥମଟିର ପରିଣତି ।

ସମୁଦ୍ର ମନ୍ଥନ କାଳରୁ ଦେବତା ଓ ଦାନବଙ୍କ ମଧ୍ୟରେ ସୃଷ୍ଟି ହୋଇଥିବା ଶତ୍ରୁତା ସେମାନଙ୍କୁ ବିଭିନ୍ନ ସଂଗ୍ରାମରେ ପ୍ରବୃତ୍ତ କରାଇଛି । ତ୍ରିପୁରାସୁରର ସ୍ୱର୍ଗ ପ୍ରବେଶ ଓ ଇନ୍ଦ୍ରପଦ ଲାଭ ପାଇଁ ସଂଗ୍ରାମ, ଯୁଦ୍ଧରେ ଚକ୍ରଧାରୀ ନାରାୟଣଙ୍କ ପରାଭବ ପରେ, ମହାଦେବଙ୍କ ଯୁଦ୍ଧ କ୍ଷେତ୍ରରେ ତ୍ରିପୁରାସୁର ନିଧନ କାହାଣୀର ପ୍ରଥମ ଭାଗର ବିଷୟବସ୍ତୁ ।

ତ୍ରିପୁରା ବଧ ପରେ ତାର ପୁତ୍ର ଗୟାସୁର ନାରଦଙ୍କ ସହାୟତାରେ ନାରାୟଣଙ୍କ ପରମଭକ୍ତ ହୋଇ ପାରିଛନ୍ତି । ପିତୃହତ୍ୟାର ପ୍ରତିଶୋଧ ପାଇଁ ଗୟାସୁର ସ୍ୱର୍ଗ ଆକ୍ରମଣ କରିଛି । ଇନ୍ଦ୍ରଙ୍କୁ ପରାସ୍ତ କରି ସିଂହାସନ ଅଧିକାର କରିଛି । ଦେବ ମଣ୍ଡଳୀଙ୍କୁ ରକ୍ଷା କରିବା ପାଇଁ ଇନ୍ଦ୍ରଙ୍କୁ ସ୍ୱପଦରେ ପ୍ରତିଷ୍ଠା କରିବା ପାଇଁ ବରଦାୟୀ ନାରାୟଣ ନିଜର ପରମ ଭକ୍ତ ଗୟାସୁରର ଜୀବନ ଭିକ୍ଷା କରିଛନ୍ତି । ଗୟା ଅକାତରେ ଜୀବନ ଦାନ କରି ମୁକ୍ତି ଲାଭ କରିଛି । ତାଙ୍କ ନାମାନୁସାରେ ଗୟା ମହାତୀର୍ଥରେ ପରିଣତ ହୋଇଛି ।

କପିଳ ସଂହିତା ଓ ବ୍ରହ୍ମପୁରାଣ ଆଦିରେ ଥିବା କାହାଣୀକୁ ନାଟ୍ୟରୂପ ଦିଆଯାଇଛି । ଏଥିରେ ନାଟ୍ୟକାର ବହୁ ଉପକାହାଣୀର ସଂଯୋଜନା କରିଛନ୍ତି । ପିତୃଗଣଙ୍କ ପିଣ୍ଡଦାନ ଗୟାତୀର୍ଥର ମହାତ୍ମ୍ୟ ହେତୁ ନାଟକର ଆରମ୍ଭରେ ନାଟ୍ୟକାର ଜଣେ ପ୍ରେତ ବ୍ରାହ୍ମଣ ଓ ବ୍ରାହ୍ମଣୀ ଚରିତ୍ରର ପରିକଳ୍ପନା କରିଛନ୍ତି । ଗୟାସୁରର ମୃତ୍ୟୁ ପୂର୍ବରୁ ପ୍ରେତମାନଙ୍କର ମୁକ୍ତି ପଥ ନଥିଲା । ପ୍ରେତ ବାହ୍ମଣ ବ୍ରାହ୍ମଣୀ ମୁକ୍ତି ନପାଇ ଦାରୁଣ ଯନ୍ତଣା ମଧ୍ୟରେ କାଳ କାଟୁଥିଲେ । ନାରଦ ମହର୍ଷି ଏମାନଙ୍କ ଦୁଃଖ ନିବାରଣର ଉପାୟ ପରିକଳ୍ପନା କଲେ । ବିଷ୍ଣୁ ଅଂଶରେ ଗୟାସୁର ଜନ୍ମ ନେଲେ । ଶେଷରେ ତାଙ୍କର ଦେହ ତ୍ୟାଗ ପରେ ନାରାୟଣଙ୍କ ବରରେ ଗୟାତୀର୍ଥର ସୃଷ୍ଟି ହେଲା । ଏହି ତୀର୍ଥ ହେଲା ପିତୃପୁରୁଷଙ୍କ ପିଣ୍ଡଦାନର ମହାନ ସ୍ଥଳ ଓ ପ୍ରେତ ମୁକ୍ତିର ପବିତ୍ର ପୀଠ । କାହାଣୀକୁ ଦର୍ଶକମାନଙ୍କର ବିଶ୍ୱାସଯୋଗ୍ୟ କରିବା ପାଇଁ ନାଟକ ଆରମ୍ଭରୁ ପ୍ରେତର ଅବତାରଣା କରାଯାଇଛି ।

ନାଟ୍ୟକାର କୃଷ୍ଣପ୍ରସାଦଙ୍କ ନିଜ ଗ୍ରାମରେ ବିରଜା ଦେବୀଙ୍କ କ୍ଷେତ୍ର ପରିସରରେ ନାଭି ଗୟା ତୀର୍ଥ ଅବସ୍ଥିତ। ନିଜର ଯାତ୍ରାଦଳକୁ ସେ ବିରଜା ଅପେରା ନାମରେ ନାମିତ କରିଥିଲେ। ଏହି ନାଟକ ବିରଜା ଅପେରାର ଅନ୍ୟତମ ଜନପ୍ରିୟ ନାଟକ। ତେଣୁ ନାଟ୍ୟ କାହାଣୀକୁ ସେ ଯାଜପୁରର ଅଧିଷ୍ଠାତ୍ରୀ ଦେବୀ ବିରଜାଙ୍କ ପୀଠ ସହିତ ସମ୍ପୃକ୍ତ କରିବାର ଇଚ୍ଛା ନେଇ କାହାଣୀଟିକୁ ପୁରାଣରୁ ସତର୍କତାର ସହିତ ଚୟନ କରିଛନ୍ତି।

ନାଟକଟି ପାଞ୍ଚ ଅଙ୍କରେ ବିଭକ୍ତ। ସମୁଦାୟ ୨୦ଟି ଦୃଶ୍ୟରେ ଏହାର ପରିକଳ୍ପନା। ଓଡ଼ିଶାର ପ୍ରାଚୀନ ରାଗର ପ୍ରୟୋଗ ସହିତ ତେଲଙ୍ଗୀ ସ୍ୱରର ପ୍ରୟୋଗ ହୋଇ ୨୦ଟି ସଙ୍ଗୀତ ଦିଆଯାଇଛି। ନିୟତି କଣ୍ଠରେ ୫ଟି ସଙ୍ଗୀତ ବ୍ୟତୀତ ଅନ୍ୟ ଗୁଡିକ ଚରିତ୍ରମାନଙ୍କ ମୁଖରେ ଦିଆଯାଇଛି।

ନାଟକର ପ୍ରଥମ ଭାଗରେ ତ୍ରିପୁରା ଓ ଦ୍ୱିତୀୟ ଭାଗରେ ଗୟାସୁର ମୁଖ୍ୟ ଚରିତ୍ର। କ୍ଷମତା, ଦର୍ପ, ଅହଙ୍କାରରେ ଏମାନେ ଯେପରି ମଦମତ୍ତ, ଦୟା ଦାକ୍ଷିଣ୍ୟ, ଭକ୍ତି ଓ ନ୍ୟାୟ ପରାଣୟତାରେ ସେହିପରି ମହାନ। ଗୟା ଏକ ମହାନ ଚରିତ୍ର। ଧର୍ମ ପ୍ରାଣ ବିଷ୍ଣୁ ଭକ୍ତ ଭାବରେ ସେ ହୋଇଉଠିଛି ତ୍ୟାଗ ଓ ସମର୍ପଣର ଏକ ବିଗ୍ରହ। ଶକ୍ତି ଓ ସମତାର ମଂଜୁଳ ମିଶ୍ରଣରେ ଏ ଚରିତ୍ର ହୋଇ ଉଠିଛି ମହନୀୟ। ତ୍ରିପୁରାର ମହିଷୀ ପ୍ରଭାବତୀ ଧର୍ମପ୍ରାଣା ମହିଳା। ନାରୀମର୍ଯ୍ୟାଦା ବୋଧର ସେ ଥିଲେ ଉପାସିକା। ସ୍ୱାମୀ ଦେବ- ବିରୋଧି ହେଲେ ମଧ ସେ ଥିଲେ ନାରଦଙ୍କ ଶିଷ୍ୟା ଓ ବିଷ୍ଣୁଙ୍କର ପରମ ଉପାସିକା। ଦେବ ଦାନବ ସମୁଦାୟ ତିରିଶ ଗୋଟି ଚରିତ୍ରକୁ ନେଇ ନାଟକଟି ସୃଷ୍ଟି। ବିରଜା ଅପେରାର ଏହା ଏକ ସଫଳ ନାଟକ ଭାବରେ ଜନପ୍ରିୟ ଥିଲା।

**ବଭ୍ରୁବାହାନ :**

ବ୍ୟାସକୃତ ମହାଭାରତର ମଧ ପର୍ବ ଅନ୍ତର୍ଗତ କାହାଣୀ ଅବଲମ୍ବନରେ ରଚିତ 'ବଭ୍ରୁବାହାନ' କୃଷ୍ଣପ୍ରସାଦଙ୍କର ଅନ୍ୟ ଏକ ପୂର୍ଣ୍ଣାଙ୍ଗ ନାଟକ। କାହାଣୀ ବିନ୍ୟାସରେ ମୌଳିକତାର ଅନେକ ସଂଯୋଗ ଥିଲେ ମଧ ମୂଳ କାହାଣୀର ବିଶେଷ ପରିବର୍ତ୍ତନ ହୋଇନାହିଁ। ଅର୍ଜ୍ଜୁନଙ୍କ ସହିତ ବଭ୍ରୁବାହାନଙ୍କ ଯୁଦ୍ଧ ଓ ଅର୍ଜ୍ଜୁନଙ୍କ ମୃତ୍ୟୁ, ପୁନଃ ଜୀବନ ଲାଭ ମୂଳ କାହାଣୀ ନାଟକର ମୁଖ୍ୟ ଉପଜୀବ୍ୟ।

ନାଟକଟି ୫ ଅଙ୍କରେ ବିଭକ୍ତ। ତୃତୀୟ ଅଙ୍କଟି ପାଞ୍ଚ ଦୃଶ୍ୟ ସମ୍ବଳିତ ଓ ଅନ୍ୟ ଅଙ୍କ ଗୁଡିକ ତିନି ଦୃଶ୍ୟରେ ବିଭକ୍ତ। ଏଥିରେ ସଂଳାପ ଅମିତ୍ରା ଅକ୍ଷର ଛନ୍ଦରେ ଦିଆଯାଇଥିଲେ ମଧ ଅନେକତ୍ର ସରଳ ଗଦ୍ୟ ସଂଳାପ ରହିଛି। ନାଟକର ଚରିତ୍ର ଗୁଡିକ

ପୁରାଣର ହେଲେ ମଧ୍ୟ ଗୋପାଳ ଓ ବ୍ରାହ୍ମଣ ଚରିତ୍ର ଦୁଇଟି ନାଟ୍ୟକାରଙ୍କ ସୃଷ୍ଟି। ଧର୍ମ ଛଦ୍ମ ବେଶରେ ବ୍ରାହ୍ମଣ ଭୂମିକାରେ ଓ ଶ୍ରୀକୃଷ୍ଣ ଗୋପାଳ ବେଶରେ ଦେଖା ଦେଇଛନ୍ତି।

ନାଟକରେ ପୁରୁଷ ଚରିତ୍ର ଅପେକ୍ଷା ନାରୀ ଚରିତ୍ର ଉପରେ ଗୁରୁତ୍ୱ ଆରୋପିତ। ଏଥିରେ ତିନିଗୋଟି ନାରୀ ଚରିତ୍ର ଏକ ଅପରଠାରୁ ସ୍ୱତନ୍ତ୍ର। ପୁତ୍ର ଶୋକାତୁରା ଗଙ୍ଗା, ସ୍ୱାମୀ ଅନୁରକ୍ତା ଚିତ୍ରାଙ୍ଗଦା ଓ ତପସ୍ୱିନୀ ଉଲୁପୀକୁ ନେଇ ନାରୀ ସଂସାର।

ଉଲୁପୀ ନାଟ୍ୟକାରଙ୍କ ଅନୁପମ ସୃଷ୍ଟି। ସେ ରକ୍ତ ମାଂସ ଦେହ ଧାରିଣୀ ସାଧାରଣ ନାରୀ ନୁହନ୍ତି, ରହସ୍ୟମୟୀ ଯୋଗମାୟା। ତାଙ୍କରି ଭାଷାରେ "କଣ ଇଚ୍ଛା ମୋର ? ଜାଣ ତୁମ୍ଭେ ବ୍ରାହ୍ମଣ, ମୁଁ ଉଲୁପୀ! ବିଧାତାଙ୍କ ବଜ୍ର ଲେଖନୀର ଲେଖାକୁ ପୋଛି ଦେଇପାରେ। ମୋର ଗୋଟାଏ ତୀବ୍ର ଶ୍ୱାସରେ ବାସୁକିର ମଥା ଟଳି ଯାଉଛି- ମୋର ଅଙ୍ଗର ଗୋଟାଏ ସ୍ଫୁଲିଙ୍ଗ ସହ୍ୟ କରିବାକୁ ମେଦିନୀ କାତର ହେଉଛି।"[୮]

କବିଚନ୍ଦ୍ର କାଳୀ ଚରଣଙ୍କ 'ଚକ୍ରୀ' ଓ କୃଷ୍ଣ ପ୍ରସାଦଙ୍କ 'ବଭ୍ରୁବାହାନ'ରେ କଥାବସ୍ତୁର ସାମ୍ୟ ଥିଲେ ବି ଚରିତ୍ର ଉପସ୍ଥାପନାରେ ବସୁଙ୍କ ମୌଳିକତା 'ଚକ୍ରୀ'ରେ ଦେଖାଯାଏନା। 'ଚକ୍ରୀ ପୁରୁଷ କୈନ୍ଦ୍ରିକ'। ମହାଭାରତର ସେହି ଚକ୍ରୀ ସବୁର ସୂତ୍ରଧର। ମାତ୍ର 'ବଭ୍ରୁବାହାନ'ରେ ଉଲୁପୀ ମୁଖ୍ୟ ଚରିତ୍ର। ସମସ୍ତ ଘଟଣା ତା'ରି ଇଙ୍ଗିତରେ ପରିଚାଳିତ।

ନାଟକର କାହାଣୀ ଉପରେ ବଙ୍ଗଳା କାଶୀରାମଙ୍କ ମହାଭାରତର ପ୍ରଭାବ ଅନୁଭବ କରିହୁଏ। ବଭ୍ରୁବାହାନକୁ ନଟୀନନ୍ଦନ ଭାବରେ ଅପମାନିତ କରିବା ଓ ପଦାଘାତ କରିବା କଥାଟି କାଶୀରାମଙ୍କ ବଙ୍ଗଳା ମହାଭାରତ ଅନୁରୂପ।

**ମେଘନାଦ ବଧ**

ରାମାୟଣ କଥାବସ୍ତୁକୁ ନେଇ 'ମେଘନାଦ ବଧ' କୃଷ୍ଣପ୍ରସାଦଙ୍କ ଏକ ଗୀତିନାଟ୍ୟ। ୧୯୪୪ରେ ଏହାର ରଚନା। ପରିଣତ ବୟସର ସୃଷ୍ଟି ହେତୁ ଏଥିରେ ଶିଳ୍ପୀର ସଫଳ ହସ୍ତର ସ୍ପର୍ଶ ରହିଛି। ୩ ଅଙ୍କ ଓ ୧୫ ଦୃଶ୍ୟରେ ନାଟକଟି ବିଭକ୍ତ। ଏହାର କଳେବର କ୍ଷୁଦ୍ର। ପ୍ରାୟ ୨ ଘଣ୍ଟାର ଅଭିନୟ ପାଇଁ ଉଦ୍ଦିଷ୍ଟ। ଏଥିରେ ଗଦ୍ୟ ସଂଳାପ ଓ ସଙ୍ଗୀତର ମିଶ୍ରଣ ଦେଖାଯାଏ।

ସଙ୍ଗୀତ ରଚନା କ୍ଷେତ୍ରରେ ଜଗନ୍ନାଥ ପାଣିଙ୍କ ପ୍ରଭାବ ପଡିଥିବାର ଦେଖାଯାଏ। ଗୋଟିଏ ଉଦାହରଣ ନିଆଯାଇପାରେ।

---

୮. କୃଷ୍ଣପ୍ରସାଦ ବସୁ- ବଭ୍ରୁବାହନ, ୪ ଅଙ୍କ / ୨ୟ ଦୃଶ୍ୟ

ଜଗନ୍ନାଥ - ବିଂଶ ବାହୁ ବୋଲେ, ବଂଶ ପଦ୍ମ ବନ ମୋର
ରାମ ହିମ ଋତୁ ଲାଗି ହେଲା ନାରଖାର
ଗୋ ପ୍ରାଣ ସହି
ସମୂଳେ ଦହିବେ ମୂଳ ବାନର ବରାହି

କୃଷ୍ଣପ୍ରସାଦ- ପଙ୍କଜ ବନପରା ମୋର ଏ ବଂଶ
କାହୁଁଏ ରାମହୀମ କଲା ପରଶ ଯେ
କାଠୁରୀ ଯଥା ଶାଖା ପତର ଛାଟି
ଶେଷେ ମୂଳ ତରୁକୁ ପକାଏ କାଟି ଗୋ ।

ନାଟକଟିରେ ବୀର ଓ କରୁଣ ରସର ସମନ୍ୱୟ ଦେଖାଯାଏ । ଏଥିରେ ତରଣୀସେନର ଯୁଦ୍ଧ, ସୁବାହୁ ଲକ୍ଷ୍ମଣଙ୍କ ସଂଗ୍ରାମ, ମେଘନାଦ ସହିତ ଲକ୍ଷ୍ମଣଙ୍କ ସମର ବୀର ରସ ସଂଚାର କରିଛି । ନାଟକରେ ରାମଚନ୍ଦ୍ରଙ୍କୁ ପରମ ବ୍ରହ୍ମ ଭାବରେ ଚିତ୍ରଣ କରାଯାଇଛି । ସନ୍ଥ କବି ତୁଳସୀ ଦାସଙ୍କ ପରି କୃଷ୍ଣପ୍ରସାଦ ରାବଣ ଚରିତ୍ରକୁ ଭିନ୍ନ ଦୃଷ୍ଟିକୋଣରୁ ଉପସ୍ଥାପିତ କରିଛନ୍ତି । ରାମଚନ୍ଦ୍ର ଓ ସୀତାଙ୍କ ମହନୀୟତା ପ୍ରକାଶ କାଳରେ ରାବଣ ଭାବବିହ୍ୱଳ ହୋଇ ଉଠିଛି ।

ଶକ୍ତି ଉପାସନାର ମହତ୍ତ୍ୱ ନାଟକରେ ପ୍ରକାଶିତ । ନାରୀ ହେଉଛି ଶକ୍ତିର ରୂପାନ୍ତର । ଇନ୍ଦ୍ରଜିତର ପରାଜୟ ମାୟା ସୀତାଙ୍କୁ ହତ୍ୟା କରିବାରୁ, ରାବଣର ପତନର ମଧ୍ୟ ତାହାହିଁ କାରଣ । ଲକ୍ଷ୍ମଣ ଶକ୍ତିଙ୍କୁ ସନ୍ତୁଷ୍ଟ କରି ଗଡ଼ଚଣ୍ଡୀଙ୍କ କରବାଳ ଲାଭ କରିଛନ୍ତି । ପ୍ରମିଳାଙ୍କୁ ରାମଚନ୍ଦ୍ର ଭକ୍ତିର ଅର୍ଘ୍ୟ ଅର୍ପଣ କରିଛନ୍ତି ।

ନାଟକର ଶେଷ ଦୃଶ୍ୟରେ ଶକ୍ତି ଉଭା ହୋଇ ମେଘନାଦ ଆହୂତି ଦେବାବେଳେ କହିଛନ୍ତି-

"କେ ତୋର ଦେବତା କି ତାଙ୍କ କରମ, ପୂଜା ଫଳ ତୋତେ ମିଳିବକି
ଫୁଲ ଚନ୍ଦନରେ ଭଣ୍ଡାଇବୁ ତାଙ୍କୁ ଶୃଙ୍ଖଳା ସରାଗେ ଭୁଲିବେକି,
କାଳକୂଟ ଭରା ଅନ୍ତର ତୋହର, ସତ୍ୟ ସନାତନୀ କରିବାକୁ କ୍ରୂର
ଜାଳିଛୁ ଅନଳ କରି ଛଳବଳ, ସେ ଅନଳ ତୋତେ ଗିଳିବଟି ।

ନାଟକର ମୁଖ୍ୟ କଥାବସ୍ତୁର ଗତିକୁ ଜଟିଳ, ଦ୍ୱନ୍ଦ୍ୱାତ୍ମକ, ଉତ୍କଣ୍ଠା ଓ ବିସ୍ମୟ ସଂଚାରକ କରିବା ପାଇଁ ରାମଲକ୍ଷ୍ମଣଙ୍କ ନିଦ୍ରିତାବସ୍ଥାରେ ନିବାସର ସୁବାହୁ ସହିତ ପ୍ରବେଶ ଓ ହତ୍ୟା କରିବା ବେଳେ ହନୁମାନର ପ୍ରବେଶ, ଲକ୍ଷ୍ମଣଙ୍କ ସହିତ ଶିବଙ୍କର

ସଂଗ୍ରାମ ଆଦି ଉପକାହାଣୀର ସଂଯୋଜନାରେ ଲେଖକ ନାଟକଟିକୁ ସଫଳତା ଦାନ କରି ପାରିଛନ୍ତି।

**ଧ୍ରୁବ ଚରିତ**

ଭକ୍ତକବି ଜଗନ୍ନାଥ ଦାଶଙ୍କ ଓଡ଼ିଆ ଭାଗବତର ଚତୁର୍ଥ ସ୍କନ୍ଦର ଅଷ୍ଟମରୁ ଚତୁର୍ଦ୍ଦଶ ଅଧ୍ୟାୟ ମଧ୍ୟରେ ଥିବା ଧ୍ରୁବ ଉପଖ୍ୟାନକୁ ନେଇ ଧ୍ରୁବ ଚରିତ ନାଟକର ପରିକଳ୍ପନା। ଉପସ୍ଥାପନାରେ ଭିନ୍ନତା ରହିଥିଲେ ବି ମୋଟାମୋଟି ନାଟକର କାହାଣୀ ପୁରାଣର ଅନୁରୂପ।

କଥାବସ୍ତୁ ଆରମ୍ଭରେ ସୁରୁଚି ଓ ସୁନୀତିଙ୍କ ମଧ୍ୟରେ ସପତ୍ନୀ କଳହର ଦୃଶ୍ୟ ଦିଆଯାଇଛି। ଜୀବନରୁ ସୁନୀତିକୁ ଶେଷ କରିଦେବା ପାଇଁ ଗୋବର୍ଦ୍ଧନ ନାମକ ଏକ ପରିଚାରକର ନିଯୁକ୍ତି କରିଛନ୍ତି ସୁରୁଚି। ସୁନୀତି ଜୀବନ ରକ୍ଷା ପାଇଁ ଗୋପନରେ ବନକୁ ପଳାୟନ କରିଛନ୍ତି ଓ ଅତ୍ରି ମୁନିଙ୍କ ଆଶ୍ରମରେ ଆଶ୍ରୟ ନେଇଛନ୍ତି। ସେହିଠାରେ ଧ୍ରୁବର ଜନ୍ମ ଓ ପରେ ରାଜ୍ୟକୁ ଆଗମନ ଆଦି ଘଟଣା ପୁରାଣ କାହାଣୀର ଅନୁରୂପ।

ଅଳ୍ପ କେତୋଟି ସଙ୍ଗୀତକୁ ବାଦ୍ ଦେଲେ ଏହା ମୋଟାମୋଟି ଗଦ୍ୟ ସଂଳାପରେ ରଚିତ ଏକ ପଞ୍ଚାଙ୍କ ନାଟକ। ସାଧାରଣ ମଣିଷ ତପସ୍ୟା ଓ ସାଧନା ବଳରେ ଧ୍ରୁବ ପଦ ଲାଭ କରିପାରେ ଏହା ପୁରାଣ କାହାଣୀର ପ୍ରତିପାଦ୍ୟ। ବସୁଙ୍କ ନାଟକରେ ଧର୍ମର ଜୟ ଓ ପାପର ପରାଜୟ ପ୍ରଦର୍ଶନ କରାଯାଇ ସାମାଜିକ ଜୀବନକୁ ସଂଯତ ଓ ଶୃଙ୍ଖଳିତ କରିବାକୁ ଆହ୍ୱାନ ଦିଆଯାଇଛି। ଭକ୍ତି ପାବନ ସଙ୍ଗୀତ ସମାବେଶ ନାଟକଟିକୁ ଉପାଦେୟ ଓ ଭକ୍ତି ରସାତ୍ମକ କରିଛି।

**ଶକୁନ୍ତଳା**

କବିମଞ୍ଜୁଳଙ୍କ ଶକୁନ୍ତଳା ନାଟକ ମହାଭାରତର ଦୁଷ୍ମନ୍ତ ଶକୁନ୍ତଳା ପ୍ରଣୟ କାହାଣୀ ଅବଲମ୍ବନରେ ଏକ ଅନବଦ୍ୟ ସୃଷ୍ଟି। ଏ ନାଟକର କଥାବସ୍ତୁ ବିନ୍ୟାସରେ କାଳୀଦାସଙ୍କ ଅଭିଜ୍ଞାନ ଶାକୁନ୍ତଳମର ପ୍ରଭାବ ସୁସ୍ପଷ୍ଟ। ସୀମିତ ଚରିତ୍ରକୁ ନେଇ ଏହା ଏକ ତିନି ଅଙ୍କର ନାଟକ। ନାଟକର ମୁଖ୍ୟରସ ହେଉଛି ଶୃଙ୍ଗାର।

ନାଟକର ପ୍ରଥମ ଅଙ୍କରେ ଦୁଷ୍ମନ୍ତ ଶକୁନ୍ତଳାଙ୍କର ପ୍ରଥମ ମିଳନ ଦୃଶ୍ୟ ବର୍ଣ୍ଣନାରେ ରୁଚିହୀନତାର ପରିଚୟ ମିଳିଥାଏ। ଅଭିଜ୍ଞାନ ଶାକୁନ୍ତଳମର ତୃତୀୟ ଅଙ୍କରେ ବିରହ ଜ୍ୱାଳାରେ ଶକୁନ୍ତଳା ପୀଡିତ ହେବା, ସଖୀଗଣ ଶୀତଳ ଚିକିତ୍ସା କରିବା ଅନୁରୂପ ଘଟଣା ବସୁଙ୍କ ନାଟକରେ ରହିଛି। କାଳୀଦାସଙ୍କ ଶକୁନ୍ତଳା 'ମଦନ ଲେଖ' ଲେଖିବା ଭଳି ବସୁଙ୍କ ଶକୁନ୍ତଳା ପ୍ରେମ ପତ୍ର ଲେଖିଛି।

ନାଟକରେ ଆଦିବାସୀ ଜୀବନ ଚିତ୍ର ସହିତ କେଉଟ କେଉଟୁଣୀ ଜୀବନ ଚିତ୍ର ଦେବାରେ ବସୁଙ୍କର ସଫଳତା ଦେଖିହୁଏ।

ସଂଳାପ ଶୁଦ୍ଧ ଗଦ୍ୟରେ ପ୍ରଦତ୍ତ ହୋଇଛି। ନାଟ୍ୟକାରଙ୍କ ଏହା ପ୍ରାଥମିକ ପର୍ଯ୍ୟାୟର ସୃଷ୍ଟି। ରସ ପରିବେଷଣରେ ସ୍ୱାତନ୍ତ୍ର୍ୟ, ଭାଷା ପ୍ରୟୋଗରେ ସାଫଲ୍ୟ ଦୃଷ୍ଟିରୁ 'ଶକୁନ୍ତଳା' ସମସାମୟିକ ସୃଷ୍ଟି ମଧ୍ୟରେ ଅନନ୍ୟ।

**ବିଲ୍ୱମଙ୍ଗଳ :**

ଭକ୍ତିରସ ପରିପୂର୍ଣ୍ଣ 'ବିଲ୍ୱମଙ୍ଗଳ' କୃଷ୍ଣପ୍ରସାଦଙ୍କର ଏକ ଜନପ୍ରିୟ ନାଟକ। ସଂସ୍କୃତ ଭାଷାର 'କୃଷ୍ଣ କର୍ଣ୍ଣାମୃତ' କାବ୍ୟର କବି ବିଲ୍ୱମଙ୍ଗଳଙ୍କ ଜୀବନ କାହାଣୀକୁ ନେଇ ନାଟକଟି ରଚିତ। ବିଲ୍ୱମଙ୍ଗଳଙ୍କ ଜୀବନ କାହାଣୀ ବହୁ ରହସ୍ୟ ଓ ରୋମାଞ୍ଚରେ ପରିପୂର୍ଣ୍ଣ। ବ୍ୟକ୍ତି ଜୀବନର ପ୍ରଣୟ ବ୍ୟାପାର ସୃଜନୀ ଶକ୍ତିକୁ କିଭଳି ଅନୁପ୍ରେରିତ କରିଥାଏ ବିଲ୍ୱମଙ୍ଗଳ ତାର ଦୃଷ୍ଟାନ୍ତ।

ଊନବିଂଶ ଦୃଶ୍ୟ ସମ୍ବଳିତ ଚାରି ଅଙ୍କର ଏହା ଏକ ପୂର୍ଣ୍ଣାଙ୍ଗ ନାଟକ। ୧୧ଗୋଟି ପୁରୁଷ ଚରିତ୍ର ଓ ୫ଟି ନାରୀ ଚରିତ୍ରକୁ ନେଇ ଏହାର ପରିକଳ୍ପନା। ବିଲ୍ୱମଙ୍ଗଳ ମୁଖ୍ୟ ଚରିତ୍ର। ବିଲ୍ୱମଙ୍ଗଳଙ୍କ ପିତାଙ୍କ ମୃତ୍ୟୁ ଦୃଶ୍ୟରୁ ନାଟକର ଆରମ୍ଭ। ଆରମ୍ଭରୁ ବିଲ୍ୱମଙ୍ଗଳଙ୍କ ଅସ୍ଥିର ମାନସିକତାର ପରିଚୟ ଦିଆହୋଇଛି। ଦ୍ୱିତୀୟ ଅଙ୍କ ତୃତୀୟ ଦୃଶ୍ୟରେ କଥାବସ୍ତୁ ଶୀର୍ଷ ବିନ୍ଦୁରେ ପହଞ୍ଚିଛି।

ଏହିଠାରୁ ଆରମ୍ଭ ହୋଇଛି ବିଲ୍ୱମଙ୍ଗଳଙ୍କର ଭାବାନ୍ତର। ଏକ ପକ୍ଷରେ ଇନ୍ଦ୍ରିୟର ମୋହ, ସାଂସାରିକ ଆକର୍ଷଣ ସଙ୍ଗେ ଅନ୍ୟ ପକ୍ଷରେ ଜ୍ଞାନ ଓ ବୈରାଗ୍ୟର ଆଦର୍ଶଗତ ଦ୍ୱନ୍ଦ୍ୱ ନାଟକକୁ ବଳିଷ୍ଠ କରି ଗଢି ତୋଳିଛି।

ବିଲ୍ୱମଙ୍ଗଳ ନିଜର ପରିଣୀତା ସୁଜାତାଙ୍କୁ ଛାଡି ବାରାଙ୍ଗନା ଚିନ୍ତାମଣିଠାରେ ଆସକ୍ତ। ବୈଷ୍ଣବ ଦର୍ଶନରେ ପରକୀୟାର ସ୍ଥାନ ଉଚ୍ଚରେ। ପରାକୀୟାରେ ଆତ୍ମସମର୍ପଣର ଭାବ ଥାଏ। ପ୍ରେମର ପରିପକ୍ୱତା ଦେହ, ମନ ଓ ପ୍ରାଣକୁ ପ୍ରେମିକା ପଦ ପଙ୍କଜରେ ନିବେଦନରେ ନିହିତ। ବିଲ୍ୱମଙ୍ଗଳଙ୍କର କ୍ଷେତ୍ରରେ ତାହାହିଁ ଘଟିଛି।

ନାଟକର ଦ୍ୱିତୀୟ ଭାଗରେ ପ୍ରେମର ଅନ୍ୟ ରୂପଟି ଦେଖାଇ ଦିଆଯାଇଛି। ବୈରାଗ୍ୟ ସାଧନରେ ପ୍ରେମର ସାର୍ଥକତା। ଅହେତୁକ ଭକ୍ତିର ନିବେଦନ ସେ ପ୍ରେମର ମୂଳ କଥା। ପାର୍ଥିବ ସ୍ତରରୁ ଏହା କାମନାହୀନ 'କୃଷ୍ଣେନ୍ଦ୍ରିୟ ପ୍ରିତିବାଞ୍ଛା'କୁ ଉନ୍ନୀତ ହୋଇଯାଇଛି। ପ୍ରେମିକ ବିଲ୍ୱମଙ୍ଗଳ ବୈରାଗୀରେ ରୂପାନ୍ତରିତ ହୋଇଯାଇଛନ୍ତି।

ଏ ନାଟକ ପାର୍ଥିବ ଜୀବନର ନୁହେଁ ବରଂ ଏକ ଆଧ୍ୟାତ୍ମିକ ଆଦର୍ଶର ଜୟଗାନ କରିଛି। ଆଦ୍ୟ ଭାଗରେ ଭୋଗସର୍ବସ୍ୱ ଜୀବନର ଚିତ୍ର ଦିଆଯାଇଥିଲେ ବି ତାହା ଶେଷ କଥା ନୁହେଁ। ନାଟକର ଶେଷ ଭାଗରେ ତ୍ୟାଗ, ବୈରାଗ୍ୟ ଓ ଭକ୍ତିର ମହନୀୟତା ପ୍ରତିପାଦନ କରାଯାଇଛି।

ଏଥିରେ ସଙ୍ଗୀତର ବହୁଳତା ନାହିଁ। ମୋଟ ଚଉଦ ଗୋଟି ସଙ୍ଗୀତର ସମାବେଶ ହୋଇଛି। ଉଭୟ ସରଳ ଗଦ୍ୟ ଓ ଅମିତ୍ରାକ୍ଷର ଛନ୍ଦର ଯଥାଯଥ ପ୍ରୟୋଗ ନାଟକରେ ଦେଖାଯାଏ।

ବଙ୍ଗଳା ନାଟ୍ୟକାର ଗିରୀଶ ଚନ୍ଦ୍ରଙ୍କ ବିଲ୍ୱମଙ୍ଗଳ ନାଟକର ପ୍ରଭାବ ଅନେକ ସ୍ଥଳରେ ସହଜରେ ବାରିହୁଏ।

**ନାରାୟଣ ବସନ୍ତ**

ଆଞ୍ଚଳିକ ରାଜନ୍ୟବର୍ଗଙ୍କ ଜୀବନ ଓ ରାଜତ୍ୱ ବିଷୟବସ୍ତୁକୁ ନେଇ ନାଟକ ରଚନା କୃଷ୍ଣପ୍ରସାଦଙ୍କର ଅଭିନବ ପରିକଳ୍ପନା। ଏ କଳ୍ପନାର ଆଦ୍ୟ ପ୍ରୟାସ 'ନାରାୟଣ ବସନ୍ତ'।

ନାଟକଟି ନୀଳଗିରି ଦରବାର ମଞ୍ଚ ପାଇଁ ରାଜାଙ୍କ ବିଲାତ ଫେରିବା ବେଳ ସମ୍ବର୍ଦ୍ଧନା ଉଦ୍ଦେଶ୍ୟରେ ଲେଖା ଯାଇଥିଲା। ଏହା ନୀଳଗିରି ରାଜପରିବାରର ପ୍ରଶସ୍ତିମୂଳକ ନାଟକ। ନାଟ୍ୟକାର ଅଶ୍ୱିନୀ କୁମାର ଘୋଷଙ୍କ ଆର୍ଟ ଥିଏଟର ପ୍ରଥମେ ଏହି ରାଜ ପରିବାର ଇତିହାସକୁ ନେଇ 'ଭଂଜ ଭୁଜଙ୍ଗ' ଲେଖି ଅଭିନୟ କରିବା ପୂର୍ବରୁ ରିହରସାଲ୍ ରାତିରୁ ରାଜରୋଷର ଶିକାର ହୋଇ ବିଦାୟ ନେବା ପରେ କୃଷ୍ଣପ୍ରସାଦ ନାଟକ ଲେଖିବା ପାଇଁ ଅନୁରୁଦ୍ଧ ହୋଇଥିଲେ। 'ଭଞ୍ଜଭୂଜଙ୍ଗ'ର ପ୍ରଥମ ଦୃଶ୍ୟରେ ନୀଳଗିରି ରାଜା ହାତକଡା ସହ ଜେଲର ଦୃଶ୍ୟ ଓ ୩ୟ ଦୃଶ୍ୟରେ ରାଜା ପରାସ୍ତ ହେବା ଯୋଗୁ ଏ ନାଟକକୁ ରାଜା ଗ୍ରହଣ କରିନଥିଲେ (ପଥଭ୍ରଷ୍ଟର ଜୀବନକଥା)।

ନାଟକର ସଫଳତା ପାଇଁ ରାଜା ସାହେବ ପ୍ରୀତ ହୋଇ ବସୁ ମହୋଦୟଙ୍କୁ ନିଜ ହାତବନ୍ଧା ଘଡ଼ି ଓ ପାଞ୍ଚ ଶତ ଟଙ୍କା ପୁରସ୍କାର ଦେଇଥିଲେ।[୯] ରାଜନଅରରେ ଛଅଦିନ ରହି ଏ ନାଟକ ଲେଖିଥିବା କଥା ବସୁ ତାଙ୍କ ଆତ୍ମଜୀବନୀରେ କହିଛନ୍ତି।

ନୀଳଗିରି ଓ ମୟୂରଭଞ୍ଜ ଦୁଇଟି ରାଜ ପରିବାର ମଧ୍ୟରେ ଥିବା ପାରମ୍ପରିକ ଶତ୍ରୁତା ଓ ଯୁଦ୍ଧ ଉପରେ ଦୁଇଟି ପ୍ରଣୟ କାହାଣୀକୁ ସଂଯୁକ୍ତ କରି ନାଟକର ପରିକଳ୍ପନା କରାଯାଇଛି। ଓଡ଼ିଶାର ଗଜପତିଙ୍କ ସହାୟତାରେ ଦୀର୍ଘକାଳ ବିଦ୍ୱେଷର ଅବସାନ

---

୯. ସୁକୁମାର ସାହୁ– ଓଡ଼ିଆ ଲୋକ ନାଟକ (ରାଉରକେଲା) ପୃ ୧୩୫

ଘଟିଛି। ଭଂଜ ରାଜକୁମାର ବିବାହ କରିଛନ୍ତି ନୀଳଗିରି ରାଜକନ୍ୟା କଞ୍ଜଳତାଙ୍କୁ ଓ ନୀଳଗିରି ରାଜକୁମାର ନାରାୟଣ ବସନ୍ତ ଗଜପତିଙ୍କ କନ୍ୟା କଲରା ଦେବୀଙ୍କୁ ବିବାହ କରିଛନ୍ତି।

ନାଟକଟି ପାଞ୍ଚ ଅଙ୍କରେ ବିଭକ୍ତ। ଏଥିରେ ୨୩ଟି ପୁରୁଷ ଚରିତ୍ର ଓ ଦୁଇଟି ନାରୀ ଚରିତ୍ର ରହିଛି। ନାଟକଟି ଲେଖକଙ୍କର ଦେଶପ୍ରାଣତାର ସ୍ୱାକ୍ଷର ବହନ କରିଛି। ଉତ୍କଳର ଅତୀତ ଗୌରବ ଓ ଗରିମାର ବର୍ଣ୍ଣନା ପାଇଁ ଗଜପତି ପୁରୁଷୋତ୍ତମ ଦେବଙ୍କ କାଞ୍ଚି ଅଭିଯାନର ବର୍ଣ୍ଣନା ଓ କଳାପାହାଡ଼ର ଉତ୍କଳ ଆକ୍ରମଣର ଚିତ୍ର ଦିଆଯାଇଛି।

ଏଥିରେ କେତେକ ଐତିହାସିକ ନାମ ଓ ଘଟଣାକୁ ବାଦ୍ ଦେଲେ ନାଟ୍ୟକାର କାଳ ସଚେତନ ହୋଇପାରିନାହାନ୍ତି ଓ ସମୟର ଐକ୍ୟ ପ୍ରତି ନଜର ଦେଇନାହାନ୍ତି। ଏକ ସମୟରେ ମଞ୍ଚ ଉପରେ କପିଳେନ୍ଦ୍ର ଦେବ, ପୁରୁଷୋତ୍ତମ ଦେବ ଓ ନାରାୟଣ ବସନ୍ତ (୧୫୧୯-୧୫୨୩)ଙ୍କୁ ଉପସ୍ଥିତ କରାଇଛନ୍ତି। କଳାପାହାଡ଼ ସହିତ ନାରାୟଣ ବସନ୍ତ ସଂଗ୍ରାମରତ ଥିବାର ଦୃଶ୍ୟ ମଧ୍ୟ ଦେଇଛନ୍ତି।

ନାଟକର ବହୁ ସ୍ଥଳରେ ନୃତ୍ୟ ଓ ସଙ୍ଗୀତର ସମାବେଶ ହେତୁ ସାଧାରଣ ଦର୍ଶକଙ୍କ ନିକଟରେ ଏହି ଐତିହାସିକ ଭ୍ରମ ସହଜରେ ଧରା ପଡ଼େ ନାହିଁ।

କୃଷ୍ଣ ପ୍ରସାଦଙ୍କ ଭୂୟାଁପୀଢ ଆଦି ନାଟକ ମଧ୍ୟ ଏହି ମଞ୍ଚରେ ଅଭିନୀତ ହୋଇଥିଲା। ନୀଳଗିରି ଦରବାର ମଞ୍ଚ ସମଗ୍ର ଓଡ଼ିଶାରେ ସର୍ବଶ୍ରେଷ୍ଠ ମଞ୍ଚ ଭାବରେ ପରିଚିତ ଥିଲା। ଏ ମଞ୍ଚଟି କଲିକତାର ମଞ୍ଚଠାରୁ କୌଣସି ଦୃଷ୍ଟିରୁ ନ୍ୟୁନ ନଥିଲା ।[୧୦]

**ରମାଇ ଦେଓ**

ପାଟଣା ରାଜ୍ୟରେ ସଙ୍ଗୀତ ଶିକ୍ଷକ ଭାବରେ କାର୍ଯ୍ୟ କରୁଥିବା ବେଳେ କୃଷ୍ଣ ପ୍ରସାଦ ରମାଇ ଦେଓ ନାଟକ ରଚନା କରିଥିଲେ। ରମାଇ ଦେଓ ଥିଲେ ପାଟଣା ରାଜବଂଶର ପୂର୍ବପୁରୁଷ ଓ ପ୍ରତିଷ୍ଠାତା। ରମଣୀୟ ଦେବ ପରେ ରମାଇ ଦେଓରେ ପରିଣତ ହୋଇଛନ୍ତି। ରମାଇ ଦେଓଙ୍କ ଜନ୍ମ ଓ ସିଂହାସନ ପ୍ରାପ୍ତି ଘଟଣା ବଡ଼ ରୋମାଞ୍ଚକର। ଏହି କାହାଣୀକୁ ନେଇ 'ରମାଇ ଦେଓ'ର ପରିକଳ୍ପନା।

ଅପୁତ୍ରିକ ଗଙ୍ଗବଂଶର ସାମନ୍ତ ରାଜା କୃତ୍ତିବାସ ଦେଓଙ୍କର ମୃତ୍ୟୁପରେ ରାଣୀ ହେମନ୍ତ କୁମାରୀ (୧୧୩୨-୩୮) ପାଟଣା ରାଜ୍ୟର ଶାସନ କର୍ତ୍ତ୍ରୀ ହେଲେ। ରାଜ୍ୟର ଆଠ ସମ୍ପ୍ରଦାୟର ଆଠଜଣ ବିଶିଷ୍ଟ ବ୍ୟକ୍ତିଙ୍କୁ ଶାସନ କାର୍ଯ୍ୟରେ ନିଯୁକ୍ତ କଲେ।

---

୧୦. ଶ୍ରୀ କାର୍ତ୍ତିକ କୁମାର ଘୋଷ– ଓଡ଼ିଶାର ରଙ୍ଗମଞ୍ଚ ଓ ମୋର ନଟଜୀବନ, ପୃ ୪୧

ସେମାନଙ୍କ ହାତରେ ଗୋଟିଏ ସୁନା ଲେମ୍ବୁ ଦେଲେ। ଏ ଲେମ୍ବୁକୁ ସିଂହାସନରେ ବସାଇ ସେମାନେ ଶାସନ ପରିଚାଳନା ପ୍ରତ୍ୟେକ ଦିନକ ପାଇଁ କଲେ। ଏମାନେ ଥିଲେ ଅଷ୍ଟମଲ୍ଲିକ। ପରେ ଆଠମଲ୍ଲିକ ନାମ ଏଇଠୁ ସୃଷ୍ଟି।

ଖରିଆରର ଚୌହାନ ବଂଶୀୟ ରାଣୀ ଅନ୍ତଃସତ୍ତ୍ୱା ଅବସ୍ଥାରେ ପଳାୟନ କାଳରେ ପୁତ୍ର ସନ୍ତାନ ଜନ୍ମ ଦେଇଥିଲେ। ସେ ସନ୍ତାନଙ୍କୁ ଚକ୍ରଧର ପାଣିଗ୍ରାହୀ ନାମକ ଅନ୍ୟତମ ମଲ୍ଲିକ ପାଳନ କରିଥିଲେ। ମଲ୍ଲିକ ଚକ୍ରଧରଙ୍କ ଅନୁପସ୍ଥିତରେ ଏହି ସନ୍ତାନ ସୁନା ଲେମ୍ବୁ ନେଇ ଶାସନ କଲାବେଳେ ଅନ୍ୟ ମଲ୍ଲିକମାନଙ୍କୁ ହତ୍ୟା କରି ରମାଇ ଦେଓ ନାମଧାରଣ କରି ପାଟଣା ରାଜବଂଶ ଆରମ୍ଭ କଲେ।[୧୧]

ଏଇ ରୋମାଞ୍ଚକର କାହାଣୀକୁ ନେଇ 'ରମାଇ ଦେଓ' ନାଟକର ପରିକଳ୍ପନା। ପାଟଣା ଶୈଳଶ୍ରୀ ରାଜପ୍ରସାଦ ଦରବାର ମଞ୍ଚରେ ଏହା ବହୁବାର ଅଭିନୀତ ହୋଇଛି।

**ଯଯାତି କେଶରୀ**

କବିଙ୍କ ଜନ୍ମକ୍ଷେତ୍ର ଯାଜପୁରର ଇତିହାସ ଓ ଗୌରବ ଗାନପାଇଁ ଯଯାତି କେଶରୀ ଲିଖିତ। କବିବର ରାଧାନାଥଙ୍କ ଯଯାତି କେଶରୀ କାବ୍ୟ ଓ ଓଡ଼ିଶା ଇତିହାସର କେଶରୀ ବଂଶ ବିବରଣୀକୁ ନେଇ ନାଟକର କଥାବସ୍ତୁର ପରିକଳ୍ପନା କରାଯାଇଛି।

ପାଞ୍ଚ ଅଙ୍କରେ ବିଭକ୍ତ ଏହା ଏକ ପୂର୍ଣ୍ଣାଙ୍ଗ ଐତିହାସିକ ନାଟକ। କବିବରଙ୍କ କାବ୍ୟ ଶୃଙ୍ଗାର ଆଧାରିତ ହୋଇଥିଲେ ହେଁ ନାଟକର ମୁଖ୍ୟ ପ୍ରେମ କାହାଣୀ ନୁହେଁ। ଯଯାତିଙ୍କର ଉତ୍କଳ ସାମ୍ରାଜ୍ୟରେ ରାଜପଦ ଲାଭ, ଯାଜପୁରର ବିରଜା, ଭୁବନେଶ୍ୱରର ଲିଙ୍ଗରାଜ ଓ ପୁରୀ ଜଗନ୍ନାଥ ମନ୍ଦିର ପ୍ରତିଷ୍ଠା ଉତ୍କଳରୁ ଗରବା ଦସ୍ୟୁ ଦମନ ଆଦି ବିଷୟ ବସ୍ତୁ ନାଟକର ମୁଖ୍ୟ କଥା। ଏସବୁ ସହିତ ଯାଜପୁରରେ ଦଶାଶ୍ୱମେଧ ଯଜ୍ଞାନୁଷ୍ଠାନ, ବିରଜା ଦେବୀଙ୍କ ପାଇଁ ସେବା ପୂଜାର ବନ୍ଦୋବସ୍ତ ଆଦି ଐତିହାସିକ ଘଟଣା ନାଟକରେ ସନ୍ନିବେଶିତ। ମଗଧ ରାଜ ଦରବାରରେ ପାରିବାରିକ କଳହ, ଯଯାତିଙ୍କ ରାଜ୍ୟତ୍ୟାଗ, ଗରବା ଆକ୍ରମଣ ନାଟ୍ୟକାରଙ୍କ କଳ୍ପନା ପ୍ରସୂତ। ଯଯାତି ଓ ଲଳିତାଙ୍କ ପ୍ରେମ ଓ ପରିଣୟ ବ୍ୟାପାର କବି ରାଧାନାଥଙ୍କ କାବ୍ୟ ଅନୁରୂପ।

ନାଟକଟି ମିଳନାନ୍ତକ। ଯଯାତିଙ୍କର ଗୋପନରେ ସ୍ୱରାଜ୍ୟରୁ ପଳାୟନ ପରେ ଉତ୍କଳ ସିଂହାସନ ଲାଭ ଓ ବୃଦ୍ଧ ପିତାଙ୍କ ସହ ମିଳନ ଓ ଲଳିତାଙ୍କ ସହିତ ବିବାହ ନାଟକଟିକୁ ମିଳନାନ୍ତକ କରିଛି।

---

୧୧. ଶ୍ରୀ ରାଜେନ୍ଦ୍ର ପ୍ରସାଦ ମିଶ୍ର, ଦୈନିକ ସମ୍ବାଦ, ୨୭.୧୨.୧୯୮୯, ପୃ ୫

ଅନ୍ୟ ଦୁଇଟି ନାଟକରେ ଐତିହାସିକ ସତ୍ୟ ପ୍ରତି ନାଟ୍ୟକାର ବିଶ୍ୱସ୍ତ ହୋଇପାରିନଥିବା ବେଳେ ଏହି ନାଟକରେ ସେ ପ୍ରତିଷ୍ଠିତ ଐତିହାସିକ ତଥ୍ୟ ଓ ସତ୍ୟକୁ ଉଲ୍ଲଂଘନ ନକରି କଳ୍ପନା ବଳରେ ଇତିହାସର ନିର୍ଜୀବ କାହାଣୀକୁ ଶିଳ୍ପ ସୌରଭରେ ବିମଣ୍ଡିତ କରିଛନ୍ତି ।

**ଭୂୟାଁପୀଢ଼**

କେଉଁଝରେ ଗଡ଼ଜାତ ରାଜ୍ୟର ଇତିହାସ ଆଧାରିତ 'ଭୂୟାଁପୀଢ଼' ଏକ ଐତିହାସିକ ନାଟକ । ଉତ୍କଳ ଇତିହାସ ସଂପୃକ୍ତ ଏକ ଅଜ୍ଞାତ ଅଧ୍ୟାୟ ଉପରେ ଏଥିରେ ଆଲୋକପାତ କରାଯାଇଛି । ନାଟକର କଥାବସ୍ତୁ ଐତିହାସିକ ହେଲେ ମଧ୍ୟ ଭୂୟାଁ ଜାତିର ଜୀବନ ଚର୍ଯ୍ୟାର ଏକ ମନୋଜ୍ଞ ଆଲେଖ୍ୟ ଏଥିରେ ଅଙ୍କିତ ହୋଇଛି ।

କେଉଁଝର ପୂର୍ବେ ମୟୂରଭଞ୍ଜ ଗଡ଼ଜାତ ରାଜ୍ୟ ଅନ୍ତର୍ଭୁକ୍ତ ଥିଲା । କେଉଁଝର ଭୂୟାଁମାନେ ଶାସନର ସୁବିଧା ପାଇଁ ମୟୂରଭଞ୍ଜ ରାଜବଂଶରୁ ଜଣେ ରାଜପୁତ୍ରଙ୍କୁ ଚୋରାଇ ଆଣି କେନ୍ଦୁଝରରେ ରାଜା କରାଇଥିଲେ ।[୧୨] ଏକ କିମ୍ବଦନ୍ତୀ କହେ ଏକ ସହସ୍ର ବର୍ଷ ଆଗେ ଭୂୟାଁମାନେ ମୟୁରଭଞ୍ଜ ରାଜବଂଶରୁ ପୁତ୍ରଟିଏ ଚୋରାଇ ଆଣିଥିଲେ (ଉତ୍କଳ ସାହିତ୍ୟ ୧୩/୩ ପୃଷ୍ଠ ୭୯) ।

ନାଟକରେ ଉପରୋକ୍ତ କିମ୍ବଦନ୍ତୀ କଥାବସ୍ତୁରେ ରୂପ ଲାଭ କରିଛି । ନାଟକଟି କୃଷ୍ଣପ୍ରସାଦଙ୍କ ବିରଜା ଅପେରା ପରିବେଷିତ ସବୁଠାରୁ ଅଧିକ ଜନପ୍ରିୟ ନାଟକ ଥିଲା ।

ଓଡ଼ିଆ ନାଟ୍ୟ ସାହିତ୍ୟରେ ଆଦିବାସୀ ଜୀବନ ଚିତ୍ର ଯେତେବେଳେ ସ୍ୱଳ୍ପ ଥିଲା ସେତିକି ବେଳେ ଅବହେଳିତ ଏକ ବନ୍ୟଜାତିର ଜୀବନ ଚର୍ଯ୍ୟାର ଚିତ୍ର ନାଟକ ପରିବେଷଣ କରିବା ଏକ ସାହସିକ ପଦକ୍ଷେପ । ଚରିତ୍ର ଚିତ୍ରଣରେ ଦକ୍ଷତା ଓ ଆଦିବାସୀ ଭାଷା ପ୍ରୟୋଗରେ ନାଟ୍ୟକାରଙ୍କ ସଫଳତା ଉଲ୍ଲେଖନୀୟ । ଆଦିବାସୀ ଜୀବନର ସରଳତା, ସତ୍ୟାନୁରକ୍ତି, ସ୍ୱାଧୀନତା ପ୍ରତି ଆନ୍ତରିକ ମମତା, ରାଜଭକ୍ତି, ବିଶ୍ୱସ୍ତତା ଓ ସୌଜନ୍ୟ ଆଦି ମହନୀୟ ଗୁଣାବଳୀ ଭାଲୁଙ୍ଗ, ମରୁଆ ଓ ସର୍ଦ୍ଦାରନୀ ଚରିତ୍ର ଭିତରେ ଅତି ସୁନ୍ଦର ଭାବରେ ଫୁଟି ଉଠିଛି ।

ନାଟକରେ ଅନେକ ସ୍ଥଳରେ ଆଦିବାସୀ ନୃତ୍ୟ ସଙ୍ଗୀତର ସଂଯୋଜନା ନାଟକକୁ ଆକର୍ଷଣୀୟ କରିଛି ।

---

୧୨. ଶ୍ରୀଚରଣ ମହାନ୍ତି– ପ୍ରଥମ ଓଡ଼ିଆ ଉପନ୍ୟାସ ଓ ଔପନ୍ୟାସିକ

'ଭୂୟାଁପୀଢ଼' ହିନ୍ଦୁ-ମୁସଲମାନ ସଂପ୍ରୀତିର ଏକ ମହାନ ଦଲିଲ। ହିନ୍ଦୁ ଝିଅ ହେନା ସୁବେଦାର ଦାଉରାନୀଙ୍କ ଦ୍ୱାରା ପାଳିତା ହୋଇଛି। ହିନ୍ଦୁ ପୂଜା ଉପାସନା କରିବା ପାଇଁ ରାଜନବରରେ ତାକୁ ପୂର୍ଣ୍ଣ ସ୍ୱାଧୀନତା ଦିଆଯାଇଛି।

ଇତିହାସ ଓ କଳ୍ପନାର ମନୋଜ୍ଞ ସମନ୍ୱୟରେ ନାଟକଟି ଅତ୍ୟନ୍ତ ଉପାଦେୟ ହୋଇଛି।

ନାଟକର ମୁଖ୍ୟ ନାୟକ ଜିତୁ ଐତିହାସିକ ଚରିତ୍ର। ଜ୍ୟୋତି ଭଂଜଙ୍କୁ ନାଟ୍ୟକାର ଜିତୁ ଭାବରେ ଗ୍ରହଣ କରିଛନ୍ତି। ଏ ବିଷୟରେ ଐତିହାସିକ ଆର.ଡି. ବାନାର୍ଜିଙ୍କ ମତ ଏହିପରି "A local tradition of Keonjhar reveals that the Bhuyans of Keonjhar... stole away a boy named Jyoti Bhanja from the ruling family (Khijingkota) whom they installed as king. (History of Orissa, Page 340)

ଇତିହାସର ବିଷୟବସ୍ତୁକୁ ଆଧାର କରି ନବନବ ଘଟଣାର ସଂଯୋଗରେ 'ଭୂୟାଁପୀଢ଼' ଏକ ସାର୍ଥକ ସୃଷ୍ଟି। ନାଟ୍ୟକାର କୃଷ୍ଣପ୍ରସାଦଙ୍କର ଏହା ଥିଲା ସବୁଠାରୁ ଜନପ୍ରିୟ ନାଟକ। ବହୁଭାବରେ ଏହା ନାଟ୍ୟକାରଙ୍କୁ ସଫଳତା ଦାନ କରିଥିଲା। ସମସାୟିକ ଐତିହାସିକ ମଞ୍ଚନାଟକ ସହିତ ଏହାକୁ ତୁଳନା କରି ନାଟ୍ୟକାର କହନ୍ତି "ଏହି ନାଟକର ଛତ୍ରେ ଛତ୍ରେ Romance, ସଂଗ୍ରାମ, ଭ୍ରମ, Tragedy / Comedy ମିଶ୍ରଣେ ଉତ୍କଳୀୟ ଯାବତୀୟ ଐତିହାସିକ ନାଟକକୁ ପରାସ୍ତ କରି ବହୁ ଉଚ୍ଚେ, ତାହା ପ୍ରତି କଳାବିଦ୍ କହିବାକୁ ବାଧ ହେବେ। କୋଣାର୍କ, କଳାପାହାଡ଼, ତୁଚ୍ଛତା ତୁଳନାରେ, ଜନରଂଜନ ଭାଷା ବିନ୍ୟାସେ, ଚରିତ୍ର ଚିତ୍ରଣେ, ସ୍ୱର ବିନ୍ୟାସେ ଅତୁଳନୀୟ ଏହା ପ୍ରତିସମାଲୋଚକ ସ୍ୱୀକାର କରିବେ ।" (ପଥଭ୍ରଷ୍ଟର ଜୀବନକଥା)।

ଜାତୀୟ ଭାବର ପ୍ରସାର କରୁଥିବାରୁ ଏ ନାଟକ ପ୍ରଦର୍ଶନକୁ ଇଂରେଜ ସରକାର ନିଷିଦ୍ଧ (Proscribe) କରି ଦେଇଥିଲେ। ମୟୂରଭଞ୍ଜ ରାଜ୍ୟ ଓ କେତେକ ଗଡଜାତ ରାଜ୍ୟରେ ଏହା ବାରମ୍ବାର ଅଭିନୀତ ହେଉଥିଲା। (ପଥଭ୍ରଷ୍ଟର ଜୀବନକଥା)

**ମୃଚ୍ଛକଟିକ**

ସଂସ୍କୃତ ନାଟ୍ୟକାର ଶୂଦ୍ରକଙ୍କ ନାଟକ ମୃଚ୍ଛକଟିକର ଅବଲମ୍ବନରେ ବସୁଙ୍କ 'ମୃଚ୍ଛକଟିକ'ର ସୃଷ୍ଟି। ଦଶ ଅଙ୍କର ସଂସ୍କୃତ ନାଟକକୁ ଓଡ଼ିଆରେ ଚାରିଗୋଟି ଅଙ୍କରେ ପରିକଳ୍ପନା କରିଛନ୍ତି। ସଂସ୍କୃତ ନାଟକ ପ୍ରଭାବରେ ଏଥିରେ ପ୍ରସ୍ତାବନା ଦୃଶ୍ୟ ଓ ନଟନଟୀ ଆଦି ଚରିତ୍ରର ଆରୋପ ହୋଇଛି।

ସଂସ୍କୃତ ନାଟକ ଅଭିଜାତ ସ୍ତରରୁ ଗଣସମାଜକୁ ଅବତରି ଆସିଛି ମୃଚ୍ଛକଟିକରେ। ନାଟ୍ୟକାର କୃଷ୍ଣପ୍ରସାଦ, ସମକାଳୀନ ସମାଜର ପାଶ୍ଚାତ୍ୟ ସଭ୍ୟତାର ପ୍ରଭାବରେ ପଶା, ନିଶା, ବେଶ୍ୟା ପ୍ରତି ନବ୍ୟ ଯୁବକମାନଙ୍କର ଆକର୍ଷଣକୁ ରୂପ ଦେବା ପାଇଁ ଏ ନାଟକଟିକୁ ସୃଷ୍ଟି କରିଛନ୍ତି।

ପ୍ରସ୍ତାବନା ଦୃଶ୍ୟରେ ନଟର ଉକ୍ତି ଦେଖନ୍ତୁ "କାହାଣୀଟା ଏକାନ୍ତ ସାଧାରଣ କଥା। ନିତି ଆମ ଚାରିପିଠି ସେହି ପରି ଛବି ଦେଖୁଛୁ। ପଶା, ନିଶା, ଯୋଷାରେ ପଡ଼ି ଲୋକେ କିପରି ଧ୍ୱଂସ ହେଉଛନ୍ତି, ଧନାଢ଼୍ୟ ଲୋକେ କିପରି, ଗରିବ-ନିରୀହ ଲୋକ ଦେଖି ତାଙ୍କୁ ଜାଲ ଜୁଆଚୋରିରେ ଛନ୍ଦି ତାଙ୍କ ଉପରେ ଅତ୍ୟାଚାର କରନ୍ତି, ସେହି କଥା।"

**ମିଠାମହୁରା**

ବହୁ ଐତିହାସିକ ଓ ପୌରାଣିକ ନାଟକର ସ୍ରଷ୍ଟା କୃଷ୍ଣପ୍ରସାଦ ଦୁଇଖଣ୍ଡି ମାତ୍ର ସାମାଜିକ ନାଟକ ରଚନା କରିଛନ୍ତି। ଏହି ମିଠାମହୁରା ସେଥିରୁ ଖଣ୍ଡିଏ। ଓଡ଼ିଆ କଥା ସାହିତ୍ୟରେ ଫକୀର ମୋହନ ଓଡ଼ିଆ ଭୂମ୍ୟାଧିକାରୀଙ୍କ ଅତ୍ୟାଚାରର ଅଶ୍ଳୀଳ କାହାଣୀକୁ ଯେପରି ରୂପଦାନ କଲେ ଓଡ଼ିଆ ଲୋକନାଟକ କ୍ଷେତ୍ରରେ ଏଦିଗରେ ବସୁ ଆଦ୍ୟ ପ୍ରୟାସ କରିଥିବାର ଦେଖାଯାଏ।

ପ୍ରଜାମାନଙ୍କ ଉପରେ ଜମିଦାରଙ୍କ ଶୋଷଣ, ଜମିଦାର ପରିବାର ମଧ୍ୟରେ ପାରସ୍ପରିକ କଳହ, ମଦ୍ୟ ଓ ନାରୀ ପ୍ରତି ଆସକ୍ତି, ଅମଲାମାନଙ୍କ ଚକ୍ରାନ୍ତ, ଇଂରେଜ ଶାସନ କାଳରେ କୋର୍ଟ କଚେରୀରେ ବିଚାର ବ୍ୟବସ୍ଥା ଓ ସାହୁକାରମାନଙ୍କ ଶୋଷଣ ଆଦିର ଚିତ୍ର ଦେବାରେ କୃଷ୍ଣପ୍ରସାଦଙ୍କ 'ମିଠା ମହୁରା' ଏକ ଅନବଦ୍ୟ ସୃଷ୍ଟି।

ବୁନିଆଦ ଭୂମ୍ୟାଧିକାରୀ ଦୀନୁ ମଙ୍ଗରାଜ, ନବ୍ୟ ଜମିଦାର ରଘୁ ସାମନ୍ତରାୟଙ୍କ ପାରିବାରିକ କଳହର ଚିତ୍ର ଏହି ନାଟକରେ ନିଖୁଣ ଭାବରେ ଦିଆଯାଇଛି। ଗୁମାସ୍ତା ହର ପଟ୍ଟନାୟକ କୁପଥରେ ଯିବାକୁ ରଘୁ ସାମନ୍ତରାୟଙ୍କୁ ପ୍ରେରଣା ଦେଇ ମଙ୍ଗରାଜଙ୍କର ସର୍ବସ୍ୱ ଲୁଣ୍ଠନ କରିଛନ୍ତି। କୌଶଳରେ ସାମନ୍ତରାୟଙ୍କ ତହବିଲକୁ ଆତ୍ମସାତ କରି ତାଙ୍କ ଜମିଦାରୀକୁ ନିଲାମ କରିଦେବାକୁ ପଛେଇ ନାହାନ୍ତି। ସନ୍ଥବାବା ନାମକ ଜଣେ ସମାଜସେବୀ ସାଧୁଙ୍କ ଉଦ୍ୟମରେ ସାଧାରଣ ଅତ୍ୟାଚାରିତ ଜନତା ଏକତ୍ରିତ ହୋଇ ଅନ୍ୟାୟର ପ୍ରତିରୋଧ କରି କୃତକାର୍ଯ୍ୟ ହୋଇଛନ୍ତି। ହର ପଟ୍ଟନାୟକ ଦଣ୍ଡିତ ହୋଇଛନ୍ତି। ରଘୁ ସାମନ୍ତରାୟ ଆତ୍ମ ସମର୍ପଣ କରି ମଙ୍ଗରାଜଙ୍କ ନିକଟରେ ଦୋଷ ସ୍ୱୀକାର କରିଛନ୍ତି।

ନାଟକଟି ଅପେରା ପାଇଁ ଲେଖା ଯାଇଥିଲେ ମଧ୍ୟ ରଙ୍ଗମଞ୍ଚରେ ଏହାର ଅଭିନୟରେ କୌଣସି ଅସୁବିଧା ହେବ ନାହିଁ। ପ୍ରତ୍ୟେକ ଦୃଶ୍ୟ ଆରମ୍ଭରେ ନାଟ୍ୟକାର ଦୃଶ୍ୟର ନିର୍ଦ୍ଦେଶନା ଦେଇଛନ୍ତି। ଏହା ଅଙ୍କରେ ବିଭକ୍ତ ନହୋଇ କେବଳ ପନ୍ଦରଟି ଦୃଶ୍ୟ ସମ୍ବଳିତ ହୋଇଛି। ଚରିତ୍ର ଚିତ୍ରଣ, ଭାଷାବିନ୍ୟାସ, ଭାବ ସମ୍ପଦ, ସଙ୍ଗୀତ ଓ ଗାମ୍ଭୀର୍ଯ୍ୟ ଦୃଷ୍ଟିରୁ ଏହା ଆଧୁନିକ ଓଡ଼ିଆ ନାଟକର ଆଦି ପର୍ବରେ ଏକ ସଫଳ ନାଟକ। ପାରମ୍ପରିକ ଲୋକନାଟକ ଓ ବିଦଗ୍ଧ ଓଡ଼ିଆ ନାଟକ ମଧ୍ୟରେ ଏହା ଯେପରି ଏକ ସଂଯୋଗ ସେତୁ। ଊନବିଂଶ ଶତାବ୍ଦୀର ଆଦ୍ୟପାଦର ସମାଜ ଜୀବନର ଚିତ୍ର ଏହି ନାଟକରେ ପ୍ରଦତ୍ତ ହୋଇଛି। ନଗର ସଭ୍ୟତା ପ୍ରତି ଅହେତୁକ ଆଗ୍ରହ, ଗ୍ରାମ୍ୟଜୀବନ ପ୍ରତି ବିତସ୍ପୃହ ହେବା ଫଳରେ ସେ ଦିନର ସମାଜ କିଭଳି ଧ୍ୱଂସ ମୁଖକୁ ଆଗେଇ ଯାଉଥିଲା ଅତି ନିପୁଣ ଭାବରେ ତାର ଚିତ୍ର ଏହି ନାଟକରେ ଅଙ୍କିତ।

ପାଶ୍ଚାତ୍ୟ ସଭ୍ୟତାର ଅହିତକର ଦିଗକୁ ମହୁରା ଭାବରେ ଗ୍ରହଣ କରାଯାଇଛି। ଧ୍ୱଂସ ପଥର ଯାତ୍ରୀମାନଙ୍କ ପାଇଁ ବିଷ ମଧ୍ୟ ଅମୃତ ତୁଲ୍ୟ ପ୍ରତୀୟମାନ ହୋଇଥାଏ। 'ମିଠା ମହୁରା'ରେ ଅଳ୍ପ କେତେକ ଚରିତ୍ରକୁ ବାଦ୍ ଦେଲେ ଅଧିକାଂଶ ଧ୍ୱଂସ ପଥର ଯାତ୍ରୀ, ବିଷକୁ ଅମୃତ ତୁଲ୍ୟ ଆକଣ୍ଠ ପାନ କରିବାରେ ସେମାନଙ୍କର କୁଣ୍ଠା ନାହିଁ। ତେଣୁ ନାଟକର ନାମକରଣ ଯଥାର୍ଥରେ 'ମିଠାମହୁରା' ରଖାଯାଇଛି। ମିଠା ମହୁରା କୃଷ୍ଣପ୍ରସାଦଙ୍କର ଦ୍ୱିତୀୟ ପ୍ରକାଶିତ ନାଟକ। ୧୯୫୮ ମସିହାରେ ଏହା ଭଦ୍ରକର ପୁରୁଣାବଜାରରୁ ଶ୍ରୀ କୃଷ୍ଣଚରଣ ସାହୁଙ୍କ ଦ୍ୱାରା ପ୍ରକାଶିତ। ପ୍ରକାଶ ପୂର୍ବରୁ ଏହା ବହୁ ସ୍ଥାନରେ ଅଭିନୀତ ହୋଇ ଏକାଧିକ ବାର ସଂଶୋଧିତ ହୋଇଛି। ବାସ୍ତବ ଅଭିନୟ କ୍ଷେତ୍ରରେ ପରୀକ୍ଷିତ ହେବା ପରେ ଆବଶ୍ୟକସ୍ଥଳେ ପରିବର୍ତ୍ତନ ଓ ସଂସ୍କାର କରାଯାଇଛି (ଗ୍ରନ୍ଥାକାରଙ୍କ ନିବେଦନ, ମିଠାମହୁରା)

**ସମାଜ ଚିତ୍ର**

'ସମାଜ ଚିତ୍ର' କୃଷ୍ଣ ପ୍ରସାଦଙ୍କର ଆଉ ଏକ ସାମାଜିକ ନାଟକ। ଯେଉଁ ସାମାଜିକ ଭିତ୍ତିଭୂମି ଉପରେ 'ମିଠା ମହୁରା'ର ପରିକଳ୍ପନା ଏହି ନାଟକଟି ସେଥିରେ ଏକ ବୈଚିତ୍ର୍ୟପୂର୍ଣ୍ଣ ପ୍ରଣୟନ। ସମାଜ ସଂସ୍କାର ଓ ଗାନ୍ଧୀ ଆଦର୍ଶର ପ୍ରଚାର ନାଟକ ରଚନାର ଉଦ୍ଦେଶ୍ୟ।

ଜଣେ ସରକାରୀ କର୍ମଚାରୀ ଦୀନବନ୍ଧୁଙ୍କ ପରିବାରର ହସ କାନ୍ଦକୁ ନେଇ ଏହାର ସୃଷ୍ଟି। ଜଣେ ପ୍ରଜାପୀଡ଼କ ଜମିଦାର ଭୀମ ପ୍ରହରାଜଙ୍କ ପୁଅ ସୁବୋଧ ସହିତ

ଦୀନବନ୍ଧୁଙ୍କ ଝିଅ ବୀଣାର ଶୁଭ ପରିଣୟ ଯୌତୁକ ପାଇଁ କିଭଳି ଶେଷରେ ଦୀନବନ୍ଧୁଙ୍କ ପରିବାରକୁ ଉଚ୍ଛନ୍ନ କରି ଦେଇଛି ତାରି କରୁଣ ଆଲେଖ୍ୟ ଆଙ୍କିଛନ୍ତି ନାଟ୍ୟକାର। ଉଚ୍ଚ ଶିକ୍ଷିତ ସୁବୋଧ ନିଜ ପିତାଙ୍କ କାର୍ଯ୍ୟକୁ ସମର୍ଥନ ନକରିବା ଫଳରେ ଗୃହରୁ ତଡ଼ା ଖାଇ ଶେଷରେ ଏକ ସେବାନିକେତନ ପ୍ରତିଷ୍ଠା କରି ସମାଜ ସେବା କରିଛନ୍ତି।

ନାଟକଟି ଅସମ୍ପୂର୍ଣ୍ଣ। ଚତୁର୍ଥ ଅଙ୍କ ପ୍ରଥମ ଦୃଶ୍ୟ ପର୍ଯ୍ୟନ୍ତ ରହିଛି। ପ୍ରାକ୍ ସ୍ୱାଧୀନତା କାଳ ଓଡ଼ିଶାର ଜନଜୀବନର ଚିତ୍ର ନାଟକଟିରେ ଦିଆଯାଇଛି। ପରମ୍ପରା ଓ ପ୍ରଗତିର ସଂଘର୍ଷ ନାଟକରେ ଦେଖିବାକୁ ମିଳେ। ଆଧୁନିକ ସଭ୍ୟତା ଓ ଶିକ୍ଷା ଅନୁପ୍ରାଣିତ ଯୁବଗୋଷ୍ଠୀ ନବଭାବନାର ପ୍ରସାର ଓ ପ୍ରାଚୀନ ଚଳଣୀରେ ଥିବା ଦୋଷ ଦୁର୍ବଳତାର ବିଲୋପ ପାଇଁ ଆହ୍ୱାନ ଦେବାବେଳେ, ପାରମ୍ପରିକ ଚଳଣୀରେ ବିଶ୍ୱାସ କରୁଥିବା ପୁଞ୍ଜିପତି, ଜମିଦାର ଓ ସେମାନଙ୍କର ଅନ୍ତରଙ୍ଗ ସାଥିମାନଙ୍କ ବିରୋଧର ସମ୍ମୁଖୀନ ହୋଇଛନ୍ତି। ସୁବୋଧ ଓ ସୁଧିର ନବଭାବନାର ପ୍ରତିନିଧିତ୍ୱ କଲାବେଳେ ଜମିଦାର ଭୀମ ପ୍ରହରାଜ, ନେତା ବାଜପେୟୀ ଫଣି ଅଗ୍ନିହୋତ୍ରି ପାରମ୍ପରିକ ଜୀବନଧାରାର ପ୍ରତିନିଧି ଭାବରେ ଦେଖା ଦେଇଛନ୍ତି। ଏହି ଦୁଇ ଗୋଷ୍ଠୀର ଚିନ୍ତା ସଂଘର୍ଷର ଚିତ୍ର ନାଟକଟିରେ ଦିଆଯାଇଛି।

'ମିଠା ମହୁରା' ତୁଳନାରେ ଏହି ଅସଂମ୍ପୂର୍ଣ୍ଣ ନାଟକ ଅଳ୍ପ ସଂଖ୍ୟକ ଚରିତ୍ରକୁ ନେଇ ସୃଷ୍ଟି। 'ମିଠା ମହୁରା' ଊନବିଂଶ ଶତାବ୍ଦୀର ଶେଷ କାଳର ସମାଜ ଚିତ୍ର ବହନ କରିଥିବା ବେଳେ 'ସମାଜଚିତ୍ର' ସ୍ୱାଧୀନତା ପୂର୍ବ ବିଂଶ ଶତାବ୍ଦୀର ସମାଜ ଜୀବନକୁ ରୂପ ଦେଇଛି।

**ନାଟକ ସମୀକ୍ଷା**

କଥାବସ୍ତୁ ନିର୍ବାଚନ ଓ ଉପସ୍ଥାପନା କ୍ଷେତ୍ରରେ କୃଷ୍ଣପ୍ରସାଦ ଅନେକାଂଶରେ ସଂସ୍କୃତ ନାଟ୍ୟ ରୀତି ଅବଲମ୍ବନ କରିଥିଲେ ହେଁ ବହୁ କ୍ଷେତ୍ରରେ ମୌଳିକତା ପ୍ରଦର୍ଶନ କରିଛନ୍ତି। ମଞ୍ଚନାଟକ ରଚନା କ୍ଷେତ୍ରରେ 'ବାବାଜୀ'ରେ ଜଗମୋହନ ଲାଲା ଯେଉଁ ଆଦର୍ଶ ଅନୁସରଣ କଲେ ତାଙ୍କ ପରେ ରାମଶଙ୍କର ଓ କାମପାଳ ସେ ପଥ ପରିତ୍ୟାଗ କରି ପ୍ରାଚ୍ୟ ଓ ପାଶ୍ଚାତ୍ୟ ଉଭୟ ନାଟ୍ୟ ଶୈଳୀର ମନୋଜ୍ଞ ମିଶ୍ରଣ କରି ନାଟକମାନ ରଚନା କଲେ। ଯାତ୍ରା ନାଟକ ରଚନା କ୍ଷେତ୍ରରେ କୃଷ୍ଣପ୍ରସାଦ ରାମଶଙ୍କରଙ୍କ ପଦାଙ୍କ ଅନୁସରଣ କରିଥିବାର ଦେଖାଯାଏ। ମଞ୍ଚ ନାଟକ ପରି ସେ ଯାତ୍ରା ନାଟକରେ ବହୁସ୍ଥଳରେ ପଞ୍ଚସନ୍ଧି ସମନ୍ୱିତ ବୃତ୍ତର ପରିକଳ୍ପନା କରିଛନ୍ତି। ଗ୍ରାମାଞ୍ଚଳର ଦର୍ଶକମାନଙ୍କ ରୁଚିକୁ ବିଚାର କରି ସେ ବିଷୟ ନିର୍ବାଚନ କରିଛନ୍ତି। ଧର୍ମପ୍ରାଣ ଓ ଭାବପ୍ରବଣ

ପଲ୍ଲୀର ଦର୍ଶକମାନଙ୍କ ପାଇଁ ବିଷୟ ନିର୍ବାଚନ ବେଳେ ମୁଖ୍ୟତଃ ପୁରାଣ ଉପରେ ନିର୍ଭର କରିଛନ୍ତି। ବିଂଶ ଶତାବ୍ଦୀର ଚତୁର୍ଥ ଦଶକ ପର୍ଯ୍ୟନ୍ତ ଆଧୁନିକ ଓଡ଼ିଆ ନାଟକ ପୁରାଣ ଓ ଇତିହାସ ଅବଲମ୍ବିତ ଥିଲା। କୃଷ୍ଣପ୍ରସାଦ ପ୍ରାକ୍ ସ୍ୱାଧୀନତା କାଳର ନାଟ୍ୟକାର ହୋଇଥିବାରୁ ତାଙ୍କ ନାଟକର ବିଷୟବସ୍ତୁ ମଞ୍ଚ ନାଟକ ପରି ପୁରାଣ ଓ ଇତିହାସ ନିର୍ଭର ଥିଲା।

ତାଙ୍କର ସମସାମୟିକ ବିଦଗ୍ଧ ନାଟ୍ୟକାର ଅଶ୍ୱିନୀ କୁମାର, ଭିକାରି ଚରଣ ଓ ଗୋଦାବରୀଶଙ୍କ ପରି ସେ ଯାତ୍ରା ନାଟକର ବିଷୟବସ୍ତୁ ଓଡ଼ିଶାର ଇତିହାସ, ରାମାୟଣ, ମହାଭାରତ ଓ ଭାଗବତ ଆଦିରୁ ସଂଗ୍ରହ କରିଛନ୍ତି। ତାଙ୍କ ନାଟକର ବହିରାବରଣରେ ଆଧୁନିକତାର ସ୍ପର୍ଶ ଥିଲେ ମଧ୍ୟ ଅନ୍ତରାତ୍ମାରେ ଏଗୁଡିକ ପାରମ୍ପରିକ ହୋଇ ରହିଛି। ତାଙ୍କ ପୌରାଣିକ ନାଟକଗୁଡିକରେ ତ୍ୟାଗ, ତିତିକ୍ଷା ଆଦି ମହନୀୟ ଭାବ ସହିତ ଧର୍ମ ଓ ଅଧର୍ମ ଦ୍ୱନ୍ଦ୍ୱର ଅବତାରଣା କରାଯାଇଛି।

ନିଜ ନାଟକଗୁଡିକରେ ଅଙ୍କ ଓ ଦୃଶ୍ୟ ବିଭାଜନ କ୍ଷେତ୍ରରେ କୃଷ୍ଣପ୍ରସାଦ କୌଣସି ନିର୍ଦ୍ଦିଷ୍ଟ ନୀତି ଅନୁସରଣ କରିନାହାନ୍ତି। ଅନ୍ୟାନ୍ୟ ମଞ୍ଚନାଟ୍ୟକାର ମାନଙ୍କ ପରି ଏ କ୍ଷେତ୍ରରେ ସେ ପ୍ରାଚ୍ୟ ଓ ପାଶ୍ଚାତ୍ୟ ରୀତିର ସମନ୍ୱୟ ଘଟାଇଛନ୍ତି।

କୃଷ୍ଣପ୍ରସାଦଙ୍କ ନାଟକଗୁଡିକ ମଧ୍ୟରୁ 'ଗୟାସୁର ବଧ', 'ଧ୍ରୁବ ଚରିତ', 'ବଭ୍ରୁବାହାନ', 'ଯଯାତି କେଶରୀ', 'ନାରାୟଣ ବସନ୍ତ', 'ଭୂୟାଁପୀଢ' ପାଞ୍ଚ ଅଙ୍କ ବିଶିଷ୍ଟ। 'ସୀତା ବନବାସ', 'ମେଘନାଦ ବଧ', 'ଶକୁନ୍ତଳା' ଓ 'ହରିଶ୍ଚନ୍ଦ୍ର ନାଟକ ତିନି ଅଙ୍କ ବିଶିଷ୍ଟ। 'ମୃଚ୍ଛକଟିକ' ଓ 'ବିଲ୍ୱମଙ୍ଗଳ' ଚାରି ଅଙ୍କ ବିଶିଷ୍ଟ। ରବୀନ୍ଦ୍ରନାଥଙ୍କ ସାଙ୍କେତିକ ନାଟକ ପରି 'ମିଠା ମହୁରା' କେବଳ ପନ୍ଦର ଗୋଟି ଦୃଶ୍ୟ ସମ୍ବଳିତ।

ତାଙ୍କ ଅଧିକାଂଶ ନାଟକର ଶେଷଭାଗ ଅଧିକ ଘଟଣା ସମ୍ବଳିତ ଓ ଚିତ୍ତାକର୍ଷକ। ବ୍ୟବସାୟିକ ଦୃଷ୍ଟିକୋଣରୁ ନାଟକ ଗୁଡିକ ଲିଖିତ ହୋଇଥିବାରୁ ଦର୍ଶକମାନଙ୍କୁ ମଞ୍ଚଆଡକୁ ଆକର୍ଷିତ କରିବା ପାଇଁ ଏ ପ୍ରକାର ପଦ୍ଧତି ଅନୁସୃତ ହୋଇଛି।

କୃଷ୍ଣ ପ୍ରସାଦଙ୍କ ନାଟକମାନଙ୍କରେ ଅବାନ୍ତର କଥାବସ୍ତୁର ଉପସ୍ଥାପନା ହେତୁ ମୂଳକଥାବସ୍ତୁର ଧାରା କୌଣସିଠାରେ ବ୍ୟାହତ ହୋଇଥିବାର ଦେଖାଯାଏ ନାହିଁ। କେବଳ କୃଷ୍ଣଚରିତରେ ଗୋପ ଓ ମଥୁରା ଲୀଳାର ପ୍ରଚୁର କଥାବସ୍ତୁକୁ ଅଙ୍ଗୀଭୂତ କରିବା ଫଳରେ ନାଟକର କଥାବସ୍ତୁର ଅଗ୍ରଗତି ଦର୍ଶକମାନଙ୍କ ପାଇଁ କ୍ଲାନ୍ତିକର ହୋଇଥାଏ।

ସଂସ୍କୃତ ନାଟ୍ୟାଦର୍ଶ ଅବଲମ୍ବନରେ 'କାରାମନ୍ଦିର', 'କୃଷ୍ଣଚରିତ', 'ମେଘନାଧ ବଧ', 'ମୃଚ୍ଛକଟିକ' ଓ 'ନାରାୟଣ ବସନ୍ତ' ଆରମ୍ଭରେ ନାଟ୍ୟକାର ପ୍ରସ୍ତାବନା ଦୃଶ୍ୟ ଦେଇଥିବା ବେଳେ ଅନ୍ୟାନ୍ୟ ନାଟକଗୁଡିକ ଏଥିରୁ ମୁକ୍ତ।

ପ୍ରାଚୀନ ନାଟକରେ ଦିଆଯାଉଥିବା 'ଭରତ ବାକ୍ୟ' ଭଳି କେତେକ ନାଟକ ଶେଷରେ କୃଷ୍ଣପ୍ରସାଦ ଅନୁରୂପ ପନ୍ଥା ଅବଲମ୍ବନ କରିଛନ୍ତି। 'କାରା ମନ୍ଦିର' ଶେଷରେ ନିୟତି କଣ୍ଠରେ କୃଷ୍ଣଙ୍କ ବନ୍ଦନା ଗାନ କରାଇଛନ୍ତି। 'କୃଷ୍ଣଚରିତ'ରେ ଭଗବଦ୍ ଗୀତାର ଶ୍ଳୋକକୁ ଭରତ ବାକ୍ୟ ଆକାରରେ ଦିଆଯାଇଛି। 'ଗୟାସୁର'ରେ ହରିବୋଲି ଧ୍ୱନି ଭିତରେ ଚରିତ୍ରମାନେ ମଞ୍ଚରୁ ବିଦାୟ ନେଇଛନ୍ତି। 'ବଭ୍ରୁବାହାନ'ରେ ଯବନିକା ପୂର୍ବରୁ ଦେବକନ୍ୟାମାନେ ଆକାଶରୁ ଗଙ୍ଗାଦେବୀଙ୍କ ସ୍ତୋତ୍ର ଗାନ କରିଛନ୍ତି।

ଦ୍ୱନ୍ଦ୍ୱ ନାଟକର ପ୍ରାଣ ସ୍ୱରୂପ। କଥାବସ୍ତୁର ଗତିଶୀଳତା ସଙ୍ଗେ ଦ୍ୱନ୍ଦ୍ୱ ନାଟକକୁ ଉପଭୋଗ୍ୟ ଓ ଆକର୍ଷଣୀୟ କରିଥାଏ। ଯେଉଁ ନାଟକରେ ଦ୍ୱନ୍ଦ୍ୱ ନଥାଏ ବା ଅଳ୍ପଥାଏ ସେଥିରେ ଅନ୍ୟାନ୍ୟ ଉପାଦାନ ପୁରି ରହିଥିଲେ ମଧ୍ୟ ତାହା ସଫଳ ନାଟକ ହୋଇପାରେ ନାହିଁ।[୧୩]

ଦ୍ୱନ୍ଦ୍ୱ ଦୃଷ୍ଟିରୁ ବିଚାର କଲେ ମଞ୍ଚ ନାଟକ ଓ ଯାତ୍ରା ନାଟକରେ କେତେକ ପ୍ରଭେଦ ଦେଖାଯାଏ। ଯାତ୍ରା ନାଟକରେ ବର୍ହିଦ୍ୱନ୍ଦ୍ୱ ଅଧିକ ଥାଏ। ଏହାର ଦର୍ଶକ ସ୍ୱଳ୍ପ ଶିକ୍ଷିତ ଓ ସଂଖ୍ୟାରେ ଅଗଣିତ। ସେମାନଙ୍କୁ କେତେ ଘଣ୍ଟା ପାଇଁ ମୁକ୍ତ ମଞ୍ଚରେ ଆବେଗପୂର୍ଣ୍ଣ ବାତାବରଣ ମଧ୍ୟରେ ରଖିବା ପାଇଁ ଓ ପରିବେଶକୁ ଜମକ୍‌ଦାର କରିବା ପାଇଁ ବାହ୍ୟଦ୍ୱନ୍ଦ୍ୱର ଅଧିକ ଆବଶ୍ୟକତା ଥାଏ। ଯୁଦ୍ଧ ଓ ମୃତ୍ୟୁ ଆଦି ମଞ୍ଚ ଉପରେ ନିଷିଦ୍ଧ ହୋଇଥିଲେ ମଧ୍ୟ ଯାତ୍ରା ନାଟ୍ୟକାର ଏ ଶୃଙ୍ଖଳା ମାନେ ନାହିଁ।

କୃଷ୍ଣପ୍ରସାଦ ତାଙ୍କ ନାଟକମାନଙ୍କରେ ଉଭୟ ପ୍ରକାର ଦ୍ୱନ୍ଦ୍ୱର ଅବତାରଣା କରିଛନ୍ତି।

'କାରାମନ୍ଦିର', 'କୃଷ୍ଣ ଚରିତ', 'ସୀତା ବନବାସ' ଆଦି ନାଟକରେ ଦୈବ ଶକ୍ତି ସଙ୍ଗେ ପୁରୁଷକାରର ସଂଘାତର ଚିତ୍ର ଦିଆଯାଇଛି। ନିଜର ମୃତ୍ୟୁ ନିଶ୍ଚିତ ଜାଣି ମଧ୍ୟ କଂସ ଦୈବ ବିରୋଧରେ ଦଣ୍ଡାୟମାନ। କଂସର ପରାଜୟରେ ଭାଗ୍ୟ ବଳବାନ ପ୍ରମାଣିତ ହୋଇଛି।

ବ୍ୟକ୍ତି ଯେତେବେଳେ ଅନ୍ୟ ବ୍ୟକ୍ତି ବା ଘଟଣା ସହିତ ସଂଘାତରେ ବ୍ୟାପୃତ ରହେ, ଏହି ସଂଗ୍ରାମ ବା ସଂଘାତ ଯେତେବେଳେ ଚରମ ସୀମାରେ ପହଞ୍ଚିଥାଏ ସେତିକିବେଳେ ଏକ ଅପ୍ରତିହତ ଦୈବ ଶକ୍ତିର ଉପସ୍ଥିତି ଅନୁଭବ କରିହୁଏ।

୧୩. Hudson– An introduction to the Study of Literature. P 199

ପୁରୁଷକାରର ପରାଜୟ ହୁଏ। ମଣିଷ ସେତେବେଳେ ଭାଗ୍ୟ ହସ୍ତରେ ଏକ କ୍ରୀଡ଼ନକ ହୋଇଯାଏ।[୧୪]

ନିଜେ କୌଣସି ଅପରାଧ ନକରି ମଧ୍ୟ ସତୀ ସୀତାଙ୍କୁ ଦାରୁଣ ଯନ୍ତଣା ଭୋଗ କରିବାକୁ ହୋଇଛି। 'ଶକୁନ୍ତଳା' ଓ 'ବଭ୍ରୁବାହାନ'ନାଟକରେ ଦୁର୍ବାସା ଓ ଗଙ୍ଗାଙ୍କ ଅଭିଶାପ ଫଳରେ ଦ୍ୱନ୍ଦ୍ୱ ସଂଗଠିତ ହୋଇଛି। ମହାଭାରତ ବିଜୟୀ ଅର୍ଜୁନଙ୍କୁ ବାଳକ ବଭ୍ରୁବାହାନ ନିକଟରେ ପରାଜୟ ବରଣ କରିବାକୁ ପଡିଛି। ସତ୍ୟନିଷ୍ଠ ଓ ଧର୍ମ ପ୍ରାଣ ହରିଶ୍ଚନ୍ଦ୍ରଙ୍କୁ ଚଣ୍ଡାଳର କାର୍ଯ୍ୟ କରିବାକୁ ପଡିଛି। ଶକୁନ୍ତଳାର ସ୍ୱପ୍ନ ସାକାର ହୋଇନାହିଁ। ଏସବୁ ନାଟକରେ ଅପରିମିତ ଦୈବ ବଳ ସହିତ ସୀମିତ ମାନବ ଶକ୍ତିର ସଂଘାତ ଘଟିଛି। ଶତଚେଷ୍ଟା କଲେ ମଧ୍ୟ ମଣିଷ ସେଥିରୁ ମୁକ୍ତି ପାଇ ପାରୁନାହିଁ।

ସମାଜ ଶକ୍ତି ସହିତ ବ୍ୟକ୍ତି ସତ୍ତାର ସଂଘାତର ଚିତ୍ର ଦେବାରେ କୃଷ୍ଣ ପ୍ରସାଦଙ୍କ ନାଟକର ସାଫଲ୍ୟ ସମସାମୟିକ ଓଡ଼ିଆ ମଞ୍ଚ ନାଟକ କ୍ଷେତ୍ରରେ ବିସ୍ମୟ ସୃଷ୍ଟି କରିଥାଏ। 'କୃଷ୍ଣ ଚରିତ'ରେ ସ୍ୱାଧୀନଚେତା କଂସ ବ୍ରାହ୍ମଣ୍ୟ ଧର୍ମାଚାର ଓ ଭାଗ୍ୟବାଦ ବିରୁଦ୍ଧରେ ସ୍ୱର ଉତ୍ତୋଳନ କରିଛି। 'ଗୟାସୁର' ନାଟକରେ ତ୍ରିପୁରାସୁର ମଧ୍ୟ ଅନୁରୂପ ସାମାଜିକ ଚଳଣୀକୁ ବିଲୋପ କରିବା ପାଇଁ ପ୍ରତିଜ୍ଞା କରୁଛି ଓ ମୃତ୍ୟୁ ପର୍ଯ୍ୟନ୍ତ ସଂଗ୍ରାମ କରିଯାଇଛି।

ପୌରାଣିକ ନାଟକମାନଙ୍କରେ ଚରିତ୍ରମାନଙ୍କୁ ନୀତି ଅନୀତିର ସଙ୍କଟ ମଧ୍ୟରେ ଗତି କରାଇ କଠୋର ପରୀକ୍ଷାର ସମ୍ମୁଖୀନ କରି ସେ ଅର୍ନ୍ତଦ୍ୱନ୍ଦ୍ୱର ବିମଳ ଚିତ୍ର ଅଙ୍କନ କରିଛନ୍ତି। 'କୃଷ୍ଣ ଚରିତ' ଓ 'କାରା ମନ୍ଦିର' ନାଟକରେ କଂସ ଚରିତ୍ର କଥା ବିଚାର କରାଯାଇ ପାରେ। କଂସ ବ୍ରାହ୍ମଣ୍ୟ ଧର୍ମାଚାରର ବିରୋଧ କରୁଛି, ଦେବତା ଓ ଭାଗ୍ୟକୁ ଉପହାସ କରି ପୁରୁଷକାରରେ ବିଶ୍ୱାସ କରୁଛି। ପୁଣି ସାମାନ୍ୟ ସଦ୍ୟଜାତ ଶିଶୁକୁ ଭୟ କରୁଛି, ଦୈବୀ ବାଣୀରେ ବିଶ୍ୱାସ କରି ଶିଶୁ ହତ୍ୟା କରୁଛି। ସେଇଭଳି 'ସୀତାବନବାସ'ରେ ସୀତା ନିର୍ବାସନ ପରେ ରାଜାର ଆଦର୍ଶ ଓ ସ୍ୱାମୀର କର୍ତ୍ତବ୍ୟବୋଧ ମଧ୍ୟରେ ଦ୍ୱନ୍ଦ୍ୱ, 'ବଭ୍ରୁବାହାନ'ରେ ପତିପ୍ରେମ ଓ ବାତ୍ସଲ୍ୟ ମମତାବୋଧର ଦ୍ୱନ୍ଦ୍ୱର ଚିତ୍ର ଚିତ୍ରାଙ୍ଗଦା ଚରିତ୍ରକୁ କରୁଣ କରି ଗଢି ତୋଳିଛି। ମାତୃଭକ୍ତି ଓ ରାଜାର ସ୍ୱାଭିମାନ ଭିତରେ ବଭ୍ରୁବାହାନର ମାନସିକ ଦ୍ୱନ୍ଦ୍ୱର ଚିତ୍ର ମଧ୍ୟ ଅନୁପମ ଭାବରେ ଫୁଟି ଉଠିଛି। କ୍ଷତ୍ରୀୟର ଅହଙ୍କାର ଓ ପୁତ୍ରପ୍ରେମର ଦୋଳାରେ ଅର୍ଜୁନ ପରି କର୍ତ୍ତବ୍ୟ ପରାୟଣ ପୁରୁଷ ପୁଙ୍ଗବ ମଧ୍ୟ ଦୋଦୁଲ୍ୟମାନ ହୋଇ ଉଠିଛନ୍ତି।

୧୪. R. Peacock– The Art of Drama, P 142

କୃଷ୍ଣ ପ୍ରସାଦଙ୍କ ନାଟକଗୁଡିକରେ ଉଭୟ ପଦ୍ୟ ଓ ଗଦ୍ୟ ବନ୍ଧ ସଂଳାପ ସଂଯୋଜନା କରାଯାଇଛି। ଯାତ୍ରା ସଂଳାପର ବିଶେଷତ୍ୱ ସମ୍ପର୍କରେ ଜଣେ ତତ୍ତ୍ୱବିଦ୍‌ଙ୍କ ମତ ଗ୍ରହଣ କରାଯାଇପାରେ। "ଯାତ୍ରାର ସଂଳାପ ଏପରି ହେବ ଯେ ସମସ୍ତେ ଯେପରି ଆନନ୍ଦରେ ବୁଝି ରସବୋଧ କରିବେ। ନାଟକ ଦେଖିବାକୁ ଆସି ତାହା ବୁଝିବାକୁ, ଆନନ୍ଦ ଲାଭ କରିବାକୁ ଯେପରି କାହାକୁ ଅଭିଧାନ ବ୍ୟାକରଣ ଆଡେଇବାକୁ ନହୁଏ।[୧୫] ସଙ୍ଗୀତର ଆବେଦନ ସାର୍ବଜନୀନ ହୋଇଥିବାରୁ ଆଗେ ଯାତ୍ରାରେ କେବଳ ପଦ୍ୟ ସଂଳାପ ଦିଆଯାଉଥିଲା। ବୈଷ୍ଣବ ପାଣି ଓ କୃଷ୍ଣପ୍ରସାଦ ବସୁ ଆଦି ପଦ୍ୟ ଭାଗ ଊଣା କରି ଗଦ୍ୟ ସଂଳାପର ବ୍ୟବହାର କଲେ। ପାରମ୍ପରିକ ଓଡ଼ିଆ ନାଟକରେ ଶୁଦ୍ଧ ଓ ପରିଚ୍ଛନ୍ନ ଗଦ୍ୟ ପ୍ରୟୋଗରେ କୃଷ୍ଣପ୍ରସାଦ ଥିଲେ ଅପ୍ରତିଦ୍ୱନ୍ଦୀ, ତାଙ୍କ ପୂର୍ବ ଓ ସମସାମୟିକ ଯାତ୍ରାକାରମାନଙ୍କ ଗୀତିନାଟ୍ୟ ଓ ଗୀତାଭିନୟରେ ଯେଉଁ ଗଦ୍ୟ ସଂଳାପଥିଲା ତାହା ସେଭଳି ବଳିଷ୍ଠ ଓ ଭାବସଂଚାରୀ ନଥିଲା। ମଞ୍ଚନାଟକରେ ଥିବା ଗଦ୍ୟଭଳି କୃଷ୍ଣପ୍ରସାଦ ନିଜ ନାଟକରେ ଗଦ୍ୟ ପ୍ରୟୋଗ କରିଗଲେ। ଏ ବିଷୟରେ ତାଙ୍କର ବକ୍ତବ୍ୟ ଏହିପରି "କେଉଁଦିନଠାରୁ ଗଦ୍ୟସାହିତ୍ୟ ଯାତ୍ରା ମଧ୍ୟରେ ସ୍ଥାନ ପାଇଲା ? ଏ ବିଷୟରେ ଯାଜପୁରିଆମାନେ ପ୍ରଥମ ପଥ ପ୍ରଦର୍ଶକ। ପରଦା ବାହାରେ ଖୋଲାଯାତ୍ରାର ନାଟକମାନଙ୍କ ମଧ୍ୟରେ ଗଦ୍ୟ ସାହିତ୍ୟର, ପ୍ରଥମ ପ୍ରକାଶ ହେଲା ଯାଜପୁରର 'ବିରଜା ଅପେରାରୁ' (ଝଙ୍କାର ପ୍ରଥମ ବର୍ଷ ୧୨ସଂଖ୍ୟା ପୃଷ୍ଠା ୧୦୫୩)

ତାଙ୍କ ସମସାମୟିକ ଅନ୍ୟ ଦଳମାନେ କୃଷ୍ଣପ୍ରସାଦଙ୍କ ଗଦ୍ୟ ସଂଳାପ ପ୍ରୟୋଗରେ କିଭଳି ପ୍ରଭାବିତ ହୋଇଥିଲେ ସେ ବିଷୟରେ ସେ ତାଙ୍କର ଆତ୍ମଜୀବନୀ 'ପଥଭ୍ରଷ୍ଟର ଜୀବନ କଥା'ରେ ଏଇଭଳି ମନ୍ତବ୍ୟ ପ୍ରଦାନ କରିଛନ୍ତି।

"ଆମ୍ଭମାନଙ୍କର ମୁକ୍ତ ପ୍ରାଙ୍ଗଣେ ଗଦ୍ୟ ସାହିତ୍ୟର ରଚନା ଓ ପରିକଳ୍ପନା ଦେଖି ହିଁ କତିପୟ କାବ୍ୟ ସଙ୍ଗୀତ ସମ୍ପ୍ରଦାୟମାନଙ୍କରେ କିଛି କିଛି ସଂସ୍କାର ଆରମ୍ଭ ହେଲା। ୰ ଗୋପାଳ ଦାଶ, ୰ ବାଳକୃଷ୍ଣ ମହାନ୍ତି ଓ କବି ବୈଷ୍ଣବ ପାଣିଙ୍କର ନାଟକରେ କିଛି କିଛି ଗଦ୍ୟ ସାହିତ୍ୟ ସଂଯୋଗ ରୀତି ଆରମ୍ଭ ହେଲା- କିନ୍ତୁ Dialogue ରଚନାର form ଏତେ ଉଶ୍ୱାସୀଆ ଗାମ୍ଭୀର୍ଯ୍ୟ ହୀନ ଭାବେ ଗତି କଲା ଯେ ବରଂ ସେ ରଚନା ସହସା ଆକାଶରୁ ଖସାଇ ଦେଇ ନାଟ୍ୟକଳାଟିକୁ ପାତାଳକୁ ଛାଟିଦେଲା।"

କୃଷ୍ଣପ୍ରସାଦଙ୍କ ପୌରାଣିକ ନାଟକଗୁଡ଼ିକରେ ପଦ୍ୟବନ୍ଧ ଓ ଅମିତ୍ରାକ୍ଷର ଛନ୍ଦର ସଂଳାପର ଆଧିକ୍ୟ ଥିବା ବେଳେ 'ମିଠାମହୁରା' ଓ 'ସମାଜଚିତ୍ର' ଆଦି ସାମାଜିକ

୧୫. କାଳୀଚରଣ ପଟ୍ଟନାୟକ– ମଞ୍ଚଧାରା, ପୃ ୧୪୨

ନାଟକରେ କେବଳ ଗଦ୍ୟ ସଂଳାପର ପ୍ରୟୋଗ ହୋଇଛି। ପୌରାଣିକ ନାଟକରେ ଯେଉଁଠି ଗଦ୍ୟର ପ୍ରୟୋଗ ହୋଇଛି ସେଠାରେ ଭାଷା ପରିଚ୍ଛନ୍ନ ଓ ଅଳଙ୍କାର ମଣ୍ଡିତ ହୋଇଛି। ଗଦ୍ୟ ମଧ୍ୟରେ କବିତାର ଅନ୍ତରୀଣ ପ୍ରବାହ କୃଷ୍ଣପ୍ରସାଦଙ୍କ ସଂଳାପର ବୈଶିଷ୍ଟ୍ୟ, ତାଙ୍କର କାବ୍ୟିକ ସଂଳାପ ସମସାମୟିକ ମଞ୍ଚ ନାଟ୍ୟକାରଙ୍କ ସଂଳାପଠାରୁ କୌଣସି ଗୁଣରେ କମ୍ ନୁହେଁ ବରଂ ଯଥେଷ୍ଟ ପ୍ରତିସ୍ପର୍ଦ୍ଧୀ। ବଭ୍ରୁବାହାନ ନାଟକରୁ ଗୋଟିଏ ଉଦାହରଣ ନିଆଯାଇ ପାରେ।

ଏ ଜୀବନେ ନୋହିବ ସାଧନ
ସୁମେରୁ ଟଳିବ ପଛେ ସିନ୍ଧୁ ଯିବ ଶୁଖି
ଖଣ୍ଡ ଖଣ୍ଡ ହୋଇ ଧରା ଯିବ ରସାତଳେ-
କ୍ଷତ୍ରୀୟ ମୁଁ ବିନା ଯୁଦ୍ଧେ ଦେବି ନାହିଁ ବାଜୀ
ଅସ୍ତ୍ରେ ଶସ୍ତ୍ରେ ହେବ ମୋର ପିତୃ ସମ୍ଭାଷଣ
ଶରପୁଷ୍ପେ ପୂଜିବି ମୁଁ ଜନକ ପୟର (୧/୩ ଦୃଶ୍ୟ)

ଅନୁରୂପ ଆଉ ଏକ ସଫଳ ଅମିତ୍ରାକ୍ଷର ସଂଳାପ 'ବଭ୍ରୁବାହାନ' ନାଟକରୁ।

ଫାଲ୍ଗୁନିର ବକ୍ଷଧାରା ଶୋଣିତ ତର୍ପଣ
ଅସ୍ତ୍ରାଘାତ ଯେତେଥର ହୋଇଛି ତୋ ଦେହେ,
ସ୍ତରେ ସ୍ତରେ ଲେଖା ଅଛି ବକ୍ଷରେ ମୋହର।
ଗଙ୍ଗାହୃଦ ତମାବୃତ ବିକଟ ଶ୍ମଶାନ
ଜଳୁଛି ମାତ୍ରକ ତହିଁ ପ୍ରତିହିଂସାନଳ,
ଶତ୍ରୁର ଶୋଣିତ ବିନା ନୋହିବ ତର୍ପଣ। (୩/୩ ଦୃଶ୍ୟ)

କରୁଣ ରସର ଅଭିବ୍ୟକ୍ତି ପାଇଁ କାବିକ୍ୟ ଭାଷା ଓ ଅମିତ୍ରାକ୍ଷର ଛନ୍ଦର ସଫଳ ପ୍ରୟୋଗ "କୃଷ୍ଣ ଚରିତ"କୁ ରସସିକ୍ତ କରିଛି। ତାଙ୍କର ନାଟକରେ ଚରିତ୍ରର ଅନ୍ତରୀଣ ଭାବ ଅନୁଯାୟୀ ସଂଳାପ ନିୟନ୍ତିତ ହୋଇଛି। ସଂଳାପକୁ ପ୍ରାକୃତିକ ଓ ଚରିତ୍ରମୁଖୀ କରିବାକୁ ଉର୍ଦ୍ଦୁ, ଇଂରାଜୀ, ବଙ୍ଗଳା ଆଦିଭାଷା ସହିତ ଆଦିବାସୀ ଭାଷାର ପ୍ରୟୋଗ କରାଯାଇଛି।

ସଂଳାପକୁ ପ୍ରାଣସ୍ପର୍ଶୀ କରିବା ପାଇଁ ବହୁ ସ୍ଥାନରେ କୃଷ୍ଣ ପ୍ରସାଦ ଢଗଢମାଳୀ, ପ୍ରବଚନ ଓ ରୁଢୀ ପ୍ରୟୋଗ କରିଛନ୍ତି। ଏହା ଫଳରେ ବାଚନିକ ଅଭିନୟ ଆମୋଦକର ହୋଇଛି। ହଜିଲା ବଳଦ ଖୋଜିଲା ଠାଇଁ (କାରାମନ୍ଦିର, ପୃ-୬୫) କୂଳରୁ ପଡିଲେ ବାପା ହାତରୁ ଖସିଲେ କଦଳୀ ଚୋପା (କାରା ମନ୍ଦିର ପୃ-୧୧୮) ମଦଘଡ଼ା କାମ

ସଜଲେ ଗଡ଼ଗଡ଼ା (ମିଠାମହୁରା ପୃ-୭୩) ମତେ ଦେଖିଲେ ମରେ ନା ମୋରି ନାଁକୁ ଡ଼ରେ (ଗୟାସୁର ବଧ) ଗୁଣ ଚିହ୍ନେ ଗୁଣି ଜହୁରା ଚିହ୍ନେ ମଣି (ମିଠା ମହୁରା ପୃ-୨୧) ଆଦିକୁ କେତେକ ଉଦାହରଣ ଭାବେ ଗ୍ରହଣ କରାଯାଇପାରେ। ଏସବୁର ବିଶିଷ୍ଟ ପ୍ରୟୋଗ ହୋଇଛି ସାମାଜିକ ଚରିତ୍ରମାନଙ୍କଠାରେ। ଭାଷାର ନିତ୍ୟ ବ୍ୟବହାର୍ଯ୍ୟତା ରକ୍ଷା କରିବାକୁ ଏହାର ଆବଶ୍ୟକତା ରହିଛି।

ଗଦ୍ୟ ସଂଳାପ ସଂଯୋଜନାରେ କୃଷ୍ଣପ୍ରସାଦ ଅସପତ୍ନ ପ୍ରତିଭାର ଅଧିକାରୀ। ସେ ଓଡ଼ିଆ ଯାତ୍ରାରେ ପ୍ରଥମ ଗଦ୍ୟସଂଳାପରେ ଶୁଦ୍ଧି ସମୃଦ୍ଧି କରି ଯାତ୍ରାର ବିକାଶକୁ ବିଶ୍ୱସ୍ତ ଓ ପ୍ରଶସ୍ତ କରି ତୋଳିଛନ୍ତି।[୧୬]

ତାଙ୍କର ପ୍ରତ୍ୟେକ ନାଟକ ଜଣେ ଦକ୍ଷ ଶିଳ୍ପୀର ପୋଖତ ହସ୍ତ ସ୍ପର୍ଶରେ ଅପୂର୍ବ ହୋଇ ଉଠିଛି। ଐତିହାସିକ ନାଟକଗୁଡିକର ସଂଳାପ ସ୍ଥଳ ବିଶେଷରେ ଓଜଃପୂର୍ଣ୍ଣ ଠାଏ ଠାଏ ଦାର୍ଶନିକ ଅନୁଚିନ୍ତନରେ ପରିପୂର୍ଣ୍ଣ ହେବା ବେଳେ ସାମାଜିକ ନାଟକର ସଂଳାପ ବ୍ୟଙ୍ଗାତ୍ମକ ଶୈଳୀରେ ସଂଯୋଜନା କରାଯାଇଛି।

ଅଧିକାଂଶ ସ୍ଥଳରେ ଦର୍ଶନ ତତ୍ତ୍ୱ ବୟାନ କରିବା ପାଇଁ ସଂଳାପକୁ ନାଟ୍ୟକାର ଅଯଥା ଦୀର୍ଘ କରିଛନ୍ତି। ଏଭଳି ବହୁ ଦୃଷ୍ଟାନ୍ତ 'କୃଷ୍ଣ ଚରିତ'ରୁ ଦିଆଯାଇପାରେ। ଉପନ୍ୟାସ ସୁଲଭ ବର୍ଣ୍ଣନାରେ ଏହି ସଂଳାପରେ ନାଟ୍ୟକାରଙ୍କ ପାଣ୍ଡିତ୍ୟ ପ୍ରକାଶିତ ହୋଇଥିଲେ ବି ଅଭିନୟ ଉପଯୋଗୀ ହୋଇନାହିଁ।

ନାଟକର ସଂଳାପ ପାଇଁ ବ୍ୟବହୃତ ଭାଷା ଯେ ଖାଲି ଭାବ ପ୍ରକାଶକ ନୁହେଁ ବରଂ ଗତି ସଂଚାରି ଏ କଥା ନାଟ୍ୟକାର ବିସ୍ମୃତ ହୋଇଯାଇଛନ୍ତି। ବେଳେବେଳେ ସଂଳାପ ଏପରି ସାହିତ୍ୟିକ ଓ ଦାର୍ଶନିକ ଭାବ- ସୂଚକ ହୋଇଛି ଯେ ଯାତ୍ରାର ଗ୍ରାମ୍ୟ ଅଭିନେତାମାନଙ୍କର ଅର୍ଥ ଅବବୋଧ ଓ ଉଚ୍ଚାରଣ କ୍ଷେତ୍ରରେ ବହୁ ସମସ୍ୟା ସୃଷ୍ଟି କରିବ।

**ଓଡ଼ିଆ ପାରମ୍ପରିକ ନାଟକରେ କୃଷ୍ଣପ୍ରସାଦଙ୍କ ସ୍ଥାନ**

ପ୍ରାକ୍‌ସ୍ୱାଧୀନତା କାଳ ଓଡିଶାର ଲୋକ ବୃତ୍ତ ଓ ବିଦଗ୍ଧ ବୃତ୍ତ ନାଟକ ପାଇଁ ଥିଲା ଗୁରୁତ୍ୱପୂର୍ଣ୍ଣ ସମୟ। ୧୮୭୭ ମସିହାରେ ଜଗମୋହନଙ୍କ 'ବାବାଜୀ' ଓ ୧୮୮୦ ମସିହାରେ ରାମଶଙ୍କରଙ୍କ 'କାଞ୍ଚିକାବେରୀ' ନାଟକର ସୃଷ୍ଟି ପରେ ଓଡିଆ ସମ୍ଭ୍ରାନ୍ତ ନାଟକ ବହୁ ବରେଣ୍ୟ ନାଟ୍ୟକାରଙ୍କ ସାଧନା ଫଳରେ ସମୃଦ୍ଧ ହେଲା । କାଳୀଚରଣଙ୍କ ଗାର୍ଲସ୍କୁଲ(୧୯୪୨), ଭାତ(୧୯୪୪) ପ୍ରକାଶ ପର୍ଯ୍ୟନ୍ତ ଓଡିଆ

୧୬. ଡଃ କିଶୋର ଚନ୍ଦ୍ର ସାହୁ- ଗଣକବି ନାଟ୍ୟାଚାର୍ଯ୍ୟ ଗୋପାଳ ଦାଶ (ଗବେଷଣା ନିବନ୍ଧ, ଉ. ବିଶ୍ୱବିଦ୍ୟାଳୟ)

ନାଟକ ମୁଖ୍ୟତଃ ପୌରାଣିକ ଓ ଐତିହାସିକ ବିଷୟବସ୍ତୁକୁ ନେଇ ଲେଖାଯାଇଥିଲା । ଆନନ୍ଦ ଦାନ ଥିଲା ସେ ସମୟର ନାଟକର ମୁଖ୍ୟ ପ୍ରବୃତ୍ତି। ବାବାଜୀ ନାଟକରେ ସାମାଜିକ ପ୍ରତିବଦ୍ଧତାର ଯେଉଁ ସ୍ୱର ଉଚ୍ଚାରିତ ହୋଇଥିଲା କାଳୀଚରଣଙ୍କ ରଚନାବଳୀରେ ତାହା ବଳିଷ୍ଠ ରୂପ ଲାଭ କଲା । ଅତ୍ୟଧିକ କଳ୍ପନା ପ୍ରବଣତା ଓ ଗୁଡାଏ ଆଦର୍ଶର ପ୍ରଚାର ପରିବର୍ତ୍ତେ ବାସ୍ତବତାର ସ୍ପର୍ଶରେ ଓଡିଆ ନାଟକ ମନୋଜ୍ଞ ହୋଇ ଉଠିଲା । ଅନ୍ୟ ଦିଗରେ ଲୋକ ବୃତ୍ତର ନାଟକ ବହୁକାଳରୁ ସୃଷ୍ଟି ହୋଇ ଲୋକ ରଂଜନ କରିଆସୁଥିଲେ ବି ପ୍ରାଚୀନ ରଚନା ଗୁଡିକର ଲିଖିତ ରୂପ ଏବେ ମିଳେ ନାହିଁ । ଦୋଳ ମଙ୍ଗରାଜ, ତ୍ରିଲୋଚନ ରାୟଗୁରୁ, ମାଗୁଣି ସାହୁ, ଧ୍ରୁବ ବାରିକ୍, ଉଦୟନାଥ ରାଉତ, ପଦ୍ମନାଭ, ଲୋକନାଥ, ଦ୍ୱାରିକା ମହାପାତ୍ର ଆଦି ଯାତ୍ରା ନାଟ୍ୟକାରଙ୍କର ରଚନା ଏବେ ଦୁଷ୍ପ୍ରାପ୍ୟ। ୧୮୬୮ ମସିହାରେ ରଘୁନାଥ ପରିଚ୍ଛାଙ୍କ ଗୋପୀନାଥ ବଲ୍ଲଭ ନାଟକ ପ୍ରକାଶ ପରେ ଜଗନ୍ନାଥ ପାଣିଙ୍କ ଛାନ୍ଦନାଟ୍ୟ (୧୮୩୬-୧୮୯୭) ରାଘବ ଚୌଧୁରୀ(୧୮୨୦-୧୮୮୩)ଙ୍କ ଗୀତାଭିନୟ, କବି କୃଷ୍ଣକାନ୍ତ ଦାଶ(୧୮୩୮-୧୯୦୩)ଙ୍କ ଗୀତି ନାଟ୍ୟ ଆଦି ମଧ୍ୟରେ ଲୋକ ନାଟକ ବିକାଶ ଉନ୍ମୁଖ ଅବସ୍ଥା ମଧ ଦେଇ ଚଉଦ କୁଳାଟର ଗୋପାଳ ଦାଶଙ୍କ 'ବ୍ରଜଲୀଳା' (୧୮୯୮) ସୃଷ୍ଟି ପର୍ଯ୍ୟନ୍ତ ଅଗ୍ରଗତି କରିଆସିଲା। ଏମାନଙ୍କ ସହିତ ଶଙ୍କର ମିଶ୍ର(ପୁରୀ), କୃପାସିନ୍ଧୁ ମିଶ୍ର(ମେଦିନିପୁର), ବଂଶୀବଲ୍ଲଭ ଗୋସ୍ୱାମୀ(ଭଦ୍ରକ), ହାଡିବନ୍ଧୁ ଦାସ ଓ ସନାତନ ପାଲା ଆଦି ଯାତ୍ରା, ତାମସା ରଚନା କରିଥିଲେ। ଏହି ଗୀତାଭିନୟ ଓ ଗୀତି ନାଟ୍ୟ ଆଦି ସେ ଦିନରେ ଅଗଣିତ ଦର୍ଶକ ମାନଙ୍କ ପାଇଁ ଆନନ୍ଦ ଦାନର ମୁଖ୍ୟ ମାଧମ ଥିଲା। କିନ୍ତୁ ଇଂରେଜୀ ଶିକ୍ଷା ଓ ପାଶ୍ଚାତ୍ୟ ନାଟ୍ୟାଦର୍ଶରେ ଉଦ୍‌ବୁଦ୍ଧ ହୋଇଥିବା ଶିକ୍ଷିତ ଶ୍ରେଣୀର ମାନସରେ ଏ ସବୁ ପ୍ରତି ଅଶ୍ରଦ୍ଧା ସେ ଦିନର ସମ୍ବାଦପତ୍ରରେ ପ୍ରକାଶିତ ହେଉଥିଲା । ଗୋଟିଏ ଦଶନ୍ଧିର ସମାଲୋଚନାକୁ ବିଚାରକୁ ନେଲେ ସେ ଦିନର ଲୋକ ନାଟକର ସ୍ୱରୂପ ସହଜରେ କଳନା କରାଯାଇ ପାରିବ।

୧) "ଇଦାନୀଂ କେବଳ ଗୋଟିଏ ମାତ୍ର ଦୋଷ ଦେଖାଯାଏ ଯେ ଏ ପର୍ବ ସମୟରେ ଲୋକେ କୁତ୍ସିତ ଶୃଂଗାର ଘଟିତ ଗୀତ ଗାୟନ କରି ବହୁତ ଲୋକଙ୍କୁ ବିରକ୍ତ କରନ୍ତି।"[୧୭]

୨) "ସମ୍ପ୍ରତି ଓଡିଶାରେ ଯାହା ଯାତ୍ରା ନାମରେ ଖ୍ୟାତ ହୋଇଛି ଓ ଯାହାକୁ ନିରୁପାୟ ହୋଇ ଭଦ୍ରଲୋକମାନେ ପର୍ବ ବିଶେଷରେ ଦେଖିବାକୁ ବାଧ ହୁଅନ୍ତି ତାହା ଅତ୍ୟନ୍ତ ଘୃଣିତ ଓ ତହିଁରେ ଓଡିଶାରେ ରୁଚିର ନିତ୍ୟାନ୍ତ କୁତ୍ସିତ ପରିଚୟ ପ୍ରାପ୍ତ ହୁଅଇ"।[୧୮]

୧୭. ଉତ୍କଳ ଦୀପିକା- ୭.୨.୧୮୬୯

୧୮. ତତ୍ରୈବ- ୩୧.୮.୧୮୭୨

୩) "ସଙ୍ଗୀତ କାହାକୁ ବୋଲାଯାଏ ଯାତ୍ରାବାଲାମାନେ ଜାଣନ୍ତି ନାହିଁ । କେବଳ ସଜବେଶ ହୋଇ ଗୁଡାଏ ପୋଥି ବୋଲନ୍ତି ଓ ନାନା ପ୍ରକାର କଦର୍ଯ୍ୟ ଓ ଭଣ୍ଡ ରୂପ ଦେଖାଇ ଓ ଅଶ୍ଳୀଳ ବାକ୍ୟ ଉଚ୍ଚାରଣ କରି ଦର୍ଶକ ମାନଙ୍କୁ ସନ୍ତୁଷ୍ଟ କରନ୍ତି।"[୧୯]

୪) "ଆଜିକାଲି ଆମ୍ଭମାନଙ୍କ ଦେଶରେ ଯେଉଁଭଳି ରୀତିରେ ଓଡିଆ ଯାତ୍ରା ହେଉଅଛି, ବାସ୍ତବରେ ଏବେ ସେ ମାନ ଭଦ୍ରମଣ୍ଡଳୀକୁ ଆଉ ଶୋଭା ପାଉନାହିଁ । ଏତେବେଳେ ଭଦ୍ରଲୋକମାନଙ୍କର କର୍ତ୍ତବ୍ୟ ଯେ, ଆମ୍ଭମାନଙ୍କ ଦେଶର ଯାତ୍ରାର ପ୍ରଥାକୁ ଶୀଘ୍ର ପରିବର୍ତ୍ତନ କରାନ୍ତୁ, ତା ନକଲେ କିଛି ଦିନପରେ 'ପାଣଯାତ୍ରା' ବୋଲି ସମସ୍ତେ ଘୃଣା କରିବେ।"[୨୦]

ଉପରୋକ୍ତ ସମାଲୋଚନାରୁ ତିନିଗୋଟି ବିଷୟରେ ସୂଚନା ମିଳେ। ସେ ସମୟର ଯାତ୍ରାରେ ଶୃଂଗାର ରସର ଆଧିକ୍ୟ, ଶସ୍ତା ରୁଚିହୀନ ହାସ୍ୟ ପରିବେଷଣ, ସଙ୍ଗୀତ ନାମରେ ଅସଙ୍ଗୀତର ପ୍ରୟୋଗ, ଶେଷରେ ଏସବୁକୁ ଦୂରକରି ଯାତ୍ରାରେ ସଂସ୍କାର ପାଇଁ ଚେଷ୍ଟା ଥିଲା ତିନିଗୋଟି ମୁଖ୍ୟ ବିଷୟ। ଏହି ପତ୍ରିକା ମାନଙ୍କରେ ଯାତ୍ରା ସଂସ୍କାର ପାଇଁ ଯତ୍ନବାନ ହେବାପାଇଁ ଶିକ୍ଷିତ ମଣ୍ଡଳୀଙ୍କୁ ନିବେଦନ କରାଯାଇଛି।

ଲୋକନାଟକ ଗୁଡିକ ଏ ପ୍ରକାର ସମାଲୋଚନାର ଶରବ୍ୟ ହେବାବେଳେ ଓଡିଶାରେ ବିଦଗ୍ଧ ନାଟକ ସୃଷ୍ଟି ହୋଇନଥିଲା । ସେତେବେଳେ ଓଡିଶାରେ ଯାତ୍ରା କହିଲେ ଜଗନ୍ନାଥ ପାଣିଙ୍କ ଛାନ୍ଦ ନାଟ୍ୟକୁ ବୁଝାଉଥିଲା। ସେଗୁଡିକରେ ଶୃଙ୍ଗାର ରସର ଆଧିକ୍ୟ ସଭ୍ୟ ରୁଚି ଅନୁକୂଳ ନଥିଲା।

ତାଙ୍କର 'ସୁଭଦ୍ରା ହରଣ'ରେ କାମ ଶାସ୍ତ୍ରରେ ଥିବା ପଦ୍ଧତି ଅନୁସାରେ 'ଚନ୍ଦ୍ରଚାଳନାର ବର୍ଣ୍ଣନା, ସମ୍ଭୋଗ ଶୃଂଗାର ପାଇଁ ନାୟିକାର ଉଲଗ୍ନ ଦେହ ପ୍ରଦର୍ଶନ କରିବା, ନାୟକ ନାୟିକାଙ୍କ ରତି ବର୍ଣ୍ଣନା ଆଦି ଯେ ନିମ୍ନ ରୁଚିର ଥିଲା ଏହା କହିବା ନିଷ୍ପ୍ରୟୋଜନ।

ସେତେବେଳର ରୁଚି ସମ୍ପନ୍ନ ପାଶ୍ଚାତ୍ୟ ଶିକ୍ଷାପ୍ରାପ୍ତ ଓଡିଶାର ଜନସମାଜ ଓ ଇଂରେଜ ଶାସକ ମାନଙ୍କର ପୁଚ୍ଛ ଧାରଣ କରି ଆସିଥିବା ବଙ୍ଗାଳୀ ଭଦ୍ରବ୍ୟକ୍ତି ଗଣ

---

୧୯. ଉତ୍କଳ ଦୀପିକା– ୨୮.୧୦.୧୮୭୬

୨୦. ବାଲେଶ୍ୱର ସମ୍ବାଦ ବାହିକା– ୧୧.୧୧.୧୮୮୦

ପାରମ୍ପରିକ ଲୋକନାଟକ ପ୍ରତି ଘୃଣାବ୍ୟଞ୍ଜକ ଦୃଷ୍ଟି ନିକ୍ଷେପ କରି ଜନରଂଜନ ମାଧ୍ୟମ ଭାବରେ ପାଶ୍ଚାତ୍ୟ ନାଟ୍ୟାଦର୍ଶ ପ୍ରଭାବିତ ଏକପ୍ରକାର ସମ୍ଭ୍ରାନ୍ତ ନାଟକ ଆଶା କରୁଥିଲେ । ସେତେବେଳକୁ ଓଡିଶାରେ ଇଂରେଜୀ ନାଟକର ଅଭିନୟ ସହିତ, ପାଶ୍ଚାତ୍ୟ ଆଦର୍ଶରେ ରଚିତ ବଙ୍ଗଳା ନାଟକମାନ ଅଭିନୀତ ହେଉଥିଲା । ତେଣୁ ନବରୁଚି ସମ୍ପନ୍ନ ଶିକ୍ଷିତ ଲୋକଙ୍କ ଆକାଙ୍କ୍ଷା ଥିଲା, ଓଡିଆରେ ଆଧୁନିକ ନାଟକ ଖଣ୍ଡିଏ ଲେଖାଯିବ ଯାହା ଦୁର୍ଗନ୍ଧ ଯାତ୍ରା ଠାରୁ ଉନ୍ନତ ହେବ ଏବଂ ସେଥିରେ ଉନ୍ନତ ରାଗ ରାଗିଣୀ ସମ୍ବଳିତ ସଙ୍ଗୀତ ପରିବେଷଣ କରାଯିବ, ସୁଆଙ୍ଗର ଶସ୍ତା ରଙ୍ଗରସ, ବ୍ୟକ୍ତିଗତ ଚରିତ୍ରକୁ ଆକ୍ଷେପ ଓ ବିଦ୍ରୁପୋକ୍ତି ଆଦୌ ନଥିବ ଏବଂ ସଂଳାପ ଉନ୍ନତ ଓ ବିଦଗ୍ଧ ମଣ୍ଡଳୀର ରୁଚିଗ୍ରାହ୍ୟ ହେବ । ଇତ୍ୟାଦି ।[୨୧]

ଉନବିଂଶ ଶତାବ୍ଦୀର ଶେଷ ପର୍ଯ୍ୟନ୍ତ ଯେଉଁ ସମ୍ଭ୍ରାନ୍ତ ନାଟକ ମାନ ଲେଖାଗଲା ତାହା ଲୋକମାନଙ୍କର ଉପରୋକ୍ତ ଆଶା ଆକାଙ୍କ୍ଷା ପୂରଣରେ ଅସମର୍ଥ ହୋଇଥିଲା । ଯାତ୍ରା ସଂସ୍କାର ପାଇଁ ଉଚ୍ଚଶିକ୍ଷିତ ଲୋକଙ୍କୁ ଆହ୍ୱାନ ଦିଆଗଲେ ମଧ୍ୟ,ଗୋପାଳଦାଶ ଓ ଜଗନ୍ନାଥ ପାଣି ଆଦିଙ୍କ ପରି ସ୍ୱଳ୍ପଶିକ୍ଷିତଙ୍କ ସ୍ତରରେ ଯାତ୍ରା ସୀମାବଦ୍ଧ ହୋଇରହିଗଲା । କୌତୁହଳର କଥା ଥିଲାଯେ ଯାତ୍ରା ସଂସ୍କାର ସମ୍ପର୍କରେ କରାଯାଉଥିବା ସମାଲୋଚନାର ଲେଖକ ଓ ପାଠକ ଉଭୟ ଥିଲେ ଆଧୁନିକ ଶିକ୍ଷିତ ଗୋଷ୍ଠୀ । ଯାତ୍ରା ସହିତ ପ୍ରକୃତ ସମ୍ପୃକ୍ତ ବ୍ୟକ୍ତିଙ୍କ ନିକଟରେ ଏ ବାର୍ତ୍ତା ପହଞ୍ଚୁ ନଥିଲା । ଶିକ୍ଷିତ ଲୋକେ ସିନା ଯାତ୍ରାକୁ ନାକଟେକି ଆଧୁନିକ ସମ୍ଭ୍ରାନ୍ତ ନାଟକ ଲେଖିବାକୁ ଆଗୁସାର ହେଲେ, ମାତ୍ର ଯାତ୍ରାର ଲୋକପ୍ରିୟତା ସମ୍ଭ୍ରାନ୍ତ ନାଟକରେ ନଥିଲା । ଏମାନେ ନିଜ ନାଟକକୁ ଲୋକପ୍ରିୟ କରିବା ପାଇଁ ମନୋରଂଜନ ଧର୍ମିତାକୁ ମୁଖ୍ୟ ପ୍ରବୃତ୍ତି ଭାବରେ ଗ୍ରହଣ କରିନେଲେ । ଯାତ୍ରାର ତଥାକଥିତ ଇତରତା ଏମାନଙ୍କୁ ମଧ୍ୟ ସ୍ପର୍ଶ କଲା । ଫଳରେ ସେଦିନର ସମ୍ଭ୍ରାନ୍ତ ନାଟକ ମଧ୍ୟ ସମାଲୋଚନାର ଶରାଘାତରେ ଜର୍ଜରିତ ହେଲା । ନାଟକ ରଚନା ପାଇଁ ଦୃଢ ପ୍ରତିଜ୍ଞ ରାମଶଙ୍କର ଲୋକମନର ଏ ପ୍ରତିକ୍ରିୟା ହେତୁ ୧୮୮୩ରେ 'କଳିକାଳ' ଲେଖିବାପରେ ଦୀର୍ଘ ଆଠବର୍ଷ କାଳ ନାଟକ ଲେଖିବାରୁ ନିବୃତ୍ତ ରହିଥିଲେ ।

ଉନବିଂଶ ଶତାବ୍ଦୀର ଶେଷ ଦଶକରେ 'ଇନ୍ଦ୍ରଧନୁ' ଓ 'ବିଜୁଳି' ବିବାଦ କାଳରେ ଆଧୁନିକ କାବ୍ୟ ସାହିତ୍ୟର ରୁଚିହୀନତାର ଯେଉଁ କଟୁ ସମାଲୋଚନା ହେଉଥିଲା ନାଟ୍ୟ ସାହିତ୍ୟ ସେ ବାୟୁମଣ୍ଡଳର ପ୍ରଭାବରୁ ମୁକ୍ତ ହୁଅନ୍ତା ବା କିପରି ।

୨୧. କୃଷ୍ଣମଣି ରାଉତ– ଓଡ଼ିଶାର ଥିଏଟର, ପୃ ୫

ତେଣୁ 'ବନବାଳା' ଓ 'କଳିକାଳ'ର ସୃଷ୍ଟି ପରେ ରାମଶଙ୍କର ମଧ୍ୟ ସାମାଜିକ ଅପଖ୍ୟାତିରୁ ମୁକ୍ତ ହୋଇନଥିଲେ। ଏ ବିଷୟରେ ସେ ନିଜେ ଲେଖିଛନ୍ତି, "ସାଧାରଣ ଲୋକେ ତ ନାଟକାଭିନୟ ର ମର୍ମ ଗ୍ରହଣ କରିବାକୁ ଏକାନ୍ତ ଅକ୍ଷମ, ତହିଁରେ ପୁଣି ଶିକ୍ଷିତ ସମ୍ପ୍ରଦାୟର ଲୋକେ କହୁଛନ୍ତି ଯେ, ନାଟକାଭିନୟ ଦ୍ୱାରା ଅମଙ୍ଗଳ ଛଡା ମଙ୍ଗଳ ନାହିଁ । ସେମାନଙ୍କର ମତ ଏହି ଯେ, ଓଡିଶାରେ ନାଟକାଭିନୟ କରିବା ଦ୍ୱାରା ଆଶାଭରସା ସ୍ୱରୂପ ଯୁବବୃନ୍ଦର ଇହକାଳ ଓ ପରକାଳ ଉଭୟ ନଷ୍ଟ କରିବାର ସୂତ୍ରପାତ ହୋଇଛି।"[୨୨]

ଊନବିଂଶ ଶତକର ଶେଷ ଦଶକର ଅନ୍ୟତମ ପ୍ରମୁଖ ନାଟ୍ୟକାର କାମପାଳ ମିଶ୍ରଙ୍କର 'ସୀତା ବିବାହ' ବହୁଜନପ୍ରିୟ ନାଟକ ହେଲେ ମଧ୍ୟ ସମୟର ରୁଚି ଅନୁକୂଳ ହୋଇ ନ ପାରିବାରୁ ସମାଲେଚନାର କଷଟିରେ ଉତୀର୍ଣ୍ଣ ହୋଇ ପାରିନାହିଁ । ବିଶ୍ୱନାଥ କରଙ୍କ ପରି ନିରପେକ୍ଷ ସମାଲୋଚକ ଏହି ନାଟକ ଉପରେ ଏହିପରି ମନ୍ତବ୍ୟ ପ୍ରଦାନ କରିଛନ୍ତି ।

"କାମପାଳ ବାବୁ ଭଞ୍ଜୀୟ ଅନୁକରଣରେ ଯେଉଁ ମଧୁଶଯ୍ୟା ରଚନା କରିଛନ୍ତି ତଦ୍‌ଦ୍ୱାରା ଦେଶର କି ମଙ୍ଗଳ ହେବ ? ରାମ ସୀତାଙ୍କର ପରସ୍ପର ଟଣା ଓଟରା, ପୁଣି ସୀତାଙ୍କ ମୁଖରେ 'ଫୁଲ ପାଖକୁ ଭ୍ରମର ଯାଏନା ଭ୍ରମର ପାଖକୁ ଫୁଲ ଯାଏ' ସଂଳାପ ଏ ସବୁ ଦୃଶ୍ୟ ପିତା କନ୍ୟା ଭାଇ ଭଗିନୀ ଏକତ୍ର ବସି ଦେଖି ପାରିବେ ତ।"[୨୩]

ବିଂଶ ଶତାବ୍ଦୀର ଚତୁର୍ଥ ଦଶକ ପର୍ଯ୍ୟନ୍ତ ଓଡିଆ ସମ୍ଭ୍ରାନ୍ତ ନାଟକ ମନୋରଂଜନ ଧର୍ମିତାର ପ୍ରଲୋଭନରୁ ମୁକ୍ତ ହୋଇପାରିନାହିଁ। ଭିକାରୀ ଚରଣଙ୍କ 'ନନ୍ଦିକେଶ୍ୱରୀ' ନାଟକରେ ଭୃତ୍ୟ ଓ ଦାସୀମାନଙ୍କ ମଧ୍ୟରେ ସଙ୍ଗୀତ ଓ ପ୍ରେମାଳାପ ଯାତ୍ରାର ଅଶ୍ଳୀଳତାର ସମଧର୍ମ ହୋଇ ଉଠିଛି। ନାଟ୍ୟକାର ଅଶ୍ୱିନୀ କୁମାରଙ୍କ ଐତିହାସିକ ନାଟକରେ ଉଚ୍ଚବର୍ଣ୍ଣର ଚରିତ୍ର ମାନଙ୍କ ଠାରେ ଅତି ନିମ୍ନ ସ୍ତରର ପ୍ରଣୟ ଚିତ୍ର ଦିଆଯାଇଛି। ଅନେକ ସମୟରେ ସେ ଚରିତ୍ର ମାନଙ୍କୁ ଜବରଦସ୍ତ ପ୍ରେମ କରାଇଛନ୍ତି। 'ଭଂଜଭୁଜଙ୍ଗ'ର ବସନ୍ତ ଓ ନୀଳକଣ୍ଠ, 'ଗୋବିନ୍ଦ ବିଦ୍ୟାଧର'ର କାଲୁୟ ଓ କଥରୁୟ ଦେବଙ୍କୁ ରୁଚି ଗର୍ହିତ ପ୍ରେମର ବିଗ୍ରହ ଭାବରେ ଉପସ୍ଥାପିତ କରାଯାଇଛି। ସାଧାରଣ ଜନପ୍ରିୟତା ପାଇଁ ଏ ସମୟର ପ୍ରତ୍ୟେକ ଅଭିଜାତ ନାଟ୍ୟକାର ଯୁବକ ଓ ଯୁବତୀଙ୍କର ପ୍ରଣୟ ଚିତ୍ର ଦେଖାଇ ମନୋରଂଜନ କରିବାର ଚେଷ୍ଟା କରିଛନ୍ତି।

---

୨୨. ରାମଶଙ୍କର ରାୟ– ରାମଶଙ୍କର ଗ୍ରନ୍ଥାବଳୀ, ପୃ ୧୯୭

୨୩. ଉତ୍କଳ ସାହିତ୍ୟ ୩/୧୨, ପୃ ୨୭୫

ସବୁଠାରୁ ବିସ୍ମୟର କଥା ଯେ, ଲୋକନାଟକରେ ଏସବୁର ବ୍ୟତିକ୍ରମ ଦେଖାଯାଏ । ଜଗନ୍ନାଥ ପାଣିଙ୍କ ରୁଚିହୀନ ନାଟ୍ୟଧାରା ଗୋପାଳ ଦାଶ ଓ ବୈଷ୍ଣବ ପାଣିଙ୍କ ସମୟକୁ ଅନେକାଂଶରେ ପରିବର୍ତ୍ତିତ ହୋଇଯାଇଛି। ହେଲେ ମଧ୍ୟ, କୃଷ୍ଣପ୍ରସାଦଙ୍କ ସମସାମୟିକ ଅନ୍ୟାନ୍ୟ ଲୋକନାଟ୍ୟକାର ବୃନ୍ଦ, ଗୋପାଳ ଦାଶ, ବୈଷ୍ଣବ ପାଣି, ବାଳକୃଷ୍ଣ ମହାନ୍ତି ଆଦି ନିଜର ଗୀତାଭିନୟ, ଗୀତିନାଟ୍ୟ ଓ ଯାତ୍ରା ନାଟକରେ ଶୃଂଗାର ରସ ପରିବେଷଣ କାଳରେ କୁଚ, କଟୀ, ଜଘନ, ରତିରଙ୍ଗ କେଳି ସଦନ, ଚୁମ୍ବନ ଓ ପ୍ରେମ ନିବେଦନକୁ ଛାଡିପାରି ନାହାନ୍ତି।

ବିଦଗ୍ଧ ନାଟକ ଠାରୁ ଲୋକନାଟକ ପର୍ଯ୍ୟନ୍ତ ପ୍ରତ୍ୟେକ ନାଟକରେ ଲୋକପ୍ରିୟତା ପାଇଁ ନାଟ୍ୟକାର ମାନେ ଶୃଂଗାର ରସ ପରିବେଷଣ କାଳରେ ରୁଚି ଗର୍ହିତ ପନ୍ଥାର ଆଶ୍ରୟ ନେଇଛନ୍ତି। ଶସ୍ତା ହାସ୍ୟ ରସ ପରିବେଷଣ ସେ ସମୟରେ ଏକ ରୀତିରେ ପରିଣତ ହୋଇଛି। କିନ୍ତୁ କବିମଞ୍ଜୁଳଙ୍କ ନାଟକାବଳୀ ଏ ସବୁର ଏକ ବ୍ୟତିକ୍ରମ, ସେ ହାସ୍ୟରସର ପରିବେଷଣ ପାଇଁ ଇତରତାର ଆଶ୍ରୟ ନନେଇ ସୂକ୍ଷ୍ମ ବ୍ୟଙ୍ଗ ଧର୍ମିତାର ପଥ ବାଛି ନେଇଛନ୍ତି। ମନୋରଂଜନ ଓ ଜନପ୍ରିୟତାପାଇଁ ସୌନ୍ଦର୍ଯ୍ୟ ଓ ମାଧୁର୍ଯ୍ୟବୋଧକୁ ସମ୍ପୂର୍ଣ୍ଣ ଅବହେଳା କରି ନାହାନ୍ତି। କୌଣସି ଗୋଟିଏ ହେଲେ ବସୁନାଟକରେ ଶୃଙ୍ଗାର ଅଙ୍ଗୀ ରସ ଭାବରେ ଗ୍ରହଣ କରାଯାଇନାହିଁ। ଦୀର୍ଘ ଅର୍ଦ୍ଧ ଶତାବ୍ଦୀର ବିଦଗ୍ଧ ନାଟ୍ୟ ପରମ୍ପରା ଓ ଶତାବ୍ଦୀ ବ୍ୟାପି ଲୋକନାଟକ ପରମ୍ପରାରେ କୃଷ୍ଣପ୍ରସାଦଙ୍କ ଭଳି ଜଣେ ସଂଯତ ଓ ସୌନ୍ଦର୍ଯ୍ୟ ସଚେତନ ଶିଳ୍ପୀ ବାସ୍ତବରେ ବିରଳ।

ଶସ୍ତା ଜନପ୍ରିୟତା ଓ ମନୋରଂଜନ ପାଇଁ ଶୀଳର ମହାନ ଆଦର୍ଶକୁ ବଳୀ ଦେଇ ନାହାନ୍ତି। ନାଟକ ରଚନା ଓ ପରିବେଷଣ କ୍ଷେତ୍ରରେ ସଂଯମର ବନ୍ଧୁର ପଥକୁ ଆଦରରେ ଗ୍ରହଣ କରି ନେଇଛନ୍ତି। ତାଙ୍କର ସମଗ୍ର ସୃଷ୍ଟିରେ ତେଣୁ ନୀତିବୋଧ ସହିତ ନାନ୍ଦନିକତାର ଅପୂର୍ବ ସମନ୍ୱୟ ସ୍ଥାପିତ ହୋଇଛି।

ଯାତ୍ରା ନାଟକର ସଫଳତା ଅନେକାଂଶରେ ସଙ୍ଗୀତ ଉପରେ ନିର୍ଭରଶୀଳ। ଊନବିଂଶ ଶତକର ଶେଷ ପର୍ଯ୍ୟନ୍ତ ଯାତ୍ରାରେ ଗଦ୍ୟ ସଂଳାପ ଆଦୌ ନଥିଲା। ସଙ୍ଗୀତ ହିଁ ଥିଲା ଭାବପ୍ରକାଶର ମାଧ୍ୟମ । ବିଂଶ ଶତାବ୍ଦୀର ଆରମ୍ଭରୁ ମଞ୍ଚ ନାଟକ ପ୍ରଭାବରେ ଯାତ୍ରାରେ ଗଦ୍ୟ ସଂଳାପର ପ୍ରୟୋଗ ଆରମ୍ଭ ହେଲା। ଏହା ପୂର୍ବରୁ ଗୋପୀନାଥ ବଲ୍ଲଭ ନାଟକରେ ଗଦ୍ୟର ବ୍ୟବହାର ହୋଇଥିଲେ ମଧ୍ୟ ତାକୁ ଯାତ୍ରା ବା ନାଟକ ଭାବରେ ଗ୍ରହଣ କରାଯିବାରେ ମତପାର୍ଥକ୍ୟ ରହିଛି। ଜଗନ୍ନାଥ ପାଣିଙ୍କ ଛାନ୍ଦ ନାଟକ ଗୁଡିକରେ ଜଟିଳ ସ୍ୱର ବିନ୍ୟାସ ଥିଲା। ଗୋପାଳ ଦାଶ ତାଙ୍କ ନାଟକରେ ମଧ୍ୟଯୁଗୀୟ

ରାଗରାଗିଣୀର ପ୍ରୟୋଗ କରିଗଲେ। ଗଣକବିଙ୍କର ସଙ୍ଗୀତ ପଦ୍ଧତି ଥିଲା ଅଭିନବ। ପ୍ରାଚୀନ ରାଗରାଗିଣୀ ସହ ସେ ଲୋକଛନ୍ଦକୁ ମିଶାଇଦେଲେ। ତାହା ଶାସ୍ତ୍ରସମ୍ମତ ନହେଲେବି ତାର ତତ୍‌କାଳୀନ ଆବେଦନ ଯାଦୁକରୀ ଥିଲା । ଆଧୁନିକ ରୁଚିକୁ ନେଇ ଶାସ୍ତ୍ରସମ୍ମତ ସଙ୍ଗୀତ ସେତେବେଳେ ସୃଷ୍ଟି ହୋଇପାରିନଥିଲା। ଆବଦ୍ଧ ମଞ୍ଚ ନାଟକର ସଙ୍ଗୀତ ଗୁଡିକ ସେ ସମୟରେ ପାଣ୍ଡିତ୍ୟପୂର୍ଣ୍ଣ ଥିଲେବି ଲାଳିତ୍ୟ ବିହୀନ ଥିଲା । ଗୋଦାବରୀଶ ମିଶ୍ରଙ୍କୁ ଛାଡିଲେ ଅନ୍ୟ କେହି ନାଟ୍ୟକାର କବି ପ୍ରତିଭାର ଅଧିକାରୀ ନଥିଲେ । ତାଙ୍କର ଦୁଇଖଣ୍ଡ ନାଟକ ଉତ୍କଳର ଜାତୀୟତା ପ୍ରସାର ଉଦ୍ଦେଶ୍ୟରେ ଲେଖାଯାଇଥିବାରୁ ସେଥିରେ ତାଙ୍କ କବି ପ୍ରତିଭାର ଉପଯୁକ୍ତ ବିନିଯୋଗର ସୁଯୋଗ ନଥିଲା। କାଳୀଚରଣଙ୍କ ଆଗମନ ପର୍ଯ୍ୟନ୍ତ ଓଡିଆ ମଞ୍ଚନାଟକରେ ସଙ୍ଗୀତର ଦାରିଦ୍ର୍ୟ ଅତି ସହଜରେ ଧରାପଡି ଯାଉଥିଲା।

"ଜଣେ ପ୍ରତିଭାଶାଳୀ ନାଟ୍ୟକାର ମଧ୍ୟରେ କ୍ରାନ୍ତିଦର୍ଶୀ କବିତ୍ୱର ସ୍ଥିତି ତାହାର ପ୍ରକାଶ ଭଙ୍ଗୀକୁ ଅଧିକ ଦୀପ୍ତିମନ୍ତ, ଶାଣିତ ଭାଷାକୁ ଦାର୍ଶନିକ, ମାର୍ମିକ ତଥା ଅନ୍ତର୍ବିଶ୍ଳେଷଣକୁ ଅଧିକ ଗଭୀର ଅନୁଭୂତିଶୀଳ ଏବଂ ମାନବିକ ରୂପ ଦେବାରେ ସହାୟକ ହୋଇଥାଏ।"[୨୪] କୃଷ୍ଣପ୍ରସାଦ ଯଥାର୍ଥରେ ଥିଲେ ଜଣେ କ୍ରାନ୍ତି ଦର୍ଶୀ କବି। ତେଣୁ ତାଙ୍କ ନାଟକର ସଂଗୀତ ଗୁଡିକ ଏକ ଦିଗରେ ଯେଉଁଭଳି ଶାସ୍ତ୍ରୀୟ ଅନୁଶାସନକୁ ମାନିନେଲା ଅନ୍ୟ ଦିଗରେ ତାହା କବିତ୍ୱର ଅମଳିନ ଦୀପ୍ତିରେ ମହିମା ମଣ୍ଡିତ ହୋଇ ଉଠିଲା। ସେ କାଳରେ ସେ ଯାତ୍ରାକାର ମାନଙ୍କୁ ଶାସ୍ତ୍ରୀୟ ସଙ୍ଗୀତ ପଦ୍ଧତି ଅନୁସରଣ କରିବାକୁ ଉପଦେଶ ଦେଉଥିଲେ।

କୃଷ୍ଣପ୍ରସାଦଙ୍କ ସମ୍ପର୍କରେ ବଡ ଲହଙ୍ଗା ଯାତ୍ରା ପାର୍ଟିର ଓସ୍ତାଦଙ୍କ ମନ୍ତବ୍ୟକୁ ଉଦ୍ଧାର କରାଯାଇପାରେ।

"ଯାଜପୁରର କବିମଞ୍ଜୁଳ କୃଷ୍ଣପ୍ରସାଦ ବସୁଙ୍କ ସହିତ ମୋର ପରିଚୟ ଥିଲା। ସେ ତାଙ୍କର ସମଗ୍ର ଜୀବନ ପାଲା, ଯାତ୍ରା ଓ ନାଟକ ଅଭିନୟରେ ଅତିବାହିତ କରିଛନ୍ତି । ତାଙ୍କର ପାଲା, ଯାତ୍ରା ଓ ନାଟକ ଉଚ୍ଚକୋଟୀର ଏବଂ କାବ୍ୟିକ ମର୍ଯ୍ୟାଦାପୂର୍ଣ୍ଣ। ଦିନେ ସ୍ୱୟଂ ବସୁ ମହୋଦୟ ମୋ ଯାତ୍ରା ଦେଖିବାକୁ ଆସିଲେ, ଶେଷ ପର୍ଯ୍ୟନ୍ତ ଯାତ୍ରା ଦେଖିଲେ। ଗଲାବେଳେ କହିଗଲେ- "ସ୍ୱାଇଁ ଏ ଯାତ୍ରା ଭଲ ସଜେଇଛ, ହେଲେ ତମେ ଟିକିଏ 'ଭାତଖଣ୍ଡେ' ପଢ, ଚର୍ଚ୍ଚା ଆଲୋଚନା କର।"[୨୫]

---

୨୪. ହେମନ୍ତ କୁମାର ଦାସ– ଗୋଦାବରୀଶ ପରିକ୍ରମା, ପୃ ୭୫/୭୬

୨୫. ଦୟାନନ୍ଦ ସ୍ୱାଇଁ– ନବପତ୍ର (ରାଉରକେଲା) ପୃ ୨୩/୨୪

ଅନ୍ୟମାନଙ୍କୁ ଉପଦେଶ ଦେବା ସଙ୍ଗେ ସଙ୍ଗେ ସେ ନିଜେ ଶାସ୍ତ୍ରୀୟ ସଙ୍ଗୀତ ପ୍ରତି ଅନୁରକ୍ତ ହୋଇ ନିଜ ଦଳର ଅଭିନୟ କାଳରେ ଏହାକୁ ପ୍ରୟୋଗ କରୁଥିଲେ। ତାଙ୍କର ନାଟକ ଗୁଡିକ ସଙ୍ଗୀତ ସଂଯୋଜନାରେ କାବ୍ୟିକ ମର୍ଯ୍ୟାଦାପୂର୍ଣ୍ଣ ହୋଇ ଉଠିଥିଲା। ଜଣେ ଗୀତିକାର ଭାବରେ ସେ ନିଜ ସମୟରେ ଅତ୍ୟନ୍ତ ଲୋକପ୍ରିୟ ହୋଇ ଉଠିଥିଲେ। ଅନ୍ୟ ନାଟ୍ୟକାରମାନେ ତାଙ୍କ ନାଟକର ସଙ୍ଗୀତ ଲେଖିବାକୁ କୃଷ୍ଣପ୍ରସାଦଙ୍କୁ ଅନୁରୋଧ କରୁଥିଲେ। ନାଟ୍ୟକାର କାର୍ତ୍ତିକ କୁମାର ଘୋଷ ତାଙ୍କର 'ମାତୃପୂଜା' ନାଟକରେ କୃଷ୍ଣପ୍ରସାଦଙ୍କ ଯାତ୍ରା ନାଟକର ଏକାଧିକ ସଂଗୀତକୁ ପ୍ରୟୋଗ କରିଯାଇଛନ୍ତି। 'ମାତୃପୂଜା'ର 'କେତେ ରଙ୍ଗେ ସଜାଇଛୁ ବଜାର', ' ତୋର କରମେ ଯେବେ ନାହିଁରେ ସୁଖ ଖୋଜିଲେ କି ହେବ' ଆଦି ସଙ୍ଗୀତ ଗୁଡିକ କବିମଞ୍ଜୁଳଙ୍କ ପ୍ରକାଶିତ ଫୁଲହାର ସଙ୍ଗୀତ ସ୍ତବକର ଅନ୍ତର୍ଭୁକ୍ତ। ସଙ୍ଗୀତକାର ଭାବରେ ତାଙ୍କର ଜନପ୍ରିୟତା ପାଇଁ ଓଡିଆ ପ୍ରାଚୀନ କଥାଚିତ୍ର ଶ୍ରୀ ଜଗନ୍ନାଥ ରେ ସେ ଏକାଧିକ ସଂଗୀତ ରଚନା କରିବାର ସୁଯୋଗ ଲାଭ କରିଥିଲେ ।

ସମୟ ଉପଯୋଗୀ ସ୍ୱର ବିନ୍ୟାସ ଓ ଲଳିତ ଶବ୍ଦ ଗୁମ୍ଫନରେ ତାଙ୍କର ସଂଗୀତ ଗୁଡିକ ଅପୂର୍ବ ଭାବତନ୍ମୟତାରେ ଶ୍ରୋତାଙ୍କୁ ମୁଗ୍ଧ କରିଛି। ତାଙ୍କର ସଙ୍ଗୀତରେ ଶିଳ୍ପୀ ପ୍ରାଣର ସ୍ୱଚ୍ଛ ପରିପ୍ରକାଶ ଘଟିଛି। ତେଣୁ ତାହା ଅନନ୍ତ କାଳ ପାଇଁ ଶ୍ରୋତାର ପ୍ରାଣକୁ ପ୍ରଶାନ୍ତିରେ ପରିପୂର୍ଣ୍ଣ କରୁଥିବ।

ବସୁ ସଙ୍ଗୀତର ଅଲଙ୍ଘନୀୟ ପ୍ରଭାବରେ ତନ୍ମୟ ହୋଇ ନାଟ୍ୟକାର ଭୁବନେଶ୍ୱର ମହାପାତ୍ର କହି ଉଠିଲେ– "ଆରେ ଯେ, ବାୟାଟା ଫେରିଆ ଫେରିଆ, ଏ ଗୀତଟି ସହିତ ଆମ ଦେଶର ପ୍ରାୟ ଅଧିକାଂଶ ଜନତା ବୋଧହୁଏ ପରିଚିତ ଥିବେ। ଏହାର ଗୀତିକାର ହେଲେ ଆଧୁନିକ ଯାତ୍ରା ସାହିତ୍ୟର ଅନ୍ୟ ଏକ ସଂସ୍କାର ଧର୍ମୀ ପ୍ରବର୍ତ୍ତକ ଯାଜପୁରର କୃଷ୍ଣପ୍ରସାଦ ବସୁ। ତାଙ୍କର ନିଜର ଯାତ୍ରା ଦଳ ଥିଲା ଓ ସେ ନିଜେ ଯାତ୍ରାରେ ଗୁରୁତ୍ୱପୂର୍ଣ୍ଣ ଭୂମିକାରେ ଅଭିନୟ କରୁଥିଲେ। ତାଙ୍କର ଯାତ୍ରାଦଳ ବାଲେଶ୍ୱରରୁ ବଙ୍ଗୀୟ ନାଟକର ପ୍ରଭାବ ଦୂର କରିବାକୁ ସମର୍ଥ ହୋଇଥିଲା। ଓଡିଶାର ଯାତ୍ରା ସାହିତ୍ୟ ଯେତେଦିନ ବଞ୍ଚିଥିବ, ନାଟ୍ୟକାର କୃଷ୍ଣପ୍ରସାଦଙ୍କର ଅକ୍ଷୟ ସ୍ମୃତି ସେତେଦିନ ଓଡିଶାର ଜନଚେତନାକୁ ଉଦ୍‌ବୁଦ୍ଧ କରୁଥିବ। ଏଥିରେ ସନ୍ଦେହର ଅବକାଶ ନାହିଁ।"[୨୬]

ସଙ୍ଗୀତକୁ ବାଦ ଦେଇ କୃଷ୍ଣପ୍ରସାଦଙ୍କ ନାଟକର ବିଚାର କରାଯାଇ ପାରିବ ନାହିଁ। ସଙ୍ଗୀତହିଁ ତାଙ୍କ ନାଟ୍ୟ କଳାର ପ୍ରାଣଧର୍ମ, ଆଜି ତାଙ୍କର ନାଟକ ଗୁଡିକ ଜନ ମାନସରୁ

୨୬. ଭୁବନେଶ୍ୱର ମହାପାତ୍ର– ଓଡ଼ିଶାର ଯାତ୍ରା, ପୃ ୨୮

ବିସ୍ମୃତ ହେଲେ ମଧ୍ୟ, ନାଟକ ସମୂହରେ ପ୍ରଦତ୍ତ ସଙ୍ଗୀତ ଗୁଡିକ ଓଡିଆ ଗୀତି କବିତାର ଅକ୍ଷୟ ସମ୍ପଦ ରୂପେ ଆଦୃତ ହେଉଅଛି। ତାଙ୍କର 'ସଙ୍ଗୀତ ଫୁଲହାର' 'ପ୍ରସାଦ ପଦ୍ୟାବଳୀ ଓ ପରିକଳ୍ପନା', 'ପ୍ରସାଦ ଗୀତାବଳୀ'ର ଏକାଧିକ ସଂସ୍କରଣ ଏହାର ପ୍ରମାଣ ଦିଏ।

ଗତ ଶତାବ୍ଦୀର ଶେଷ ଆଡକୁ ଓଡିଆ ଯାତ୍ରା ସଂସ୍କାର ପାଇଁ ଚେଷ୍ଟା ଓ ଓଡିଆ ସମ୍ଭ୍ରାନ୍ତ ନାଟକ ରଚନାର ଶୁଭାରମ୍ଭ ଏକ ସମୟର ଘଟଣା। ଜଗମୋହନ, ରାମଶଙ୍କର, ଭିକାରି ଚରଣ, କାମପାଳ ଆଦି ଓଡିଆ ଭାଷାର ମଞ୍ଚ ନାଟକର ଦାରିଦ୍ର୍ୟ ଘୁଂଚାଇବା ପାଇଁ ଯତ୍ନଶୀଳ ହେବାବେଳେ, ଏଇ ସମୟରେ ଲୋକନାଟକ କ୍ଷେତ୍ରରେ ଜଗନ୍ନାଥ ପାଣି, ରଘୁନାଥ ପରିଛା, ଗୋପାଳ ଦାଶ ଆଦିଙ୍କ ପ୍ରବର୍ତ୍ତିତ ଓଡିଆ ଗୀତିନାଟ୍ୟ, ଛାନ୍ଦ ନାଟ୍ୟ ଆଦିର ଦିଗ ପରିବର୍ତ୍ତନ କରି ଆଧୁନିକ ରୁଚି ଅନୁସାରି କରିବାର ଚେଷ୍ଟା ହୋଇଥିବାର ଦେଖାଯାଏ। ୧୮୯୮ରେ ଗୋପାଳ ଦାଶଙ୍କ 'ବ୍ରଜଲୀଳା' ଗୀତାଭିନୟର ପ୍ରକାଶ ପରେ ୧୯୦୩ରେ ପ୍ରକାଶ ଲାଭକରେ କବି ବୈଷ୍ଣବ ପାଣିଙ୍କ ମେଘନାଦ ବଧ। ୧୯୪୦ ମସିହା ପର୍ଯ୍ୟନ୍ତ ସମୟ ମଧ୍ୟରେ ଏକ ଦିଗରେ ଓଡିଆ ବିଦଗ୍ଧ ନାଟକର ଆତ୍ମପ୍ରକାଶ ପାଇଁ ବ୍ୟାକୁଳତା ଲକ୍ଷ୍ୟ କରାଯିବାବେଳେ, ପାରମ୍ପରିକ ଗଣନାଟ୍ୟର ରୂପ ପରିବର୍ତ୍ତନ ମଧ୍ୟ ଏକ ଲକ୍ଷ୍ୟଣୀୟ ଘଟଣା।

ପୂର୍ବେ ଲୋକନାଟକମାନ ଅଭିନୀତ ହେଉଥିଲା ପଲ୍ଲୀ ଅଞ୍ଚଳରେ । କ୍ରମେ ନୂଆକରି ସହରମାନ ଗଢି ଉଠିବା ଓ ପଲ୍ଲୀନଗର ମଧ୍ୟରେ ଗମନା ଗମନର ସୁବିଧା ହେତୁ ଲୋକନାଟକ ସହରାଭିମୁଖୀ ହେବାକୁ ଲାଗିଲା । ନାଟ୍ୟକାର ଗୋପାଳ ଦାଶ, ବୈଷ୍ଣବ ପାଣି, ବାଳକୃଷ୍ଣ ମହାନ୍ତି ଓ କୃଷ୍ଣପ୍ରସାଦ ବସୁ ଆଦି ଯାତ୍ରା ନାଟ୍ୟକାର ମାନେ ନିଜ ନିଜର ଦଳ ନେଇ ବ୍ୟବସାୟିକ ସୁବିଧା ଦୃଷ୍ଟିରୁ ସହରକୁ ଯାଇ ନାଟ୍ୟ ପ୍ରଦର୍ଶନ କରିଥିଲେ। କଲିକତା ଯାଇ ଅଭିନୟ ପ୍ରଦର୍ଶନ କରିବା ଏମାନଙ୍କ ବାର୍ଷିକ କର୍ମସୂଚୀର ଅନ୍ତର୍ଭୁକ୍ତ ଥିଲା । ଏହା ଫଳରେ ଏମାନେ ସହରରେ ଥିବା ଆବଦ୍ଧ ମଞ୍ଚର ନାଟକ ଓ ଚଳଚିତ୍ର ଆଦି ସଂସ୍ପର୍ଶରେ ଆସୁଥିଲେ। ପୁଣି ସହରର ଆଧୁନିକ ରୁଚିସମ୍ପନ୍ନ ଶିକ୍ଷିତ ଓ ଚେତନଶୀଳ ଦର୍ଶକ ମାନଙ୍କର ଅଭିରୁଚିକୁ ନେଇ ନାଟ୍ୟ ପରିବେଷଣ କରିବାର ଆବଶ୍ୟକତା ମଧ୍ୟ ଅନୁଭବ କରୁଥିଲେ ।

ଏଇ ୪୦ ବର୍ଷ(୧୯୦୦-୧୯୪୦) ମଧ୍ୟରେ ଲୋକନାଟକ(ଯାତ୍ରା ନାଟକ)କୁ ସାମ୍ନା କରିବାକୁ ପଡିଲା ସମ୍ଭ୍ରାନ୍ତ ମଞ୍ଚନାଟକ ଓ ଯନ୍ତ୍ର ଚାଳିତ ସିନେମା ସହିତ । ଏଇ ସମୟର ନାଟ୍ୟ ସାହିତ୍ୟର ଇତିହାସ ହେଉଛି ମଞ୍ଚନାଟକ ଓ ପାରମ୍ପରିକ ନାଟକର ପ୍ରତିଷ୍ଠା ଓ ସ୍ଥିତି ସଂଗ୍ରାମର ଇତିହାସ।

ଏଇ ସମୟରେ କିନ୍ତୁ ମଞ୍ଚନାଟକ ଅପେକ୍ଷା ଦର୍ଶକମାନଙ୍କ ଆଦରଣୀୟ ଥିଲା ଗୀତିନାଟ୍ୟ ଓ ଗୀତାଭିନୟ ଆଦି ଲୋକ ନାଟକ। ଏହି ପାରମ୍ପରିକ ନାଟକର କଳାତ୍ମକତା ଓ ସ୍ୱତଃସ୍ଫୂର୍ତ୍ତତା ନଥିଲା ମଞ୍ଚନାଟକରେ। କଳାର କୋମଳ ସ୍ପର୍ଶ ଅଭାବରୁ ମଞ୍ଚନାଟକ ଗୁଡ଼ିକ ପ୍ରଚାରଧର୍ମୀ ହୋଇ ଉଠିଥିଲା।

ଓଡ଼ିଆ ସମ୍ଭ୍ରାନ୍ତ ନାଟକର ଏହି ଆଦିଯୁଗ ଥିଲା ଯଥାର୍ଥରେ ପାରମ୍ପରିକ ଲୋକ ନାଟକ ଯାତ୍ରାର ସ୍ୱର୍ଣ୍ଣଯୁଗ। ଏହି ଯୁଗରେ ଯେତିକ ମଞ୍ଚ ନାଟକ ସୃଷ୍ଟି ହୋଇଛି ତାର ବହୁଗୁଣ ସୃଷ୍ଟି ହୋଇଛି ପାରମ୍ପରିକ ଯାତ୍ରା ନାଟକ। ପୁଣି ସୃଷ୍ଟି ହୋଇଥିବା ଅଧିକାଂଶ ମଞ୍ଚନାଟକ ଗୁଡ଼ିକ ଅଭିନୟରେ ସଫଳତା ଲାଭ କରିବାରେ ଅସମର୍ଥ ହୋଇଥିବା ବେଳେ ପାରମ୍ପରିକ ନାଟକ ମାନ ଅଗଣିତ ଦର୍ଶକ ମାନଙ୍କ ବିପୁଳ କରତାଳି ମଧ୍ୟରେ ରାତିପରେ ରାତି ଅଭିନୀତ ହୋଇଛି। ବିଦଗ୍ଧ ସହରୀ ଦର୍ଶକ ମାନଙ୍କର ଶ୍ରଦ୍ଧା ଓ ସହାନୁଭୂତି ଯାତ୍ରାନାଟ୍ୟକାର ମାନଙ୍କୁ ଆଉ ଅଭାବ ହୋଇନାହିଁ । ପାରମ୍ପରିକ ନାଟକର ଏହି ଜନସଂଯୋଗ ସମ୍ଭ୍ରାନ୍ତ ନାଟ୍ୟକାର ମାନଙ୍କ ଦୃଷ୍ଟି ଆକର୍ଷଣ କରିଛି । ଫଳରେ ପ୍ରତ୍ୟେକ ବିଦଗ୍ଧ ନାଟକ ଯାତ୍ରାନାଟକର ପ୍ରଭାବରୁ ମୁକ୍ତ ହୋଇପାରିନାହିଁ । ଏହି ସମୟ ଥିଲା ଓଡ଼ିଆ ନାଟକ ପାଇଁ ସମନ୍ୱୟର ଯୁଗ। ଏ ଯୁଗରେ ଉଭୟ ଲୋକନାଟକ ଓ ବିଦଗ୍ଧ ନାଟକ ନିକଟରୁ ନିକଟତର ହୋଇଛନ୍ତି । ବିଦଗ୍ଧ ନାଟକମାନ ସଂସ୍କୃତ ନାଟ୍ୟାଦର୍ଶ ଓ ପାଶ୍ଚାତ୍ୟ ନାଟ୍ୟାଦର୍ଶକୁ ନେଇ ରଚିତ ହୋଇଥିଲେ ହେଁ ଲୋକନାଟକର ଅନେକ ବିଭବକୁ ଆତ୍ମସାତ୍ କରିଛନ୍ତି । ଏ ସମୟରେ ସମ୍ଭ୍ରାନ୍ତ ନାଟକର ଦୀର୍ଘ ସଂଳାପ, ସଙ୍ଗୀତର ପ୍ରାଚୁର୍ଯ୍ୟ, ସୁଆଙ୍ଗ ଧର୍ମୀ ହାସ୍ୟରସ, ନିୟତି ଚରିତ୍ର ଓ ଘଟଣାର ଆତିଶଯ୍ୟ ସବୁଗୁଡ଼ିକ ଲୋକ ନାଟକର ପ୍ରଭାବ । ଅନ୍ୟ ଦିଗରେ ପାରମ୍ପରିକ ନାଟକ ମଧ୍ୟ ପ୍ରଭାବ ମୁକ୍ତ ହୋଇ ପାରିନାହିଁ । ପାଶ୍ଚାତ୍ୟ ନାଟ୍ୟାଦର୍ଶ ମଞ୍ଚନାଟକ ପଥଦେଇ ଲୋକନାଟକରେ ପ୍ରବେଶ କରିବା ଫଳରେ ଏହାର ରୂପ ପରିବର୍ତ୍ତିତ ହୋଇଯାଇଛି। ବହୁ ଚରିତ୍ର, ଅଲୌକିକ ଘଟଣାର ସମାବେଶ, ସଂଳାପରେ ଅମିତ୍ରାକ୍ଷର ଛନ୍ଦର ପ୍ରୟୋଗ, ଅଙ୍କ ଓ ଦୃଶ୍ୟ ପରିକଳ୍ପନା, ମାନସିକ ସଂଘର୍ଷର ଚିତ୍ର ଓ ପରଦା ବ୍ୟବହାର ଆଦି ଆଧୁନିକ ନାଟକର ଆଙ୍ଗିକକୁ ଯାତ୍ରାନାଟକ ନିସଂକୋଚରେ ଗ୍ରହଣ କରିନେଇଛି।

ଭାରତର ପ୍ରାଚୀନ ସଂସ୍କୃତ ନାଟ୍ୟାଦର୍ଶରେ ମଧ୍ୟ ପାରମ୍ପରିକ ନାଟକ ଆକ୍ରାନ୍ତ ହୋଇଛି। ଅନେକ ପାରମ୍ପରିକ ନାଟକରେ ପ୍ରସ୍ତାବନା, ନାନ୍ଦୀ, ସୂତ୍ରଧର, ନଟନଟୀ, ବିଦୂଷକ ଓ ଭରତ ବାକ୍ୟର ପ୍ରୟୋଗ ଏହି ପ୍ରଭାବର ଫଳ।

ଅଭିଜାତ ନାଟ୍ୟଧାରା ସହିତ ପାରମ୍ପରିକ ନାଟ୍ୟଧାରର ସଂଯୋଗର ସୂତ୍ର ଧର ଥିଲେ ଗୋପାଳ ଦାଶ । ତାଙ୍କରି ସୃଷ୍ଟି ମଧ୍ୟରେ ଏହି ମିଳନର ଯେଉଁ ଅରୁଣୋଦୟ ହୋଇଥିଲା, ବୈଷ୍ଣବ ପାଣିଙ୍କ ରଚନା ତା'ର ପ୍ରଭାତୀ କିରଣରେ ଆଭାମୟ ହୋଇ, କୃଷ୍ଣପ୍ରସାଦଙ୍କ ଠାରେ ତାହା ସୁଦୂର ପ୍ରସାରୀ ଆଲୋକରେ ପରିଣତି ଲାଭ କରିଛି । ଯାତ୍ରା ତାର ଆଦିମ ରୂପ ପରିହାର କରି ନବରୂପରେ ଆତ୍ମ ପ୍ରକାଶ କରିଛି । ଡକ୍ଟର ନଟବର ସାମନ୍ତରାୟ ଯଥାର୍ଥରେ କହିଛନ୍ତି । "କ୍ରମେ ନାଟକର ବିକାଶ ହେତୁ ଯାତ୍ରାରେ ମଧ୍ୟ କଥା ଓ ଗୀତର ହେଲା ସମ୍ମିଶ୍ରଣ । ୧୮୮୦ ମସିହା ପରଠାରୁ ଗୀତ ସହିତ କଥାର ସଂଯୋଗ ହୋଇ ବିଂଶ ଶତାବ୍ଦୀର ଆଦ୍ୟ ପାଦରୁ ଏହାର ବିକାଶ ସାଧିତ ହେଲା । ଫଳରେ ନୂତନ ରୁଚିର ଅଭ୍ୟୁଦୟ ଫଳରେ ତଥା ନାଟକର ଆଙ୍ଗିକ ଶୈଳୀକୁ ଯାତ୍ରାରେ ଅନୁକରଣ କରାଯିବା ଫଳରେ ନୂତନ ଯାତ୍ରା କଳାର ବିକାଶ ହେଲା ଏବଂ ସେଥିରୁ ଯାତ୍ରାର ଆଦିମ ରୂପଟି ତିରୋହିତ ହେଲା ।"[୨୭]

ବସୁ ଥିଲେ ଲୋକନାଟ୍ୟକାର ମାନଙ୍କ ମଧ୍ୟରେ ଉଚ୍ଚ ଶିକ୍ଷିତ । କଲିକତାର ପ୍ରମୁଖ ରଂଗ ମଞ୍ଚରେ ଛାତ୍ର ଜୀବନରୁ ଅଭିନୟ ଓ ପରିଚାଳନାର ଅଭିଜ୍ଞତା ଲାଭ କରି ସେ ତାର ବିନିଯୋଗ କରିଥିଲେ ପାରମ୍ପରିକ ନାଟକ ରଚନା ଓ ମୁକ୍ତ ମଞ୍ଚର ଅଭିନୟରେ । ସେ ପୁଣି ଥିଲେ ଈଶ୍ୱର ଦତ୍ତ କବି ପ୍ରତିଭାର ଅଧିକାରୀ । ତେଣୁ କବିତ୍ୱର ସୃଜନ କଳା ସହିତ ଏହି ମଞ୍ଚ ଅଭିଜ୍ଞତା ତାଙ୍କୁ ସେ କାଳର ଜଣେ ଲୋକପ୍ରିୟ ନାଟ୍ୟକାରର ସମ୍ମାନ ଆଣିଦେଲା ।

ସେ ବିଜ୍ଞତାର ସହିତ ଅନୁମାନ କରିଥିଲେ ୧୯୪୦ ମସିହା ବେଳକୁ ଓଡିଶାର ମଞ୍ଚ ନାଟକ ସୁବର୍ଣ୍ଣ ଯୁଗରେ ଉପନୀତ ହେବ । ତେଣୁ ପାରମ୍ପରିକ ଲୋକନାଟକ ଯାତ୍ରାକୁ ଯୁଗ ଉପଯୋଗୀ କରିବା ପାଇଁ ତାଙ୍କର ଅଭିନବ ଉଦ୍ୟମରୁ ଏକ ନୂତନ ପ୍ରକାର ନାଟକର ସୃଷ୍ଟି ହେଲା । ଏହାକୁ ଗୀତାଭିନୟ ବା ଗୀତୀନାଟ୍ୟ ନ କହି ଯାତ୍ରା ନାଟକ ପର୍ଯ୍ୟାୟରେ ଅପେରା କହିଲେ ଠିକ୍ ହେବ । ତାଙ୍କର ନାଟ୍ୟ ଦଳକୁ ସେ ବିରଜା ଅପେରା ନାମରେ ନାମିତ କରିଛନ୍ତି । "ସେତେବେଳେ ଓଡିଶାର ପର୍ବପର୍ବାଣୀ ମାନଙ୍କରେ ମୁକ୍ତାକାଶ ତଳେ ଲୀଳା, ଯାତ୍ରା, ସୁଆଙ୍ଗ ପ୍ରଦର୍ଶିତ ହେଉଥିଲେହେଁ ନାଟକ ଦଳ କ୍ୱଚିତ ଥିଲା । ଶ୍ରୀଯୁକ୍ତ ବସୁ ପ୍ରଥମ ବ୍ୟକ୍ତି ଯେକି ମୁକ୍ତାକାଶ ତଳେ ଅଭିନୟକୁ ଅପେରା ନାମ ଦେଲେ ।"[୨୮] ସମାଲୋଚକଙ୍କ ଉପରୋକ୍ତ ଅଭିମତ ଏକାନ୍ତ ଯଥାର୍ଥ ।

ଅପେରା ଏକ ପ୍ରକାର ନାଟକ ଯେଉଁଥିରେ ପରମ୍ପରା ସହିତ ଆଧୁନିକ ନାଟ୍ୟ ଶୈଳୀର ଅନେକ କଥା ସହଜରେ ଦେଖିହୁଏ । କୃଷ୍ଣପ୍ରସାଦ ବଙ୍ଗଳାର ଜନପ୍ରିୟ

---

୨୭. ନଟବର ସାମନ୍ତରାୟ– ଓଡ଼ିଆ ସାହିତ୍ୟର ଇତିହାସ, ପୃ ୪୬୯

୨୮. ଆନନ୍ଦ ବିହାରୀ ବର୍ମା– ସମାଜ ୨୧.୧୦.୭୨

ଅପେରା ଦ୍ୱାରା ପ୍ରଭାବିତ ହୋଇ ଓଡିଶାରେ ଏ ପ୍ରକାର ନାଟକର ସୃଷ୍ଟି କରିଗଲେ । ବଙ୍ଗଳାରେ ଗୀତାଭିନୟକୁ ଅପେରା କୁହାଯାଉଥିଲା । ମନ ମୋହନ ବସୁ ଏ ପ୍ରକାର ଗୀତାଭିନୟ ସୃଷ୍ଟିକରି ବଙ୍ଗଳା ନାଟ୍ୟ ଜଗତରେ ନୂତନତା ସୃଷ୍ଟି କଲେ । ପୂର୍ବରୁ ଓଡିଶାରେ ପ୍ରଚଳିତ ଗୀତାଭିନୟ ଠାରୁ ଏହାର ବହୁ ଶୈଳୀଗତ ପାର୍ଥକ୍ୟ ରହିଲା । ଏହା ଏକ ପ୍ରକାର ନୂତନ ଯାତ୍ରା ଥିଲା । ଏହାକୁ ଅପେରା କୁହାଯାଉଥିଲା। ଏହି ଅପେରାରେ ନାଟକ ଭଳି ସୁସମଞ୍ଜସ କାହାଣୀ ରହିଲା, ଅଙ୍କ ଦୃଶ୍ୟ ବିଭାଗ ରହିଲା, କେବଳ ମୁକ୍ତ ମଞ୍ଚରେ ଦୃଶ୍ୟ ପଟ୍ଟ ବିରହିତ ହୋଇ ଅଭିନୀତ ହେଲା। ନାଟକ ତୁଳନାରେ ଏଥିରେ ସଙ୍ଗୀତର ଆଧିକ୍ୟ ରହିଲା ।[୨୯] ଏହା ନାଟକ ଅଭିନୟ ପଦ୍ଧତିର ଅନୁରୂପ ହେଲେ ବି ସଙ୍ଗୀତ ପ୍ରଧାନ ହେଲା । ଏଥିରେ ଦୀର୍ଘ ସ୍ୱଗତ ଓ ପ୍ରକାଶ୍ୟ ଉକ୍ତି ଦ୍ୱାରା ଦୃଶ୍ୟ ପଟ୍ଟ ଅଭାବର କ୍ଷତି ପୂରଣ କରାଗଲା।

ପାଶ୍ଚାତ୍ୟ ଅପେରା ରୂପ ଓ ଆଦର୍ଶ ଦୃଷ୍ଟିରୁ ବଙ୍ଗଳା ଅପେରା ଠାରୁ ଭିନ୍ନ ଥିଲା। ଇଂରେଜୀ ଅପେରାମାନ ଏକ ନାଟକୀୟ କାହାଣୀକୁ ସଙ୍ଗୀତ ମାଧ୍ୟମରେ ପ୍ରକାଶ କରୁଥିଲା ।[୩୦] ବଙ୍ଗଳାରେ ମଞ୍ଚ ନିର୍ମାଣ ପାଇଁ ସାମର୍ଥ୍ୟ ଅଭାବରୁ ମୁକ୍ତ ମଞ୍ଚରେ ଅଭିନୟ ପାଇଁ ନାଟକ ପରିବର୍ତ୍ତେ ଅପେରାର ସୃଷ୍ଟି ହୋଇଥିବାବେଳେ, ପାଶ୍ଚାତ୍ୟ ଅପେରା ଗୁଡିକ ଅପେରା ହାଉସ୍‌ରେ ଥିବା ମଞ୍ଚରେ ଅଭିନୀତ ହେଉଥିଲା।

ବଙ୍ଗଳାରେ ଯେଉଁ ଗୀତାଭିନୟକୁ ଅପେରା କୁହାଗଲା, ସେଗୁଡିରେ ଭକ୍ତି ଓ କରୁଣ ରସର ପ୍ରାବଲ୍ୟ ରହିଲା । ଯାତ୍ରା ଅପେକ୍ଷା ଏଥିରେ ସାଜ ପୋଷାକର ବୈଚିତ୍ର୍ୟ, ଆଳଙ୍କାରିକ ଭାଷା ଓ ଉନ୍ନତ ପରିପାଟୀ ଦେଖାଗଲା ।[୩୧]

ଦୃଶ୍ୟ ସଂଯୋଗ ଓ ଘଟଣା ସଂସ୍ଥାପନ ଦୃଷ୍ଟିରୁ ଏ ସବୁ ଅପେରା ବା ଗୀତାଭିନୟ ନାଟକର ସମଧର୍ମୀ ଥିଲା, ଅନେକ ପ୍ରସିଦ୍ଧ ବଙ୍ଗଳା ନାଟକ ରଙ୍ଗମଞ୍ଚର ବ୍ୟୟ ବହୁଳତା ପାଇଁ ମୁକ୍ତ ମଞ୍ଚରେ ଅପେରା ଭଳି ମଧ୍ୟ ଅଭିନୀତ ହେଉଥିଲା । ବଙ୍ଗଳା ଅପେରା ତେଣୁ ହେଲା ଯାତ୍ରା ଓ ନାଟକର ମଝାମଝି ଏକ ପ୍ରକାର ଅଭିନୟ।[୩୨]

ଉନବିଂଶ ଶତାବ୍ଦୀର ଶେଷ ଆଡକୁ ମନମୋହନ ବସୁ ବଙ୍ଗଳା ଭାଷାରେ ବହୁ ଅପେରା ସୃଷ୍ଟି କରିଗଲେ । ତାଙ୍କର 'ସତୀ', ହରିଶ୍ଚନ୍ଦ୍ର' 'ପାର୍ଥ ପରାଜୟ',

୨୯. ଅଜିତ କୁମାର ଘୋଷ– ବାଂଲା ନାଟକେର ଇତିହାସ (୧ମ ପ୍ରକାଶ)
୩୦. George Martin– Opera Companion, P 111
୩୧. H.N. Dasgupta– Indian Stage, Vol I, Page 33
୩୨. ବ୍ରଜେନ୍ଦ୍ରନାଥ ବନ୍ଦୋପାଧ୍ୟାୟ– ବଙ୍ଗୀୟ ନାଟ୍ୟଶାଳାର୍ ଇତିହାସ, ପୃ ୯୩

ଗୀତାଭିନୟ ବା ଅପେରା ଏକ ସମୟରେ ମଞ୍ଚ ପ୍ରତି ବିମୁଖ ଭକ୍ତିପ୍ରାଣ ବଙ୍ଗାଳୀ ଦର୍ଶକ ମାନଙ୍କର ମନୋରଂଜନର ମାଧ୍ୟମ ଥିଲା ।

୧୯୧୭ ମସିହାରୁ କୃଷ୍ଣପ୍ରସାଦ ନିଜର ଯାତ୍ରାଦଳ ବିରଜା ଅପେରା ରେ ଏକ ଅଭିନବ ରୀତିରେ ନାଟ୍ୟ ପରିବେଷଣ ଆରମ୍ଭ କଲେ । ତାଙ୍କ ନାଟକ ଗୁଡିକରେ ବଙ୍ଗଳା ଅପେରା, ପାଶ୍ଚାତ୍ୟ ନାଟ୍ୟାଦର୍ଶ ସହିତ ଓଡିଶାର ପାରମ୍ପରିକ ଲୋକନାଟକ-ଗୀତିନାଟ୍ୟ, ଲୀଳା, ସୁଆଙ୍ଗ ଆଦି ଆଦର୍ଶର ଅପୂର୍ବ ସମନ୍ୱୟ ଦେଖାଗଲା । ଗୋପାଳଦାଶ, ବୈଷ୍ଣବ ପାଣି ଆଦିଙ୍କ ଗୀତାଭିନୟ ଓ ଗୀତିନାଟ୍ୟରେ ବ୍ୟବହୃତ ଗଦ୍ୟ ସଂଳାପ ତୁଳନାରେ ତାଙ୍କ ନାଟକର ଗଦ୍ୟ ଯେ କୌଣସି ବିଦଗ୍ଧ ନାଟକର ଗଦ୍ୟପରି ଶୁଦ୍ଧ ଓ ପରିଚ୍ଛନ୍ନ ହେଲା । ସଙ୍ଗୀତ ବହୁଳତାରୁ ନାଟକକୁ ମୁକ୍ତ କରାଗଲା । ସୁନିର୍ବାଚିତ ସୁଲଳିତ ସଙ୍ଗୀତର ସଂଯୋଜନା, ଉନ୍ନତ ମାନ ଓ ମାର୍ଜିତ ରୁଚିର ଶାସ୍ତ୍ରୀୟ ନୃତ୍ୟ ସହିତ ନାଟକ ଅଭିନୀତ ହେବାକୁ ଲାଗିଲା । କୃଷ୍ଣପ୍ରସାଦ ବଙ୍ଗଳା ଅପେରା ଭଳି ପ୍ରଥମେ ମୁକ୍ତ ମଞ୍ଚ ପରିବର୍ତ୍ତେ ତ୍ରିମୁଖୀ ମଞ୍ଚରେ ଅଭିନୟ ପ୍ରଦର୍ଶନ କରୁଥିଲେ । ଭରତଙ୍କ ନିର୍ଦ୍ଦେଶିତ ଯବନିକା ଭଳି ସେ ଗୋଟିଏ ମାତ୍ର ପର୍ଦ୍ଦା ବ୍ୟବହାର କରୁଥିଲେ ।[୩୩] ନୀଳଗିରି, ବଲାଙ୍ଗୀର ଆଦି ସମ୍ଭ୍ରାନ୍ତ ଦରବାରୀ ମଞ୍ଚରେ ନାଟକ ଅଭିନୟ କରି ସେ ଯେଉଁ ସାଫଲ୍ୟ ଲାଭ କରିଥିଲେ ସେ ଦିନର ବହୁ ବିଦଗ୍ଧ ନାଟ୍ୟକାରଙ୍କ ପାଇଁ ତା ଦୁର୍ଲଭ ଥିଲା । ଊନବିଂଶ ଶତାବ୍ଦୀର ପତ୍ର ପତ୍ରିକା ଗୁଡିକର ଆହ୍ୱାନ ସତ୍ତ୍ୱେ ବିଂଶ ଶତାବ୍ଦୀର ଆରମ୍ଭ ପର୍ଯ୍ୟନ୍ତ ଯାତ୍ରା ସଂସ୍କାର ପାଇଁ ଶିକ୍ଷିତଲୋକେ ଆଗୁସାର ହୋଇନଥିଲେ ।

ରାମଶଙ୍କର ଆଦି କେତେକ ସମ୍ଭ୍ରାନ୍ତ ନାଟ୍ୟକାର 'ବିଶ୍ୱଯଜ୍ଞ', 'କଳିକାଳ' ପରି ଆଦର୍ଶ ଯାତ୍ରା ନାଟକ ଲେଖିବାକୁ ଚେଷ୍ଟା କରି ସଫଳତା ଲାଭ କରି ପାରିଲେ ନାହିଁ । ବରଂ ସ୍ୱଳ୍ପ ଶିକ୍ଷିତ ଗୋପାଳ ଦାଶ ଯାତ୍ରା ସଂସ୍କାରର ଶୁଭଦାନ କଲେ । ଏ ଦିଗରେ ଗଣକବି ବୈଷ୍ଣବ ପାଣି ଯେଉଁ ନୂତନ କ୍ରାନ୍ତିର ସ୍ୱାକ୍ଷର ଆଙ୍କିଗଲେ ଉଚ୍ଚଶିକ୍ଷା ପ୍ରାପ୍ତ କୃଷ୍ଣପ୍ରସାଦଙ୍କ ଠାରେ ତାହା ପୂର୍ଣ୍ଣତା ପ୍ରାପ୍ତ ହେଲା । ଯାତ୍ରା ନାଟକ ଆଉ ଜୀବନର ତରଳ ଓ ଚପଳ ଦିଗକୁ ଉଭାସିତ ନକରି ଗମ୍ଭୀର, ଗଭୀର ଦାର୍ଶନିକ ଦିଗକୁ ପ୍ରକାଶ କରିବାକୁ ଲାଗିଲା ।

କୃଷ୍ଣପ୍ରସାଦ ଯାତ୍ରା ନାଟକକୁ ଅଗୌରବରୁ ରକ୍ଷାକରି ଯୌବନର ବଳିଷ୍ଠତା ଓ ପରିଣତି ଦାନ କରିଗଲେ । ସେ ଥିଲେ ଈଶ୍ୱର ଦତ୍ତ ସାରସ୍ୱତ ପ୍ରତିଭାର ଅଧିକାରୀ ।

୩୩. ଘନଶ୍ୟାମ ସ୍ୱାଇଁ– ଓଡ଼ିଆ ଯାତ୍ରା ଓ ଲୋକନାଟକ, ପୃ ୭୭

ସୃଜନୀର ମୋହନ ବଂଶୀ ତାଙ୍କର ନିଭୃତ ଅନ୍ତରରେ ସତତ ନିନାଦିତ ହେଉଥିଲା । ଯାତ୍ରା ନାଟକ ରଚନାରୁ ବିରତ ହେବାପରେ ଜୀବନର ଶେଷ କାଳ ପର୍ଯ୍ୟନ୍ତ ସାରସ୍ୱତ ସାଧନାରେ ସେ ନିଜକୁ ନିୟୋଜିତ କରିଗଲେ। ଫଳରେ ଓଡିଆ ସାହିତ୍ୟ ସମୃଦ୍ଧ ହେଲା ଅର୍ଦ୍ଧଶତକାଧିକ ଖଣ୍ଡବାକ୍ୟ, ଆଖଡା ଘରେ ବୈଠକ ପର୍ଯ୍ୟାୟର ତତ୍ତ୍ୱନିର୍ଦ୍ଧିତ ପ୍ରବନ୍ଧ ଓ ପ୍ରାଣୋଚ୍ଛଳ ଗଳ୍ପ ମାନଙ୍କରେ । ତାଙ୍କର ରଞ୍ଜନ ତୁଳିକାର ସ୍ପର୍ଶ ଯେଉଁଠାରେ ଲାଗିଛି ତାହା ସ୍ୱର୍ଗୀୟ ସୁଷମାରେ ଉଦ୍‌ଭାସିତ ହୋଇ ଉଠିଛି ।

କୃଷ୍ଣପ୍ରସାଦଙ୍କର ନାଟ୍ୟ ପ୍ରତିଭା ପ୍ରକୃତିଦତ୍ତ ଥିଲା। ଗଣ ସାହିତ୍ୟ ସୃଷ୍ଟିର ଅଦମ୍ୟ ବାସନାକୁ ଚରିତାର୍ଥ କରିବା ପାଇଁ ସେ ସୃଷ୍ଟି କରିଗଲେ ଅଗଣିତ ନାଟକ ।

(ଲେଖକଙ୍କର ଅପ୍ରକାଶିତ ଗବେଷଣା ନିବନ୍ଧରୁ)

●●●



# ସାରସ୍ୱତ କୃତି ଓ କୃତିତ୍ୱ

## ପଞ୍ଚମ ପରିଚ୍ଛେଦ

## କାବ୍ୟ ସମ୍ଭାର

ଯାତ୍ରା ଦଳ ପରିଚାଳନାରୁ ଅବସର ପାଇ କୃଷ୍ଣପ୍ରସାଦ ଖଣ୍ଡକାବ୍ୟ ଲେଖିବାରେ ସ୍ୱପ୍ରତିଭାର ବିନିଯୋଗ କରିଯାଇଛନ୍ତି। ୧୯୪୨ ମସିହା ପରେ ନିଜର ପ୍ରତିଷ୍ଠିତ ବିରଜା ଅପେରା ସମ୍ପୂର୍ଣ୍ଣ ବନ୍ଦ ହୋଇଯିବା ପରେ ସେ ଓଡ଼ିଆ ଲୋକ ସାହିତ୍ୟର ଅନ୍ୟତମ ବିଭବ ପାଲା ସାହିତ୍ୟକୁ ସମୃଦ୍ଧ କରିଯାଇଛନ୍ତି।

ଆବହମାନ କାଳରୁ ପାଲା ଓ ଛନ୍ଦ କବିତା ଦ୍ୱାରା ଜନରଂଜନ କରିବାର ରୀତି ଓଡ଼ିଶାରେ ଚଳି ଆସୁଥିଲା। ଜଣେ ଗାୟକ, ଜଣେ ବାୟକ, ଜଣେ ଶ୍ରୀପାଳିଆ, ୨ଜଣ ପଛ ପାଳିଆଙ୍କୁ ନେଇ ପାଲା ସମ୍ପ୍ରଦାୟ ଗଠିତ। ଏମାନେ ଏକ ଆସରରେ ପ୍ରାଚୀନ ସାହିତ୍ୟ ପରିବେଷଣ କରୁଥିଲେ। ନୃତ୍ୟ, ସଙ୍ଗୀତ, ଅଭିନୟ ଏବଂ ସାହିତ୍ୟର ଏକ ସୁସମନ୍ୱିତ ପରିବେଷଣ ହେଉଛି ଏହି ପାଲା। ଓଡ଼ିଶାରେ ଏହା ଠିଆ ପାଲା ଭାବରେ ପରିଚିତ,କାରଣ ସତ୍ୟନାରାୟଣ ବା ସତ୍ୟପୀର ପାଲାକୁ ବୈଠକୀ ପାଲା ଭାବରେ ଗ୍ରହଣ କରାଯାଇଥାଏ। ଆସରରେ ପରିବେଷିତ ହେଉଥିବା ସଙ୍ଗୀତ, ନୃତ୍ୟ ଓ ଅଭିନୟ ଯୁକ୍ତ ପାଲା ସତ୍ୟପୀର ପାଲାର ବିକଶିତ ରୂପ। ପ୍ରଥମଟି ଧର୍ମକୁ କେନ୍ଦ୍ରକରି ଗଢି ଉଠିଥିଲା। କାମନା ସିଦ୍ଧି ପାଇଁ ଭକ୍ତି ଓ ବିଶ୍ୱାସକୁ ଆଧାର କରି ଏହାର ସୃଷ୍ଟି। କିନ୍ତୁ ଠିଆପାଲାର ସାହିତ୍ୟ ଚର୍ଚ୍ଚା, ରସ ପରିବେଷଣ ଓ ମନୋରଞ୍ଜନ ହେଉଛି ମୂଳକଥା। ସଂସ୍କୃତିର ବହୁ ବିଭବ ଦ୍ୱାରା ଏହା ପରିପୁଷ୍ଟ। ସତ୍ୟପୀର ପୂଜାର ଉଦ୍ଦେଶ୍ୟ ଲୋକ ମନରେ ଧର୍ମ ଓ ଭକ୍ତି ଭାବ ଜାଗ୍ରତ କରିବା। ପାଲାର ଉଦ୍ଦେଶ୍ୟ ସାହିତ୍ୟ ମାଧ୍ୟମରେ ଶ୍ରୋତାଙ୍କୁ ବିମଳ ଆନନ୍ଦ ଦେବା।

ଏହି ଠିଆ ପାଲା ଓଡ଼ିଶାର ଏକ ସାରସ୍ୱତ କଳା। ଓଡ଼ିଶାର ଜନଜୀବନ ଓ ସାଂସ୍କୃତିକ ଚେତନା ସହିତ ଏହାର ସମ୍ପର୍କ ଘନିଷ୍ଠ। ଏହା ଗ୍ରାମାଞ୍ଚଳଠାରୁ ସହରାଞ୍ଚଳ ଯାଏ ସାହିତ୍ୟ ସଂସ୍କୃତିର ବାର୍ତ୍ତାବହ। ଛନ୍ଦ, ସ୍ୱର, ତାଳ, ଲୟର ମଧୁର ମୂର୍ଚ୍ଛନାରେ ଅନୁରଣିତ ହୋଇ ଓଡ଼ିଆ ସାହିତ୍ୟ ପାଲା ମାଧ୍ୟମରେ ସରସ ଓ ଜୀବନ୍ତ ହୋଇଉଠେ। ଶିକ୍ଷିତ ଅଶିକ୍ଷିତ ନିର୍ବିଶେଷରେ ଓଡ଼ିଶାର ଅଗଣିତ ଦର୍ଶକଙ୍କୁ ଏହା ବିମଳ ଆନନ୍ଦ ପ୍ରଦାନ କରି ଆସିଛି।

ପାଲା ଏକାଧାରାରେ ଧର୍ମ ପ୍ରଚାର, ସାହିତ୍ୟ ସମୀକ୍ଷା, ଛନ୍ଦୋବଦ୍ଧ ସାହିତ୍ୟ ପ୍ରସାର ଓ ଗଣଜ୍ଞାନ ସାଧନାର ପୀଠ ରୂପେ ପ୍ରସିଦ୍ଧି ଅର୍ଜନ କରିଆସିଛି ।[୧]

ଓଡ଼ିଶାର ପ୍ରାଚୀନ ଓ ମଧ୍ୟଯୁଗର କବିମାନଙ୍କର ଛନ୍ଦୋବଦ୍ଧ କାବ୍ୟର ବିଷୟବସ୍ତୁ ସହିତ ପୁରାଣ ବର୍ଣ୍ଣିତ କାହାଣୀ ଓ ଚରିତ୍ରକୁ ଉପଜୀବ୍ୟ କରି ପାଲା ଗାୟକମାନେ ପାଲା ପରିବେଷଣ କରିଥାନ୍ତି । କଠିନ କାବ୍ୟର ଅଂଶ ବିଶେଷକୁ ଅଭିନୟ ଓ ବ୍ୟାଖ୍ୟାନ ମାଧ୍ୟମରେ ଦର୍ଶକମାନଙ୍କ ନିକଟରେ ଏମାନେ ଉପସ୍ଥାପନା କରିଦିଅନ୍ତି । ପୁରାଣ ଦର୍ଶନ ଆଦିର ସମୀକ୍ଷା ଦ୍ୱାରା ଗଣମାନସରେ ସାହିତ୍ୟ ପ୍ରତି ଏକ ଶାଶ୍ୱତ ଚେତନା ସଂଜାତ ହୋଇଥାଏ । ବେଳେ ବେଳେ ଧର୍ମ ସମ୍ପର୍କ ବିହୀନ କାହାଣୀ ମଧ୍ୟ ପାଲାରେ ପରିବେଷିତ ହୋଇଥାଏ ।

ବହୁକାଳରୁ ଓଡ଼ିଶାରେ ପରିଚିତ ଏହି ପାଲା ଏକ ସମୃଦ୍ଧ ସାହିତ୍ୟିକ ଅନୁଷ୍ଠାନ ହେଲେବି ଆଗେ ପାଲା ସାହିତ୍ୟ ବୋଲି କୌଣସି ନିର୍ଦ୍ଦିଷ୍ଟ ସାହିତ୍ୟ ନଥିଲା । ଏହା ଥିଲା ଏକ ସଂଗ୍ରହଶୀଳ ଅନୁଷ୍ଠାନ । ବିଭିନ୍ନ କବିମାନଙ୍କ କାବ୍ୟରୁ ଉଦ୍ଧୃତି ଦେଇ ପାଲା ପରିବେଷିତ ହେଉଥିଲା । ଏଥିପାଇଁ ସ୍ୱତନ୍ତ୍ର ବିଷୟବସ୍ତୁ ମଧ୍ୟ ନଥିଲା । ଜଣେ ଗାୟକ କେବଳ ଗୋଟିଏ ବିଷୟବସ୍ତୁର ସୂଚନା ମାତ୍ର ଦେଇ ବିଭିନ୍ନ କାବ୍ୟରୁ ପ୍ରସଙ୍ଗକ୍ରମେ ସନ୍ଧ୍ୟା, ପ୍ରଭାତ, ରାତ୍ରି, ମଧ୍ୟାହ୍ନ, ନଗର, ସଭା, ତପୋବନ, ପର୍ବତ, ନଦୀ, ଋତୁ, ମୃଗୟା ଓ ଯୁଦ୍ଧଯାତ୍ରା ଆଦିର ବର୍ଣ୍ଣନା ପରିବେଷଣ କରୁଥିଲେ ।

ମଧ୍ୟଯୁଗୀୟ କାବ୍ୟର କଳେବରର ବିଶାଳତା ହେତୁ କୌଣସି ଏକ କାବ୍ୟକୁ ମାତ୍ର କେତେ ଘଣ୍ଟା ମଧ୍ୟରେ ପରିବେଷଣ କରିବା ସହଜ ନଥିଲା । ଆଧୁନିକ ଯୁଗ ଆରମ୍ଭରେ କବିବର ରାଧାନାଥଙ୍କ ରଚନାବଳୀ ଓ କବି ଗଙ୍ଗାଧରଙ୍କ ପୁରାଣ କାହାଣୀ ଆଧାରିତ କାବ୍ୟାବଳୀ ପାଲାକାରମାନଙ୍କର ଦୃଷ୍ଟି ଆକର୍ଷଣ କରିଥିଲା । ଏଥିରେ ଗୋଟିଏ ରାଗରେ ଏକ ଏକ ଦୀର୍ଘ ସର୍ଗଥିବାରୁ ଏହା ମଧ୍ୟ ଦର୍ଶକଙ୍କ ମନୋରଂଜନ କରିବା ପାଇଁ ଅସମର୍ଥ ହୋଇଥିଲା । କେବଳ ତ୍ରିପଦୀ କି ବାର ଅକ୍ଷରୀ, ଚଉଦ ଅକ୍ଷରୀ କି ଷୋଡ଼ଶ ଅକ୍ଷରୀରେ ଆମୂଳଚୂଳ ବର୍ଣ୍ଣନା କଲେ ଗାୟକଙ୍କ ପକ୍ଷେ ସ୍ୱରବିନ୍ୟାସ କରିବା ଓ ମୁହୁର୍ମୁହୁ ସ୍ୱର ପରିବର୍ତ୍ତନ କରାଇବା ଦିଗରେ ମଧ୍ୟ ଅସୁବିଧା ହେଲା । ଓଡ଼ିଶାର ଅଗଣିତ ଗାୟକବର୍ଗ ଏଭଳି ଏକ ପାଲାକାବ୍ୟ ଆଶା କରୁଥିଲେ ଯାହା ତିନି-ଚାରି ଘଣ୍ଟା ମଧ୍ୟରେ ଶେଷ ହୋଇପାରୁଥିବା କାହାଣୀଟିଏ ହୋଇଥିବ, ଏହା ପୁଣି କ୍ଷୁଦ୍ର କ୍ଷୁଦ୍ର ସର୍ଗରେ ବିଭକ୍ତ ହୋଇଥିବ । ଏଥିରେ ଜନରଂଜନ କ୍ଷମ ବିଭିନ୍ନ ରସର ଅବତାରଣା ହୋଇଥିବ ।

୧. ଡଃ ନିରଞ୍ଜନ ପଣ୍ଡା– ଓଡ଼ିଶାର ପାଲା, ପୃ ୪

ଜଣେ ଦକ୍ଷ ଅଭିନେତା ଓ ନାଟ୍ୟକାର ଭାବରେ କୃଷ୍ଣପ୍ରସାଦ ଓଡ଼ିଆ ପାଲାର ଏହି ଅସୁବିଧାକୁ ସହଜରେ ହୃଦୟଙ୍ଗମ କରି ଓଡ଼ିଶାର ବହୁ ପ୍ରାଚୀନ ଏହି ସାରସ୍ୱତ କଳାର ସଂସ୍କାର ପ୍ରୟାସୀ ହୋଇଥିଲେ।

ସେ ଓଡ଼ିଆ ପାଲା ପାଇଁ ସ୍ୱତନ୍ତ୍ର ବିଷୟବସ୍ତୁକୁ ନେଇ କାବ୍ୟମାନ ସୃଷ୍ଟି କରିବାକୁ ଲାଗିଲେ। ଆଉ କାହାଣୀଗୁଡ଼ିକୁ ଉପଜୀବ୍ୟ କରି ଗାୟକମାନେ ଅନ୍ୟ କବିମାନଙ୍କ ରଚନାରୁ ଉଦ୍ଧୃତି ଦେଇ ପାଲା ପରିବେଷଣ କରିବା ଆବଶ୍ୟକ ହେଲା ନାହିଁ। ଏ ଦିଗରେ ତାଙ୍କର ପ୍ରଥମ ପ୍ରୟାସ 'ବାମନାବତାର ବା ତ୍ରିବିକ୍ରମ ଚରିତ'। ଏହି କାବ୍ୟଖଣ୍ଡି ୧୯୩୬ ମସିହାରେ ଲେଖା। ଗାୟକ କଳାକାର ଶ୍ରୀ ନରେନ୍ଦ୍ରନାଥ ନାଥଙ୍କ ପ୍ରେରଣାରେ ଏ କାବ୍ୟର ସୃଷ୍ଟି। ଉତ୍ସର୍ଗ ପତ୍ରରେ କବି ଲେଖିଛନ୍ତି "ମୁଁ ଥିଲି ନାଟୁଆ - ସ୍ୱଭାବତଃ ନାଟକ ଓ ଗୀତ ରଚନା କରିବାରେ କିଞ୍ଚିତ ଅଭିଜ୍ଞତା ଥିଲେ ମଧ୍ୟ କାବ୍ୟ ରଚନାରେ ଥିଲି ଏକାନ୍ତ ଅନ୍ଧ। ବନ୍ଧୁବର (ନରେନ୍ଦ୍ରନାଥ)ଙ୍କ ଉତ୍ସାହ ଓ ଅନୁରୋଧ ଫଳରେ ଏହାହିଁ ହୋଇଥିଲା ପ୍ରଥମ ଉଦ୍ୟମ।"[୨] ଏହି ପ୍ରଥମ କାବ୍ୟଟି ୧୯୫୨ ମସିହାରେ କୃଷକ ପ୍ରେସ୍‌ରୁ ମୁଦ୍ରିତ ହୋଇ ଶ୍ରୀ ବିଶ୍ୱେଶ୍ୱର ବସୁଙ୍କ ଦ୍ୱାରା ପ୍ରକାଶିତ ହୋଇଥିଲା। ଏକ ଦିଗରେ ଓଡ଼ିଆ ଯାତ୍ରା ପାଇଁ ସଫଳ ନାଟକମାନ ଲେଖିଥିବା ବେଳେ ସମୟ ଓ ସୁଯୋଗ ପାଇଲେ ନାଟୁଆ ଭାବରେ ନିଜର ଅଭିଜ୍ଞତା ନେଇ ସେ ସ୍ୱତନ୍ତ୍ର ସ୍ୱାଦର ପାଲା କାବ୍ୟମାନ ରଚନା କରୁଥିଲେ। ୧୯୪୨ ପରେ ନାଟକ ରଚନାରୁ ବିରତ ହୋଇ ସେ ଜୀବନର ଶେଷକାଳ ପର୍ଯ୍ୟନ୍ତ ପାଲା କାବ୍ୟ ରଚନା କରିବା ଓ ପାଲାର ସଂସ୍କାର ପାଇଁ ଉପାଦେୟ ପ୍ରବନ୍ଧ ରଚନା କରିଥିବାର ଦେଖାଯାଏ। ତାଙ୍କରି ଅବିରାମ ଉଦ୍ୟମ ଫଳରେ ଓଡ଼ିଆ କାବ୍ୟ ଜଗତରେ ପାଲାକାବ୍ୟ ଭାବରେ ପରିଚିତ ଖଣ୍ଡକାବ୍ୟର ଆରମ୍ଭ ଓ ଅଗ୍ରଗତି ସମ୍ଭବପର ହୋଇଥିଲା।

କୃଷ୍ଣପ୍ରସାଦଙ୍କ ରଚିତ ଖଣ୍ଡ କାବ୍ୟ ଗୁଡ଼ିକ ହେଲା (୧) ବାମନାବତାର (୨) ପାଞ୍ଚାଳୀ ପଟାପହରଣ (୩) ମେଘନାଦ (୪) ବ୍ରାହ୍ମଣ (୫) ଦାକ୍ଷାୟଣୀ (୬) ପରିକ୍ଷିତ ବ୍ରହ୍ମଶାପ (୭) ପାଦୁକା (୮) କିଷ୍କିନ୍ଧ୍ୟା (୯) କଚ୍ ଦେବଯାନୀ (୧୦) ଚଣ୍ଡାଶୋକ (୧୧) ହରିଶ୍ଚନ୍ଦ୍ର (୧୨) ଛତ୍ରପତି ଶିବାଜୀ (୧୩) ଦେବବ୍ରତ (୧୪) ନିମାଇଁ ସନ୍ୟାସ (୧୫) ଶ୍ରୀ ଗୌରଗାଥା (୧୬) ରାଜସୂୟ (୧୭) କବି ନର୍ତ୍ତକୀ (୧୮) ପ୍ରଭାସ ଯଜ୍ଞ (୧୯) ନଳ ଦମୟନ୍ତୀ ୧ମ ଓ ୨ୟ (୨୦) ଜନ୍ମାଷ୍ଟମୀ (୨୧) ପାତକୀ

୨. କୃଷ୍ଣପ୍ରସାଦ ବସୁ– ବାମନାବତାର କାବ୍ୟର ଉତ୍ସର୍ଗପତ୍ର

(୨୨) କାମ୍ୟକ (୨୩) ହିମାଦ୍ରି ଜେମା (୨୪) ବଭ୍ରୁବାହାନ (୨୫) ମାତୃପୂଜା (୨୬) ଉର୍ବଶୀ ଅଷ୍ଟବଜ୍ର (୨୭) ଜଡ଼ଭରତ (୨୮) ସାବିତ୍ରୀ (୨୯) ମଧୁକୈଟଭ (୩୦) ବସନ୍ତ ସେନା (୩୧) ଖାଣ୍ଡବ ଦହନ (୩୨) ଶଙ୍କରାଚାର୍ଯ୍ୟ (୩୩) ବୈନେତୟ (୩୪) ଗାନ୍ଧୀ ଚରିତ (୩୫) ଅଛୁଆଁ ଝିଅ (୩୬) ଜାରା ଶବର ।

**କାବ୍ୟ ସମୀକ୍ଷା**

ଉପରୋକ୍ତ କାବ୍ୟଗୁଡିକ ଲେଖକଙ୍କ ଦ୍ୱାରା ପ୍ରକାଶିତ। **ବାମନାବତାର ବା ତ୍ରିବିକ୍ରମ ଚରିତ୍ର** ତାଙ୍କର ପ୍ରଥମ ପ୍ରକାଶିତ ଛାନ୍ଦକାବ୍ୟ। ୧୯୫୨ ମସିହାରୁ କବିଙ୍କ ଜୀବନର ଶେଷ କାଳ ପର୍ଯ୍ୟନ୍ତ ଅନ୍ୟାନ୍ୟ କାବ୍ୟଗୁଡିକ ପ୍ରକାଶ ଲାଭ କରିବା ସଙ୍ଗେ ସଙ୍ଗେ ବହୁ କାବ୍ୟ ପୁନଃ ପ୍ରକାଶ ଲାଭ କରିଥିବାର ଦେଖାଯାଏ। ପ୍ରଥମ କାବ୍ୟ ବାମନାବତାର ରଚିତ ହୋଇଥିଲା ୧୯୩୬ ମସିହାରେ (ଉତ୍ସର୍ଗପତ୍ର) ଏହା ପରଠାରୁ ୧୯୬୮ ମସିହା ମଧ୍ୟରେ ଅନ୍ୟ କାବ୍ୟ ଗୁଡିକ ରଚିତ ଓ ପ୍ରକାଶିତ ହୋଇଥିଲା। ତାଙ୍କର ପ୍ରିୟ ପ୍ରକାଶକମାନେ ଥିଲେ କୃଷକ ପ୍ରେସ- କଟକ, ରାଷ୍ଟ୍ରଭାଷା ସମବାୟ ପ୍ରେସ୍ - କଟକ, ପ୍ରଜାତନ୍ତ୍ର ପ୍ରେସ୍- କଟକ ଓ ଯଯାତି ପ୍ରେସ୍- ଯାଜପୁର।

ପୂର୍ବରୁ କବିଙ୍କ ଦ୍ୱାରା ରଚିତ କାରାମନ୍ଦିର, ହରିଶ୍ଚନ୍ଦ୍ର, ବଭ୍ରୁବାହାନ, ମେଘନାଦ ବଧ, ବିଲ୍ୱମଙ୍ଗଳ, ରାଷ୍ଟ୍ରପତି ଶିବାଜୀ, ବିଶ୍ୱାମିତ୍ର, ବାମନାବତାର, ନିମାଇଁ ସନ୍ନ୍ୟାସ, ଦକ୍ଷଯଜ୍ଞ, ଅଛୁଆଁ ଝିଅ ଆଦି ନାଟକକୁ କବି କାବ୍ୟରୂପ ପ୍ରଦାନ କରିଛନ୍ତି। ଏହାବ୍ୟତୀତ ଅନ୍ୟ କାବ୍ୟଗୁଡିକ କବିଙ୍କ ସ୍ୱତନ୍ତ୍ର ସୃଷ୍ଟି। ନାଟକଗୁଡିକୁ କବି କାବ୍ୟରେ ରୂପାନ୍ତରିତ କଲାବେଳେ କାବ୍ୟ ଉପଯୋଗୀ ଉପାଦାନ ଗ୍ରହଣ କରି ଅନାବଶ୍ୟକ ଘଟଣାକୁ ପରିହାର କରିଛନ୍ତି। ନାଟକର ଦୀର୍ଘ କଳେବର କାବ୍ୟରେ କ୍ଷୁଦ୍ର ହୋଇଯାଇଛି।

ବସୁଙ୍କ ରଚିତ ଖଣ୍ଡକାବ୍ୟର ବିଷୟବସ୍ତୁ ବିଶେଷ କରି ପୁରାଣ ଓ ଇତିହାସର କଥାବସ୍ତୁକୁ ନେଇ ସୃଷ୍ଟି। ରାମାୟଣ, ମହାଭାରତ, ଦେବୀ ଭାଗବତ ଓ ଭାଗବତ ଆଦି ପୁରାଣ ଓ ଭାରତ ଇତିହାସରୁ କବି ବିଷୟବସ୍ତୁ ଚୟନ କରିଛନ୍ତି।

କବିନର୍ତ୍ତକୀ, ନିମାଇଁ ସନ୍ନ୍ୟାସ, ଗୌରଗାଥା, ବସନ୍ତ ସେନା, ଛତ୍ରପତି ଶିବାଜୀ ଓ ଚଣ୍ଡାଶୋକ କାବ୍ୟର ବିଷୟବସ୍ତୁ ଇତିହାସ ଆଧାରିତ। ଅନ୍ୟ କାବ୍ୟଗୁଡିକର ଆଧାର ହେଉଛି ଭାରତୀୟ ପୁରାଣ। ପୁରାଣ ବ୍ୟତୀତ କାଳିଦାସଙ୍କ କୁମାର ସମ୍ଭବ ଓ ଶ୍ରୀହର୍ଷଙ୍କ ନୈଷଧ କାବ୍ୟର ପ୍ରଭାବ ଯଥାକ୍ରମେ ହିମାଦ୍ରିଜେମା ଓ ଦମୟନ୍ତୀ କାବ୍ୟ ଉପରେ ବହୁ ସ୍ଥାନରେ ପଡିଥିବାର ଦେଖାଯାଏ।

ତ୍ରିବିକ୍ରମ ବା ବାମନାବତାର କାବ୍ୟର ବିଷୟବସ୍ତୁ କବି ଭାଗବତରୁ ଗ୍ରହଣ କରିଛନ୍ତି। ଏଥିରେ କାଶ୍ୟପଙ୍କ ଔରସରୁ ଅଦିତିଙ୍କ ଗର୍ଭରେ ତ୍ରିବିକ୍ରମ ବା ବାମନର ଜନ୍ମ। ବଳି ଠାରୁ ଦାନ ଗ୍ରହଣ ପ୍ରସଙ୍ଗ ଅତି ମନୋଜ୍ଞ ଭାବେ ବର୍ଣ୍ଣିତ ହୋଇଛି।

ଏହି କାବ୍ୟଟିର ଦ୍ୱିତୀୟ ସଂସ୍କରଣ ୧୯୬୪ ମସିହାରେ ରାଷ୍ଟ୍ରଭାଷା ସମବାୟ ପ୍ରେସରେ ହୋଇଛି। ଏହି ନୂତନ ସଂସ୍କରଣରେ କବି ପୂର୍ବକାବ୍ୟର କେତେକ ନୂତନ ସଂଯୋଗ କରିଥିବାର ଦେଖାଯାଏ। ତ୍ରିବିକ୍ରମ-ଜନ୍ମ ପ୍ରସଙ୍ଗରେ ପ୍ରଥମ ସଂସ୍କରଣ ଆରମ୍ଭ ହୋଇଥିବା ବେଳେ, ନଗର ବର୍ଣ୍ଣନା ଓ ଦେବମାତାଙ୍କ ପୁତ୍ର ପରିଜନ ପାଇଁ ଚିନ୍ତା ଆଦି ଦୁଇଟି ଛାନ୍ଦ ନୂତନ ସଂସ୍କରଣରେ ସଂଯୋଜିତ ହୋଇଛି।

ଦେବବ୍ରତ କାବ୍ୟର ବିଷୟବସ୍ତୁ ମହାଭାରତରୁ ଅଣାଯାଇଛି। ଏଥିରେ ଦେବବ୍ରତ ବା ଭୀଷ୍ମ ନାୟକ ତାଙ୍କର ପୂର୍ବଜନ୍ମର ନାନା ବିବରଣ ସହ, ବାଲ୍ୟ, ଯୌବନ, ବାର୍ଦ୍ଧକ୍ୟର ବର୍ଣ୍ଣନା ଏଥିରେ ରହିଛି। କବି ଦେବବ୍ରତଙ୍କ ତେଜଃ, ବୀର୍ଯ୍ୟ, ଶୌର୍ଯ୍ୟ, ତ୍ୟାଗ, ତପସ୍ୟା, ସତ୍ୟ ଓ ନ୍ୟାୟ ଆଦି ଆଦର୍ଶ ଗୁଣ ଗୁଡିକର ବିବରଣୀ ଦେଇଛନ୍ତି। ଗଙ୍ଗା ଓ ଶାନ୍ତନୁଙ୍କ ବିବାହଠାରୁ ମହାଭାରତ ସମରରେ ଭୀଷ୍ମଙ୍କ ଶରଶଯ୍ୟା ପର୍ଯ୍ୟନ୍ତ ବିଷୟବସ୍ତୁକୁ ଏହି କାବ୍ୟରେ ୧୨ଟି ପର୍ବରେ ବର୍ଣ୍ଣନା କରାଯାଇଛି।

ହିମାଦ୍ରି-ଜେମା କାବ୍ୟର କଥାବସ୍ତୁ ଶିବପୁରାଣ ଆଖ୍ୟାନ ଓ ଶ୍ରୀମଦ୍‌ଭାଗବତର ୪ର୍ଥ ସ୍କନ୍ଦ ଅବଲମ୍ବନରେ ରଚିତ। ଜନ ରଂଜନ ଉଦ୍ଦେଶ୍ୟରେ ଦେଶ କାଳ, ପାତ୍ର ବିବେଚନା କରି ଅନେକ ସ୍ଥଳରେ ନାନା ପୃଥକ ରଙ୍ଗରେ କାବ୍ୟଟିକୁ ରଂଜିତ କରାଯାଇଛି। ଏଥିରେ କୁମାରଙ୍କ ଜନ୍ମ ବିବରଣ ଓ ତାରକଙ୍କ ଚରିତ୍ରକୁ ପୃଥକ ଦୃଷ୍ଟିକୋଣରୁ ବିଚାର କରାଯାଇଛି। ପ୍ରଥମ ପର୍ବରେ ହିମାଳୟର ବର୍ଣ୍ଣନା, ଉମାଜନ୍ମ ଓ ଦୀକ୍ଷା ଲାଭଠାରୁ ଶେଷ ଚତୁର୍ଦ୍ଦଶ ପର୍ବରେ ତାରକ ନିଧନ ମଧ୍ୟରେ କାବ୍ୟ ଶେଷ ହୋଇଛି। କାବ୍ୟର ଅନ୍ୟ ପର୍ବମାନଙ୍କରେ ଉମାଙ୍କ ତପସ୍ୟା, ତାରକାସୁର ବରଲାଭ, ଅତ୍ୟାଚାର, ମଦନ ଭସ୍ମ, ରତିବିଳାପ, ଉମା ଓ ଶିବଙ୍କ ମିଳନ ଓ କୁମାର ଜନ୍ମ ଆଦି ପ୍ରସଙ୍ଗର ବର୍ଣ୍ଣନା ରହିଛି।

ହିମାଦ୍ରୀ ଜେମା କାବ୍ୟ ଉପରେ କାଳିଦାସଙ୍କ କୁମାର ସମ୍ଭବର ପ୍ରଭାବ ପଡିଥିବାର ଦେଖାଯାଏ। କାବ୍ୟଟି ବର୍ଣ୍ଣନା ପ୍ରଧାନ ହୋଇଛି। ବିଭିନ୍ନ ରସାନୁରୂପ ଛନ୍ଦରେ କାବ୍ୟ ଘଟଣାକୁ ଚିତ୍ତାକର୍ଷକ ଭଙ୍ଗୀରେ ବର୍ଣ୍ଣନା କରାଯାଇଛି। ମଦନ ଦହନ, ରତି ବିଳାପ, ଉମାଙ୍କ ତପସ୍ୟା ଓ ଶିବନିନ୍ଦା ଆଦି ବର୍ଣ୍ଣନାରେ 'କୁମାର ସମ୍ଭବ' ଓ ରଘୁବଂଶର ଅଜବିଳାପ ବର୍ଣ୍ଣନାର ପ୍ରଭାବ ଦେଖାଯାଏ।

ମଦନଭସ୍ମ ପ୍ରସଙ୍ଗରେ କୁମାର ସମ୍ଭବର ବର୍ଣ୍ଣନା-

କ୍ରୋଧଂ ପ୍ରଭୋ ସଂହାର ସଂହରେତି
ଯାବତ୍ ତ୍ୟିରଃ ମରୁତାଂ ଚରନ୍ତି
ତାବତସ୍ ବହ୍ନିର୍ଭବ ନେତ୍ର ଜନ୍ମା
ଭସ୍ମାବିଶେଷଂ ମଦନଂ ଚକାର (କୁମାର ସମ୍ଭବ ୩/୭୨)

ହିମାଦ୍ରୀ ଜେମାର ଅନୁରୂପ ବର୍ଣ୍ଣନା ଦେଖନ୍ତୁ ।

ଶତବହ୍ନି ପ୍ରଭାକରକି ଶତ ଶମ୍ପା ନିର୍ଗତ
ଓଲଟି ଲଲାଟୁ ଛିଟିକି ବ୍ୟାଧେ କଲାକି ହତ ?
ଆଉ ନାହିଁ ଉଭାଇଗଲା ଠୁଳ ଭସ୍ମ ସମ୍ଭାର
ପଲକ ମାତ୍ରକ ଲାଗିନି ଟଳି ଗଲା ମନ୍ଦର । (ଷଷ୍ଠ ପର୍ବ)

ପୁରାଣ ବର୍ଣ୍ଣନାର ଅଲୌକିକତା ଓ ଅଯୌକ୍ତିକତାକୁ କବି ଅନେକ ସ୍ଥଳରେ ପରିହାର କରିଛନ୍ତି ଓ ସ୍ଥଳ ବିଶେଷରେ ଯୁକ୍ତିଯୁକ୍ତ ଓ ସ୍ୱାଭାବିକ କରିବାକୁ ଚେଷ୍ଟା କରିଛନ୍ତି।

ରାଜସୂୟ ଯଜ୍ଞ ଖଣ୍ଡକାବ୍ୟଟି ଜରାସନ୍ଧ ଓ ଶିଶୁପାଳ ବଧ ବିଷୟବସ୍ତୁକୁ ନେଇ କଳ୍ପିତ। ଏକାଦଶ ପର୍ବରେ କାବ୍ୟଟି ସମ୍ପୂର୍ଣ୍ଣ ହୋଇଛି। ମହାଭାରତର ଉପାଖ୍ୟାନ ଉପରେ କାବ୍ୟର ପରିକଳ୍ପନା କରାଯାଇଛି। ପାଣ୍ଡବମାନଙ୍କ ନୂତନ ରାଜଧାନୀ ଖାଣ୍ଡବ ପ୍ରସ୍ଥର ନିର୍ମାଣଠାରୁ କାବ୍ୟ ଆରମ୍ଭ ହୋଇ ଶିଶୁପାଳ ବଧରେ କାବ୍ୟର ସମାପ୍ତି ଘଟିଛି।

ଶ୍ରୀ ଗୌରଗାଥା ଓ ଶ୍ରୀକୃଷ୍ଣ - ଚୈତନ୍ୟ (ନିମାଇଁ ସନ୍ୟାସ) ମହାପୁରୁଷ ଚୈତନ୍ୟ ଦେବଙ୍କ କାହାଣୀକୁ ନେଇ ପରିକଳ୍ପନା କରାଯାଇଛି। ଏଥିରେ ସେହି କରୁଣାମୟ ପ୍ରଭୁଙ୍କର ଜୀବନରୁ କତିପୟ ଘଟଣା ସ୍ଥାନିତ ହୋଇଛି। ଏହି କାବ୍ୟରେ ଶ୍ରୀଚୈତନ୍ୟଙ୍କ ଅନିର୍ବଚନୀୟ ଲାବଣ୍ୟ ଛଟା ଓ ଅଲୌକିକ ଅଙ୍ଗ ସୌଷ୍ଠବର ବର୍ଣ୍ଣନା ସହିତ ତାଙ୍କର ପ୍ରଚାରିତ ଧର୍ମ ମାର୍ଗ କିପରି ସୁଗମ ଓ ସରଳ ତଥା ସାର୍ବଜନୀନ ତହିଁର ଆଲୋଚନା ହୋଇଛି। ଶ୍ରୀ ଚୈତନ୍ୟଙ୍କ ଗୟା ଯାତ୍ରାଠାରୁ କାବ୍ୟର ଆରମ୍ଭ। ଏହା ପରେ ଅନ୍ୟ ପର୍ବମାନଙ୍କରେ ଗୟାରେ ଈଶ୍ୱରପୁରୀଙ୍କ ସାକ୍ଷାତ, ଗୟାଧାମରୁ ପ୍ରତ୍ୟାବର୍ତ୍ତନ ପରେ ଶଚୀ ମାତାଙ୍କର ଉତ୍କଣ୍ଠା ଓ ଆଶଙ୍କା, ଗାର୍ହସ୍ଥ୍ୟ ଜୀବନ, ଗୃହତ୍ୟାଗ, କେଶବ ଭାରତୀଙ୍କଠାରୁ ଦୀକ୍ଷା ଗ୍ରହଣ, ଶଚୀ ମାତାଙ୍କ ବିଳାପ, ଶ୍ରୀଚୈତନ୍ୟଙ୍କ ପୁରୁଷୋତ୍ତମ ଯାତ୍ରା, ବିଷ୍ଣୁପ୍ରିୟାଙ୍କ ତପସ୍ୱିନୀ ହେବା ଆଦି ଏଗାର ଗୋଟି ପର୍ବରେ ବର୍ଣ୍ଣିତ ହୋଇଛି। କାବ୍ୟଟି ଆଦ୍ୟପ୍ରାନ୍ତ କରୁଣ ରସାଶ୍ରିତ।

ଶ୍ରୀ ଗୌର ଗାଥାରେ ଶ୍ରୀ ଚୈତନ୍ୟ ଦେବଙ୍କ ମହିମା ବର୍ଣ୍ଣିତ ହେବା ସଙ୍ଗେ ସଙ୍ଗେ ଶ୍ରୀ ଅବଧୂତ ନିତ୍ୟାନନ୍ଦଙ୍କ ବିଷୟର ବର୍ଣ୍ଣନା ରହିଛି। ଏଥିରେ ମୁଖ୍ୟ ଉପାଖ୍ୟାନ

ହେଉଛି ଜଗାଇ ମାଧାଇ ଉଦ୍ଧାର ଓ ଚାପାଲ ଗୋପାଲ ଚରିତ। ବୈଷ୍ଣବ ଧର୍ମ ଦର୍ଶନ ସଙ୍ଗେ ଉପରୋକ୍ତ ମହାପୁରୁଷ ଗଣଙ୍କର ଯଶଗାନ ଶ୍ରୀ ଗୌରଗାଥା ଓ ଶ୍ରୀକୃଷ୍ଣ ଚୈତନ୍ୟ ଖଣ୍ଡକାବ୍ୟ ରଚ଼ନାର ଉଦ୍ଦେଶ୍ୟ।

**ଦାକ୍ଷାୟନୀ**

ବ୍ୟାସକୃତ ସଂସ୍କୃତଭାଗବତର କାହାଣୀକୁ ନେଇ ପରିକଳ୍ପିତ ଏହି କାବ୍ୟ। ଦକ୍ଷ ପ୍ରଜାପତିଙ୍କ ଯଜ୍ଞ ଆୟୋଜନ, ଶିବଙ୍କ ପ୍ରତି ପ୍ରଜାପତିଙ୍କ ଅବଜ୍ଞା ଓ ଶିବନିନ୍ଦା ହେତୁ ଦକ୍ଷକନ୍ୟା ଦାକ୍ଷାୟନୀର ଯଜ୍ଞକୁଣ୍ଡରେ ଆତ୍ମାହୁତି ସତୀଙ୍କ ଦେହତ୍ୟାଗରେ ଶିବଙ୍କର କୋପ ଓ ସତୀଙ୍କ ଶବ କାନ୍ଧରେ ପକାଇ ଭାରତର ଦେଶେ ଦେଶେ ବୁଲିବା ଆଦି ବିଷୟର ବର୍ଣ୍ଣନା ଏଥିରେ ସ୍ଥାନିତ ହୋଇଛି। ସତୀଙ୍କ ଶବଦେହକୁ ଶିବଙ୍କ ଦେହରୁ ବିଚ୍ଛିନ୍ନ କରିବା ପାଇଁ ନାରାୟଣଙ୍କ ଚକ୍ର ପ୍ରେରଣ, ତାଙ୍କ ଅଙ୍ଗ ଖଣ୍ଡ ଖଣ୍ଡ ହୋଇ ଭାରତର ବିଭିନ୍ନ ସ୍ଥାନରେ ପଡ଼ି ବାଉନଟି ପୀଠସ୍ଥାନ ସୃଷ୍ଟି ବିଷୟ ସହିତ ହିମାଳୟ ବର୍ଣ୍ଣନା, ବୀରଭଦ୍ର (ଶିବଙ୍କ ଜଟାରୁ ସୃଷ୍ଟି)ଙ୍କର ସଂଗ୍ରାମ, ଦକ୍ଷଙ୍କର ଶିରଚ୍ଛେଦ ଓ ଭୃଗୁଙ୍କ ଲାଞ୍ଛନା ଆଦି କାହାଣୀର ଅବତାରଣା ମଧ୍ୟ ଏଥିରେ ରହିଛି।

**ଉର୍ବଶୀ ବା ଅଷ୍ଟବଜ୍ର**

କୃଷ୍ଣପ୍ରସାଦଙ୍କ ପରିଣତ ବୟସର ରଚିତ ଏହା ଏକ ଖଣ୍ଡ କାବ୍ୟ। ବିଷୟବସ୍ତୁ ସଂସ୍କୃତ ମହାଭାରତ କାହାଣୀ ଅବଲମ୍ବନରେ କଳ୍ପିତ। ଯମୁନା ନଦୀ ତଟରେ ରାଜା ଦଣ୍ଡୀ ଓ କୁରୁକୁଳ ବଧୂ ଭଦ୍ରାଙ୍କ ସାକ୍ଷାତରୁ କଥାବସ୍ତୁର ଆରମ୍ଭ। ଦେବ ସଭାରେ ନୃତ୍ୟରତା ଉର୍ବଶୀ ଦୁର୍ବାସାଙ୍କୁ ଘୃଣା କରିବା ଫଳରେ ଘୋଟକୀ ରୂପରେ ମର୍ତ୍ତ୍ୟରେ ଜନ୍ମ, ଦଣ୍ଡୀ ଘୋଟକୀକୁ ଲାଭ କରିବା ଫଳରେ ଦ୍ୱାରକା ରାଜା ଶ୍ରୀକୃଷ୍ଣଙ୍କ କୋପ ଦୃଷ୍ଟିରେ ପଡ଼ି ଭଦ୍ରାଙ୍କର ଶରଣାପନ୍ନ ହେବା, ଭଦ୍ରାଙ୍କ ଅନୁରୋଧରେ ପାଣ୍ଡବ ଗଣ ଦ୍ୱାରକା ଆକ୍ରମଣ କରିବାକୁ ଯିବା ଓ ସମରଭୂମିରେ ଅଷ୍ଟବଜ୍ରଙ୍କ (ଶିବ, ଶୁକ୍ର, ଯମ, ତପନ, ସମୀରଣ, କାଳିକା, କେଶବ, ଫାଲଗୁନୀ) ମିଳନରେ ଉର୍ବଶୀ ଶାପମୁକ୍ତ ହେବା ଘଟଣାକୁ ନେଇ କାବ୍ୟର ପରିକଳ୍ପନା କରାଯାଇଛି। କାବ୍ୟଟି କବି ଗାୟକରତ୍ନ ହରେକୃଷ୍ଣ ନାଥଙ୍କୁ ଉତ୍ସର୍ଗ କରିଛନ୍ତି। ଦଶଗୋଟି ଛାନ୍ଦରେ କାବ୍ୟଟି ସମ୍ପୂର୍ଣ୍ଣ ହୋଇଛି। କାବ୍ୟର ଦ୍ୱିତୀୟ ଛାନ୍ଦରେ ଇନ୍ଦ୍ରଙ୍କ ସଭା ବର୍ଣ୍ଣନା, ତୃତୀୟ ଛାନ୍ଦରେ ଦେବାଳୟ ବର୍ଣ୍ଣନା, ଷଷ୍ଠ ଛାନ୍ଦରେ ଉର୍ବଶୀ ରୂପ ବର୍ଣ୍ଣନା, ଦଶମ ଛାନ୍ଦରେ ସଂଗ୍ରାମ ଭୂମିର ବର୍ଣ୍ଣନାରେ କବିଙ୍କର ମଂଜୁଳ କବିତ୍ୱର ସ୍ୱାକ୍ଷର ରହିଛି।

**ନଳ ଦମୟନ୍ତୀ**

କାବ୍ୟଟି କବିମଞ୍ଜୁଳଙ୍କର ଏକ ଅନବଦ୍ୟ ସୃଷ୍ଟି । ପ୍ରଥମ ସ୍ୱୟମ୍ବର ଓ ଦ୍ୱିତୀୟ ସ୍ୱୟମ୍ବର ଦୁଇ ଭାଗରେ କାବ୍ୟଟି ବିଭକ୍ତ । ପ୍ରଥମ ସ୍ୱୟମ୍ବର ଆଠଟି ପର୍ବ ଓ ଦ୍ୱିତୀୟ ସ୍ୱୟମ୍ବର ନଅଟି ଛାନ୍ଦରେ ବିଭକ୍ତ । ପ୍ରଥମ ଖଣ୍ଡରେ ଦମୟନ୍ତୀଙ୍କ ସ୍ୱୟମ୍ବର ବର୍ଣ୍ଣନା ପ୍ରସଙ୍ଗ, ଦେବତାମାନଙ୍କ ସ୍ୱୟମ୍ବରରେ ଯୋଗଦାନ, ଦମୟନ୍ତୀ ସମସ୍ତ ଛଳନା ଅତିକ୍ରମ କରି ନଳଙ୍କୁ ପତି ରୂପେ ବରଣ କରିବା, କଳି ଓ ଦ୍ୱାପରଙ୍କ ମନ୍ତ୍ରଣା, ନଳଙ୍କ ଭାଇ ପୁଷ୍କର କଳିଙ୍କ ପ୍ରଭାବରେ ଅକ୍ଷ ପ୍ରତିଯୋଗିତାରେ ନଳଙ୍କୁ ଜୟ କରିବା ଓ ଶେଷରେ ନଳ ଦମୟନ୍ତୀଙ୍କ ସହିତ ନିର୍ବାସିତ ହେବା ବିଷୟ ସ୍ଥାନିତ ହୋଇଛି ।

ଦ୍ୱିତୀୟ ଭାଗ ଦମୟନ୍ତୀ ଓ ନଳଙ୍କର ଯନ୍ତ୍ରଣା ଦଗ୍ଧ ଜୀବନଚିତ୍ରରେ ଭାସ୍ୱର । ଅରଣ୍ୟ ମଧ୍ୟରେ ଦମୟନ୍ତୀଙ୍କୁ ଛାଡି ନଳଙ୍କ ପଳାୟନ, ଦମୟନ୍ତୀଙ୍କର ସୁବାହୁ ଦେଶରେ ଆଶ୍ରୟ ଗ୍ରହଣ, ବିଦର୍ଭ ରାଜାଙ୍କ ଦ୍ୱାରା ଚାର ପ୍ରେରଣ, ଦମୟନ୍ତୀଙ୍କ ପିତୃ ରାଜ୍ୟ ପ୍ରତ୍ୟାବର୍ତ୍ତନ, ନଳ ବନ ମଧରେ ବୁଲୁଥିବା ବେଳେ କର୍କୋଟକର ଦଂଶନ ଓ ରୂପ ପରିବର୍ତ୍ତନ, ବିଦର୍ଭ ରାଜାଙ୍କର ଜାମାତା ସନ୍ଧାନ ପାଇଁ ଚେଷ୍ଟା, ଶେଷରେ ଦମୟନ୍ତୀଙ୍କର ଛଳନାପୂର୍ଣ୍ଣ ଦ୍ୱିତୀୟ ସ୍ୱୟମ୍ବର ଘୋଷଣା ଓ ନଳଙ୍କର ଋତୁପର୍ଣ୍ଣ ରାଜାଙ୍କ ସହ ବିଦର୍ଭ ଆଗମନ ଓ ଦମୟନ୍ତୀଙ୍କ ସହ ମିଳନ ଆଦି ଘଟଣାକୁ ନେଇ ଦ୍ୱିତୀୟ ଭାଗର ପରିକଳ୍ପନା କରାଯାଇଛି ।

ସଂସ୍କୃତ ମହାଭାରତ କାହାଣୀ ଅବଲମ୍ବନରେ କାବ୍ୟଟି ଲିଖିତ ହୋଇଥିବାର କବି କାବ୍ୟ ଶେଷରେ ସୂଚନା ଦେଇଛନ୍ତି ।

ମହାଭାରତର କଥା କରିଲି ଗାୟନ
ଯାହାସେ ଗାଇଲେ ଗୀତି କୃଷ୍ଣ – ଦ୍ୱୈପାୟନ

ଅନେକ ସ୍ଥଳରେ 'ନୈଷଧ' କାବ୍ୟର ପ୍ରଭାବ ପ୍ରତ୍ୟକ୍ଷ ଭାବରେ ପଡ଼ିଥିବା ଦେଖାଯାଏ ।

**ପାଞ୍ଚାଳୀ ପଟ୍ଟାପହରଣ**

କବିଙ୍କର ଏହା ଏକ ଅନବଦ୍ୟ ସୃଷ୍ଟି । ଏକାଦଶ ଛାନ୍ଦରେ ବିଭକ୍ତ ମହାଭାରତ କାହାଣୀକୁ ନେଇ କାବ୍ୟର ପରିକଳ୍ପନା । ପାଞ୍ଚାଳୀଙ୍କ ବସ୍ତ୍ରହରଣ ମୁଖ୍ୟ ବିଷୟ ହେଲେ ମଧ କେତେଗୁଡିଏ ପରିଚିତ ପୌରାଣିକ କାହାଣୀର ସମବାୟରେ କାବ୍ୟର କଥାବସ୍ତୁ ଗଢି କରିଛି । ପାଞ୍ଚାଳୀଙ୍କ ଅନାବିଳ କୃଷ୍ଣ ପ୍ରେମର ଜୟଗାନ କାବ୍ୟର ପ୍ରତିପାଦିତ ବିଷୟ । ଏଥିପାଇଁ ମହାଭାରତର ପାଞ୍ଚଟି ପ୍ରସଙ୍ଗକୁ କବି ଗ୍ରହଣ କରିଛନ୍ତି । କ୍ଷୁର ଧାରରେ

ଶ୍ରୀକୃଷ୍ଣଙ୍କ ଅଙ୍ଗୁଳି କଟିବା ଓ ପାଞ୍ଚାଳୀ କ୍ଷତରୁ ରକ୍ତ ଶୋଷଣ ପାଇଁ ପିନ୍ଧାବସନ ଫାଡି ଦେବା, କାମ୍ୟକ ବନରେ କୃଷ୍ଣଙ୍କୁ ଅଧରଲଗ୍ନ ଉଚ୍ଛିଷ୍ଟ ଖୁଆଇବା, କୃଷ୍ଣଙ୍କର ସଖାଡାକ ଶୁଣି ଉଲଗ୍ନା ହୋଇ ଧାଇଁ ଆସିବା, କୁରୁସଭାରେ ହୃଦୟ ବଲ୍ଲଭ ବୋଲି ଆତୁର ଆହ୍ୱାନ ଦେବା, ମାର୍କଣ୍ଡେୟଙ୍କୁ ବସ୍ତ୍ରହୀନ ଦେଖି ନିଜବସ୍ତ୍ରକୁ ଭାଗ କରି ପିନ୍ଧାଇବା ଆଦି ଘଟଣାର ବର୍ଣ୍ଣନା କାବ୍ୟରେ କରାଯାଇଛି । କାବ୍ୟଟି ୧୯୪୭ ମସିହା ଅକ୍ଟୋବର ମାସରେ ରଚିତ ଓ କୃଷକ ପ୍ରେସରେ ୧୯୫୨ରେ ପ୍ରକାଶିତ ।

ପ୍ରଥମ ଛାନ୍ଦରେ ରୁକ୍ମିଣୀଙ୍କ ନିକଟରେ ପାଞ୍ଚାଳୀଙ୍କ ଭକ୍ତିର ମହନୀୟତା ବର୍ଣ୍ଣନା । ଦ୍ୱିତୀୟ ଛାନ୍ଦରେ ଦ୍ୱାରକାରେ ବସନ୍ତଉତ୍ସବ, ତୃତୀୟ ଛାନ୍ଦରେ ପାଞ୍ଚାଳୀଙ୍କର ଦ୍ୱାରକା ଆଗମନ ଓ କୃଷ୍ଣଙ୍କ ଅଙ୍ଗୁଳିର କ୍ଷତରୁ ରୁଧିର ଶୋଷଣ, ୪ର୍ଥ ଠାରୁ ଦଶମ ଛାନ୍ଦରେ କୁରୁସଭାରେ ପାଞ୍ଚାଳୀଙ୍କ ବସ୍ତ୍ରହରଣ କଥା ଓ ଏକାଦଶ ଛାନ୍ଦରେ ପାଣ୍ଡବଗଣଙ୍କ ମୁକ୍ତି ଓ ଦ୍ରୌପଦୀ ଶ୍ରୀକୃଷ୍ଣଙ୍କ ଭାବଗର୍ଭକ କଥୋପକଥନ ରହିଛି । କାବ୍ୟର ଶେଷରେ କବି ନିଜର ଜନ୍ମଭୂମି ଯାଜପୁରର ଗୌରବ ଗାନ କରିଛନ୍ତି ।

କାବ୍ୟର ପ୍ରକାଶ ପରେ 'ଝଙ୍କାର' ପତ୍ରିକାରେ ପୁସ୍ତକ ସମୀକ୍ଷା ବିଭାଗରେ ଏହାର ସମାଲୋଚନା ପ୍ରକାଶିତ ।[୩]

**ପାତକୀ**

ରାମାୟଣ କଥାବସ୍ତୁ ଆଧାରିତ କୃଷ୍ଣପ୍ରସାଦଙ୍କର ଏହା ଅନ୍ୟ ଏକ କାବ୍ୟ । କବିଙ୍କ ପରିଣତ ବୟସର ଏହା ସୃଷ୍ଟି । କାବ୍ୟ ଶେଷରେ କବି ଲେଖିଛନ୍ତି-

ଜୀବନ ସନ୍ଧ୍ୟା କାଳେ ନେତ୍ର ଟାଳିବା ଫଳେ
ଗାଇଲି ରାମୟଣ ଗୀତ
କୋବିଦ ହୃଦ ବିନୋଦନେ କୃଷ୍ଣ ପ୍ରସାଦ
ନଜାଣେ ହିତ କି ଅହିତ ।

୧୯୫୨ ମସିହାରେ କୃଷକ ପ୍ରେସରେ କାବ୍ୟଟି ମୁଦ୍ରିତ । ଦଶରଥଙ୍କ ଅନ୍ଧମୁନିଙ୍କ ପୁତ୍ରହତ୍ୟା ଓ ଅଭିଶାପ ଲାଭ ମୁଖ୍ୟ କଥାବସ୍ତୁ । ସାତଗୋଟି ଛାନ୍ଦରେ ବିଭକ୍ତ କରୁଣ ରସାଶ୍ରିତ ଏହା ଏକ ଅନବଦ୍ୟ ସୃଷ୍ଟି । ରାମ ନାମର ଜୟଗାନ କାବ୍ୟର ବିଶେଷତ୍ୱ । ଚିତା ଅଗ୍ନି ନିକଟରେ ଅନ୍ଧମୁନି ଦଶରଥଙ୍କୁ ଅଭିଶାପ ଦେବା ବେଳେ ରାମଙ୍କ ଜନ୍ମର ଏକ ଅଭିନବ ପରିକଳ୍ପନା କବି କରିଥିବାର ଦେଖାଯାଏ । କବିଙ୍କ ଭାଷାରେ –

୩. ଝଂକାର– ୪/୪ ପୃ ୪୩୩/୩୪

ଜାଣିଛି ଅପୁତ୍ରିକ, ଲଲାଟେ ବିଧି ଲେଖ
ଅବଶ୍ୟ ପୋଛିବ ମୋ ପାଇଁ
ଘେନ ମୋହ ହସ୍ତରୁ ଏ ବିଲ୍ୱଦଳ ଚରୁ
ମହିଷୀ ଗଣେ ଦିଅ ଯାଇଁ
ଗର୍ଭୋଦୟ, ଦେଖିବ ସତ୍ୟ ସନାତନ
ବ୍ରହ୍ମ କରିବେ ଅଧିଷ୍ଠାନ
ତା'ନାମ ରଖ 'ରାମ' ସାକ୍ଷ୍ୟ କୈବଲ୍ୟ ଧାମ
ନୟନ ମନ ଅଭିରାମ ।[୪]

**କିଷ୍କିନ୍ଧ୍ୟା**

ନଅଟି ପର୍ବରେ ବିଭକ୍ତ କିଷ୍କିନ୍ଧ୍ୟା କାବ୍ୟର ବିଷୟବସ୍ତୁ ରାମାୟଣରୁ ଗ୍ରହଣ କରାଯାଇଛି । ଜଟାୟୁ ସହିତ ଶ୍ରୀରାମଙ୍କ ଭେଟଠାରୁ ବାଳୀ ମୁକ୍ତି ପର୍ଯ୍ୟନ୍ତ ଘଟଣାବଳୀ ଏଥିରେ ସ୍ଥାନିତ ହୋଇଛି । ପ୍ରଥମ ପର୍ବରେ ଜଟାୟୁ ସହିତ ରାମଙ୍କର ଭେଟ ଓ ସୀତାହରଣ ଉଦନ୍ତ ପ୍ରାପ୍ତି ଓ ଜଟାୟୁର ମୁକ୍ତି । ଦ୍ୱିତୀୟ ପର୍ବରେ ଦଣ୍ଡକାରଣ୍ୟରେ ସୂର୍ପଣେଖାର ନାସା କର୍ଣ୍ଣ ଛେଦନ, ସୁବାହୁ ଦୈତ୍ୟ ବଧ ଓ ଜନ୍ମ ବିବରଣ ପ୍ରଦତ୍ତ ହୋଇଛି । ତୃତୀୟ ପର୍ବରେ କବନ୍ଧଠାରୁ ସୁଗ୍ରୀବଙ୍କ ସନ୍ଧାନ, ଚତୁର୍ଥ ପର୍ବରେ ଶବରୀ ଶ୍ରମଣୀ ଆଶ୍ରମରେ ଆତିଥ୍ୟ ଗ୍ରହଣ ଓ ତା'ଠାରୁ ସୁଗ୍ରୀବଙ୍କ ସମାଚାର ପ୍ରାପ୍ତ ହେବା, ପଞ୍ଚମ ପର୍ବରେ ରାମ ହନୁମାନ ଭେଟ, ଷଷ୍ଠ ପର୍ବରେ ସୁଗ୍ରୀବଙ୍କଠାରୁ ସୀତାଙ୍କ ସମ୍ବାଦ ପ୍ରାପ୍ତି, ସପ୍ତମ ପର୍ବରେ ମଳୟ ପ୍ରସଙ୍ଗ, ଅଷ୍ଟମ ପର୍ବରେ ବାଳୀ ସହ ଯୁଦ୍ଧ ପୂର୍ବରୁ ରାମଙ୍କ ପରୀକ୍ଷା, ନବମ ପର୍ବରେ ବାଳୀ ବଧ ଓ ମୁକ୍ତି ବିଷୟର ଅବତାରଣା କରାଯାଇଛି । ବିଷୟବସ୍ତୁର ସେଭଳି ବୈଚିତ୍ର୍ୟ ନଥିଲେ ବି ନବମ ପର୍ବରେ ରାମ ଓ ବାଳୀଙ୍କର କଥୋପକଥନରେ କାବ୍ୟକାରଙ୍କ ମୌଳିକତା ରହିଛି ।

**ପାଦୁକା**

ଅଯୋଧ୍ୟାରୁ ରାମଚନ୍ଦ୍ରଙ୍କ ନିର୍ବାସନ ପରେ ଭରତଙ୍କ ସହ ରାମଙ୍କ ମିଳନ ଓ ପାଦୁକା ପ୍ରଦାନ ବିଷୟବସ୍ତୁକୁ ନେଇ ପାଦୁକା ଖଣ୍ଡକାବ୍ୟର ସୃଷ୍ଟି । ଏହା ମଧ୍ୟ ରାମାୟଣର ଅନୁରୂପ । କାବ୍ୟର ମୁଖ୍ୟ ସ୍ୱର ହେଉଛି କରୁଣ । ଗୁହକ ଆଶ୍ରମରେ ରାତ୍ରି ଯାପନ ପରେ ଭରଦ୍ୱାଜଙ୍କ ଆଶ୍ରମରେ ଜଟାବନ୍ଧନଠାରୁ କାବ୍ୟର ଆରମ୍ଭ । ଏହାପରେ ଭରତଙ୍କ ମାତୁଳାଳୟରୁ ଅଯୋଧ୍ୟା ପ୍ରତ୍ୟାବର୍ତ୍ତନ, ମାଣ୍ଡବୀଙ୍କର ଭରତଙ୍କ ଠାରେ ରାଜା ଦଶରଥଙ୍କ

---

୪. କୃଷ୍ଣପ୍ରସାଦ ବସୁ– ପାତକୀ ପୃ ୨୭/୨୯

ମହାପ୍ରୟାଣ ବର୍ଣ୍ଣନା, ମନ୍ଥରାର ରୂପ ବର୍ଣ୍ଣନା, କୈକେୟି ଓ ଭରତ ଭେଟ, ଗୁହକ ରାଜ୍ୟକୁ ଭରତଙ୍କ ଗମନ, ଚିତ୍ରକୂଟରେ ରାମ ଭରତ ମିଳନ ଓ ପାଦୁକା ପ୍ରଦାନ ବ୍ୟାପାର ବର୍ଣ୍ଣିତ।

**କଚ୍ ଦେବଯାନୀ**

କଚ୍ ଓ ଦେବଯାନୀ ଦୁଇ ତରୁଣ ତରୁଣୀ। ସେମାନଙ୍କ କୈଶୋର ଜୀବନର ହସକାନ୍ଦକୁ ନେଇ ଏହି କାବ୍ୟର ପରିକଳ୍ପନା। ପ୍ରଥମ ଛାନ୍ଦରୁ କିଶୋର କିଶୋରୀଙ୍କ ଚାରି ଚକ୍ଷୁର ମିଳନ ଓ ଅନୁରାଗର ସଂଚ୍ଚାର। କଚ୍ ପ୍ରତି ଦେବଯାନୀଙ୍କ ଦୁର୍ବଳତାକୁ ଅତି ସଂଯତ ଭାବରେ ପୁଲକମୟୀ ଭାଷାରେ କବି ରୂପଦାନ କରିଛନ୍ତି। ଉଭୟଙ୍କ ମଧ୍ୟରେ ଘନିଷ୍ଠତା ବଢ଼ିଛି। ଦେବଯାନୀ କଚ୍‌ଙ୍କୁ ପରୋକ୍ଷରେ ମିଳନ ପାଇଁ ଆହ୍ୱାନ କରୁଛନ୍ତି। କଚ୍ କିନ୍ତୁ ନିର୍ବିକାର। କବିଙ୍କ ସଂଯତ ବର୍ଣ୍ଣନା ଏହିପରି-

କଚ୍ ଫୁଲ ତୋଳେ ମାଧବୀ ଲତାରେ
ଦେବଯାନୀ ଥାଏ ତଳେ
କେବେ କେବେ ଫୁଲ ଖସୁଁ ଖସି ପଡ଼େ
କିଶୋରୀର ବକ୍ଷସ୍ଥଳେ,
ହସି ବୋଲେ ଚାତୁରୀ - ଚନ୍ଦ୍ର କୁମୁଦିନୀ ଏହିପରି
ଜ୍ୟୋତ୍ସ୍ନା ଜାଲ ପ୍ରସାରି - ଢାଳି ନ ଦିଏ କି ସୁଧାବାରି।।

କାଖରେ କଳସୀ ଘେନି କଚ୍‌ଙ୍କ ମୁରଲୀ ଶୁଣିବା ଲାଗି ଦେବଯାନୀ ବାୟାଣୀ ହୋଇଯାଏ। କଚ୍ ପାଇଁ ପ୍ରସ୍ତୁତ ମାଳାରେ ଚନ୍ଦନ କର୍ପୁର ବୋଳି ଦିଏ। କଚ୍ ପିନ୍ଧା ବସନ କୁଞ୍ଚ ରଖେ, ତୁଳସୀ ଚଉରା ତଳେ ଦେବ ମୂର୍ତ୍ତି ଆଙ୍କୁ ଆଙ୍କୁ କଚ୍ ନାମ ଲେଖେ। ଏ ସବୁର ମନୋଜ୍ଞ ବର୍ଣ୍ଣନା କାବ୍ୟର ପ୍ରାଣ ସ୍ୱରୂପ। ବୃହସ୍ପତିଙ୍କ ପୁତ୍ର କଚ୍ ଲାଳସାହୀନ। ଏକମାତ୍ର ଉଦ୍ଦେଶ୍ୟ କଠୋର ସାଧନାରେ ଗୁରୁଙ୍କୁ ସନ୍ତୁଷ୍ଟ କରି ମନ୍ତ୍ରଲାଭ। ଗୁରୁ ଶୁକ୍ରାଚାର୍ଯ୍ୟ କଚ୍‌ଙ୍କ ଭକ୍ତିରେ ସନ୍ତୁଷ୍ଟ। ଅସୁରମାନେ କଚ୍‌ଙ୍କ ଉଦ୍ଦେଶ୍ୟ ଜାଣିପାରି ତାଙ୍କୁ ହତ୍ୟା କରିବା ପାଇଁ ଚେଷ୍ଟା କରିଛନ୍ତି। ବଣରେ କଚ୍‌ଙ୍କୁ ହତ୍ୟା କରି, ମାଂସକୁ ଖଣ୍ଡ ଖଣ୍ଡ କରି ପୋଡ଼ି ଦେଇ ପାଉଁଶ କରି ସୁରା ସହିତ ମିଶାଇ ଗୁରୁଙ୍କୁ ପିଆଇ ଦେଇଛନ୍ତି। ଗୁରୁ ଧ୍ୟାନ ବଳରେ ସବୁ ଜାଣି ଗର୍ଭରେ ଥିବା କଚ୍‌ଙ୍କୁ ମୃତ ସଂଜିବନୀ ମନ୍ତ୍ର ଶିକ୍ଷା ଦେଇଛନ୍ତି। କଚ୍ ଗୁରୁଙ୍କ ଉଦର ଭେଦ କରି ବାହାରି ଆସି ଗୁରୁଙ୍କୁ ମନ୍ତ୍ର ବଳରେ ବଞ୍ଚାଇଛନ୍ତି। କାହାଣୀର ଏ ଗୋଟିଏ ଦିଗ।

ଅନ୍ୟ ଦିଗରେ ଶିକ୍ଷା ଶେଷ ପରେ କଚ୍‌ଙ୍କର ବିଦାୟ ବେଳା ଉପସ୍ଥିତ। ଦେବଯାନୀର ସ୍ୱପ୍ନ ଏ ଯାଏ ସାକାର ହୋଇନାହିଁ। ଶେଷରେ ସେ କଚ୍‌ଙ୍କ ନିକଟରେ

ନିଜ ମନର ଗୋପନ କଥା ବ୍ୟକ୍ତ କରିଛନ୍ତି । କଚ୍‌ଙ୍କ ପବିତ୍ର ହୃଦୟ ଏହାକୁ ଗ୍ରହଣ କରି ପାରିନାହିଁ । ସବୁକୁ ସେ ପ୍ରତ୍ୟାଖ୍ୟାନ କରିଛନ୍ତି । ଏହାପରେ ଅପମାନିତା ଦେବଯାନୀ ଅଭିଶାପ ଦେଇଛନ୍ତି "କଚ୍‌ଙ୍କ ସମସ୍ତ ବିଦ୍ୟାଲାଭ ନିଷ୍ଫଳ ହେଉ ।" କଚ୍ ନିର୍ବିକାର ଭାବରେ ବରଣ କରିନେଇଛନ୍ତି ଅଭିଶାପକୁ । ଦଶଟି ଛାନ୍ଦରେ ବିଭକ୍ତ କରି ମହାଭାରତର ମନୋଜ୍ଞ କାହାଣୀକୁ କବି ରୂପ ଦେଇଛନ୍ତି ଏହି କାବ୍ୟରେ ।

**ପ୍ରଭାସ**

ପ୍ରଭାସ ଖଣ୍ଡକାବ୍ୟ କବିଙ୍କର ଅନବଦ୍ୟ ସୃଷ୍ଟି । ଏଗାର ଗୋଟି ପର୍ବରେ ବିଭକ୍ତ । ଏହି କାବ୍ୟରେ କବି ପ୍ରଭାସ ଯଜ୍ଞରେ କୃଷ୍ଣ ଗୋପୀଙ୍କ ପୁନର୍ମିଳନର ବର୍ଣ୍ଣନା ଦେଇଛନ୍ତି । କରୁଣ ରସ ଆଧାରିତ ଏହି କାବ୍ୟରେ ଗୋପୀ ଭକ୍ତିର ପରାକାଷ୍ଠା ପ୍ରଦର୍ଶିତ ହୋଇଛି । ପ୍ରଥମ ଓ ଦ୍ୱିତୀୟ ପର୍ବରେ କବି ଶ୍ୟାମ ବିଚ୍ଛେଦରେ ବୃନ୍ଦାବନର ହାହୁତାଶମୟ ଜୀବନ ଚିତ୍ର ଓ ପ୍ରକୃତିର ବିବର୍ଣ୍ଣ ରୂପର ବର୍ଣ୍ଣନା କରିଛନ୍ତି । ନିସର୍ଗ ପ୍ରକୃତିଠାରୁ ମାନବ ସମସ୍ତେ ଏଠାରେ ବିଚ୍ଛେଦ- ବିଧୁର ଆର୍ତ୍ତନାଦ କରୁଛନ୍ତି । ଉଦ୍ଧବ ବୃନ୍ଦାବନରେ ପ୍ରବେଶ କରି ରାଧା ଓ ଗୋପୀମାନଙ୍କର ଅବସ୍ଥା ଦେଖୁଛନ୍ତି । ପ୍ରଭାସ ଯଜ୍ଞକୁ ଗୋପପୁର ନିବାସୀଙ୍କୁ କୃଷ୍ଣଙ୍କର ନିମନ୍ତ୍ରଣ ଜଣାଉଛନ୍ତି । ପ୍ରଭାସରେ ଯଜ୍ଞର ଆୟୋଜନର ବର୍ଣ୍ଣନା ଦ୍ୱିତୀୟ ପର୍ବରେ ଦିଆଯାଇଛି । ତୃତୀୟ ପର୍ବରେ ଦେବକୀ ନାରଦ ସମ୍ବାଦ ଓ ପ୍ରଭାସରେ ଯଜ୍ଞ ଆୟୋଜନର ବର୍ଣ୍ଣନା, ଗୋପାଙ୍ଗନା ମାନଙ୍କର ପ୍ରଭାସ ଆଗମନ, ଦେବକୀଙ୍କ ମନରେ ଶଂକା ଓ ଭାବାନ୍ତର ସୃଷ୍ଟି କରୁଛି । ପଞ୍ଚମ ପର୍ବରେ ପ୍ରଭାସ ଉଦ୍ଦେଶ୍ୟରେ ବ୍ରଜବାସୀଙ୍କ ଗମନର ଦୃଶ୍ୟ । ଷଷ୍ଠ ପର୍ବରେ ନାରଦଙ୍କ ଉପଦେଶ ପରେ ଦେବକୀ ଓ ଅଷ୍ଟମହିଷୀ ସମସ୍ତେ ଶଙ୍କିତ ହୋଇ ନାନା ପ୍ରତିକାରର ପରିକଳ୍ପନା କରି 'ଦ୍ୱାର ବାସନ୍ଦ' ପନ୍ଥା ଅବଲମ୍ବନ କରିଛନ୍ତି । ସପ୍ତମ ସର୍ଗରେ କୃଷ୍ଣ ଦର୍ଶନ ପାଇଁ ଗୋପାଙ୍ଗନାଙ୍କ ବ୍ୟାକୁଳତା ଅତି ମର୍ମସ୍ପର୍ଶୀ ଭାଷାରେ ବ୍ୟକ୍ତ କରାଯାଇଛି । ଏହି ସର୍ଗ ହିଁ କାବ୍ୟର ମଧମଣି ସ୍ୱରୂପ । କରୁଣ ରସର ବିମଳ ପ୍ରବାହ ସମଗ୍ର ସର୍ଗକୁ ରସସିକ୍ତ କରିଛି । ଗୋପାଙ୍ଗନାମାନେ ପ୍ରହରୀକୁ ଦେହଦାନ ବଦଳରେ କୃଷ୍ଣ ଦର୍ଶନ ପାଇଁ ସୁଯୋଗ ଦେବାକୁ ନିବେଦନ କରୁଛନ୍ତି । ବର୍ଣ୍ଣନା ଏହିପରି-

ବୋଲେକେ ରୂପସୀ ଆସି ପ୍ରହରୀ କର ପରଶି
ନର ଦେହୀ ହୋଇ କାର ନାହିଁ ଲାଳସା
ଆମ୍ଭେ ଲକ୍ଷଗୋପାଙ୍ଗନା ହୀରା ନୀଳା ମୋତି ସୁନା
ତନୁ ରାଗ ଯେବେ ବାଞ୍ଛା କର ତୋ ଯୋଷା

ନବୀନ ଯୌବନା ଷୋଡ଼ଶୀ
ବରି ନେବେ ବରପଣେ ଏକ୍ଷଣି ଆସି,
ଦେଖାଅ ମାତ୍ରକ ଥରେ କାତର ନେତ୍ର ପଥରେ
ବ୍ରଜପୁର ନଟବର ଶ୍ୟାମଳ ଶଶି।

କୃଷ୍ଣଙ୍କ ଦର୍ଶନ ପାଇଁ ଦେବକୀଙ୍କଠାରେ ଯଶୋଦାଙ୍କ ଆତୁର ନିବେଦନ ଦେଖନ୍ତୁ :-

ଆସିନାହିଁ ଛାଟିବାକୁ ଆସିନାହିଁ ଲୁଟିବାକୁ
ତୁମ୍ଭ କୃଷ୍ଣ ରହିଥିବ ତୁମ୍ଭ ଅଞ୍ଚଳେ
କେବଳ କ୍ଷୀର ଲବଣୀ ଅଧାମ ମୋ କରେ ଘେନି
ଖୁଆଇବି ସରାଗରେ, ଖାଇବ କଳେ
ଏତିକି ମୋ ବାଞ୍ଛା ଅନ୍ତରେ
ଜରାଜୀର୍ଣ୍ଣ ଗୋପ ରାଜା ଦେଖିବେ ଥରେ
ତାର ସେ କମଳ-ଆଖି କଟାକ୍ଷ ଭ୍ରୂରୁ ନିରେଖି
ଗୋଗୋଷ୍ଠ ଗୋପାଳ ଗୋପୀ ଛନ୍ତି ବ୍ୟାକୁଳେ। (ସପ୍ତମ ସର୍ଗ)

ଏଇଠି ଦେବକୀ ଓ ଯଶୋଦାଙ୍କ କଳହ ଅତି ମନୋଜ୍ଞ ହୋଇ ଉଠିଛି। ଅଷ୍ଟମ ସର୍ଗରେ ମାତୃତ୍ୱର ପରୀକ୍ଷା! ରାଜମାତା ଦେବକୀ ଡ଼ାକୁଛନ୍ତି ବାରମ୍ବାର, କୃଷ୍ଣ ଶୁଣିପାରୁନାହାନ୍ତି। ଯଶୋଦା ଡାକୁଛନ୍ତି "ନୀଳମଣି ତୋ ଲାଗି ଯଶୋଦା ବାୟାଣୀ" ଏତିକିରେ କୃଷ୍ଣ ଭାବବିହ୍ୱଳ ହୋଇ ପହଞ୍ଚିଛନ୍ତି ଯଶୋଦାଙ୍କ ନିକଟରେ। ଦେବକୀଙ୍କ ଦର୍ପ ଚୂର୍ଣ୍ଣ ହୋଇଚି। ସମସ୍ତେ ଯଶୋଦାଙ୍କୁ ବନ୍ଦନା କରିଛନ୍ତି।

ଏହାପର ତିନି ସର୍ଗରେ ରାଧାକୃଷ୍ଣଙ୍କ ମିଳନ ଓ ରାଧା ଭାବର ରହସ୍ୟ ମଧୁର ଭାବରେ କବି ବର୍ଣ୍ଣନା କରିଛନ୍ତି। ବେଣୁଧର ନଟବର ପରିବର୍ତ୍ତେ ଚକ୍ରଧର କୃଷ୍ଣଙ୍କୁ ଦେଖି ରାଧାଙ୍କ ନୟନରୁ ଅଶ୍ରୁ ଝରି ପଡ଼ିଛି। ନିଜର ହୃଦୟବଲ୍ଲଭଙ୍କ ସ୍ଥାନରେ ଦ୍ୱାରକା-ରାଜନଙ୍କୁ ରାଧା ଗ୍ରହଣ କରିପାରୁନାହାନ୍ତି। ଅଶ୍ରୁକାତର ହୃଦୟରେ ରାଧା କହୁଛନ୍ତି–

"ପଡୁନାହିଁ ମନେ ସେଦିନର ଅଭିସାର,
ମିଳନ ଆକୁଳ ତୃଷା ଘନ ଅନ୍ଧକାର।
ପ୍ରାଙ୍ଗଣ ତଳ ପଲ୍ଲବ ଘନଲତା ପାଶେ,
ଉତ୍ସୁକ ନିଶି ଫେଇଛି କ୍ଷଣ ସଙ୍ଗ ଆଶେ।
ବନ ବିହାରିଣୀ ବାମା -

ଆଜି ତ ସେ ନେତ୍ରେ ନଦିଶିବ ଅଭିରାମା ଫ (ଏକାଦଶ ସର୍ଗ)

ଭାବ ଗୁମ୍ଫନ, ବର୍ଣ୍ଣନା ବିଭବ ଓ ରସ ବିନ୍ୟାସ ଦୃଷ୍ଟିରୁ ବିଚାର କଲେ 'ପ୍ରଭାସ ଯଜ୍ଞ' କୃଷ୍ଣ ପ୍ରସାଦଙ୍କର ସର୍ବଶ୍ରେଷ୍ଠ କାବ୍ୟ।

**ପାଲାକାବ୍ୟର ବୈଶିଷ୍ଟ୍ୟ ବିଚାର**

କବିମଞ୍ଜୁଳଙ୍କ ଖଣ୍ଡକାବ୍ୟର ସୃଷ୍ଟି ଏକ ନିର୍ଦ୍ଦିଷ୍ଟ ଆବଶ୍ୟକତାକୁ ନେଇ। ପ୍ରାଚୀନ ଓଡ଼ିଆ ଲୋକ ନାଟକ ପାଲାକୁ ଯୁଗୋପଯୋଗୀ କରିବା ସଙ୍ଗେ ସଙ୍ଗେ ଲୋକ ସାହିତ୍ୟ ଓ ବିଦଗ୍ଧ ସାହିତ୍ୟର ସଂଯୋଗ ସେତୁ ପ୍ରତିଷ୍ଠା ଏହାର ମୂଳ ଲକ୍ଷ୍ୟ। ତାଙ୍କ ଭାଷାରେ କହିଲେ "ଆମେ ଯାଉଛୁ ଯଥା ସମ୍ଭବ ଉଭୟ ଦିଗ ରକ୍ଷାର ନୂତନ ପଥ ଆବିଷ୍କାର କରିବାକୁ। ଆମେ ସେହି ପ୍ରାଚୀନକୁ ଦେଖାଇବୁ ସମ୍ପୂର୍ଣ୍ଣ ନୂତନ ଯୁଗର କରାଟରେ, ନୂତନ ରଙ୍ଗରେ ରଂଜିତ ଚିତ୍ର ମଧ୍ୟରେ ବରଂ ଆମର ପଥରେ କିଛି ଅଧିକ ଦିନ ସେ ସମ୍ପଦ ବଞ୍ଚିବ।[୫]

ସେ ପ୍ରାଚୀନ ପୁରାଣମାନଙ୍କରୁ କାହାଣୀ ସଂଗ୍ରହ କରିଥିଲେ ମଧ୍ୟ ସେଗୁଡ଼ିକ ଆଧୁନିକ ରୁଚି ସଙ୍ଗତ କରିଛନ୍ତି। ଯେଉଁ ସ୍ଥଳରେ ପୁରାଣ ବର୍ଣ୍ଣିତ ଆଖ୍ୟାନ ସାଧାରଣ ବୁଦ୍ଧିକି ଅସଙ୍ଗତ ବା ଅର୍ଥହୀନ ଜଣାଯାଇଛି, ସେହି ସ୍ଥଳମାନଙ୍କରେ ଯଥାଶକ୍ତି ଯୁକ୍ତି ପ୍ରୟୋଗ କରି ସେ ମୀମାଂସା କରିଛନ୍ତି। ଅନେକ ସ୍ଥଳରେ ଅସାଧାରଣ, ଅଲୌକିକ, ଐଶ୍ୱରିକତାକୁ ବର୍ଜନ କରିଛନ୍ତି। ନର ଦେହଧାରୀ ଚରିତ୍ରଗୁଡିକୁ ନରଶକ୍ତିର ଅତୀତକୁ ନେଇନାହାନ୍ତି।

ପାଲା ଓଡ଼ିଶାର ଏକ ସାରସ୍ୱତ ଓ ସାଂସ୍କୃତିକ ଅନୁଷ୍ଠାନ ଥିବାରୁ ଏହା ମାଧ୍ୟମରେ ଆନନ୍ଦ ଦାନ ସଙ୍ଗେ ଲୋକଶିକ୍ଷାକୁ ମଧ୍ୟ ଗ୍ରହଣ କରି ନିଆଯାଇଛି। ଶ୍ରୀଯୁକ୍ତ ବସୁଙ୍କର କାବ୍ୟ ରଚନାର ଉଦ୍ଦେଶ୍ୟ ଥିଲା ଆନନ୍ଦ ଦାନ ସଙ୍ଗେ ଗଣଜ୍ଞାନ ବିସ୍ତାର। ତାଙ୍କର ଭାଷାରେ "ପାଲା ବାଲା କହନ୍ତୁ ଦାଶ କାଠିଆ କହନ୍ତୁ ....... ପ୍ରତ୍ୟେକ ନଟ, ଦି ଦଣ୍ଡ ଲାଗି ପାଞ୍ଚଜଣଙ୍କ ମନ ଖୁସି କରାଇ ଦେବା, ଶ୍ରୋତା, ଦର୍ଶକମାନଙ୍କୁ ଘଣ୍ଟାଏ ଅଧେ ସଂସାର ଜଞ୍ଜାଳରୁ ମୁକ୍ତ କରାଇ ହସଖେଳ କୌତୁକର ଭୋଜବାଜିରେ ବହଲାଇ ନେବା, ଶାନ୍ତି ଓ ଆଶ୍ୱାସନା ମଧ୍ୟରେ ସମାଜର ଆବର୍ଜନା ଓ କଳଙ୍କମାନଙ୍କୁ ଚାବୁକ୍ ମାରିବା, ଉଦାର ମହତ୍ୱର ଚରିତ୍ରମାନଙ୍କୁ ସମୁଜ୍ଜ୍ୱଳ ଭାବେ ଦେଖାଇ ଦେବା ଏ ଦାୟିତ୍ୱ ଉପରେ ହିଁ ସେମାନଙ୍କର ଜୀବିକା।"[୬]

---

୫. କୃଷ୍ଣପ୍ରସାଦ ବସୁ– ଝଂକାର, ସନ ୧୩୬୨ ମୀନସଂଖ୍ୟା (ପାଲା ପ୍ରସଙ୍ଗ)

୬. ତତ୍ରୈବ

ଲୋକ ଶିକ୍ଷା ଓ ମନୋରଂଜନ ଉଭୟକୁ ନିଜ ଖଣ୍ଡ କାବ୍ୟ ରଚ୍‌ନାର ଉଦ୍ଦେଶ୍ୟ ଭାବରେ ଗ୍ରହଣ କରିଥିବାରୁ କବିମଞ୍ଜୁଳଙ୍କ ସୃଷ୍ଟି ଏତେ ଲୋକପ୍ରିୟ ହୋଇପାରିଛି। ନିଜେ ଜଣେ ଦକ୍ଷ ଓ ଅଭିଜ୍ଞ କଳାକାର ଥିବାରୁ ଅପୂର୍ବ କଳା କୌଶଳରେ କାବ୍ୟ ସୌଧକୁ ନିର୍ମାଣ କରିଛନ୍ତି। ଜଣେ ପ୍ରତିଭାବାନ ଆଦର୍ଶ ଶିକ୍ଷକ ଥିବାରୁ ସେ ଲୋକଜୀବନକୁ ସୁନ୍ଦର ଓ ମାର୍ଜିତ କରିବାକୁ ବହୁ ଉପାଦାନର ସଂଯୋଗ କରିଛନ୍ତି।

**ବର୍ଣ୍ଣନାବିଭବ**

ବର୍ଣ୍ଣନା କାବ୍ୟର ମୁଖ୍ୟ ବିଭବ। ବସୁଙ୍କ କାବ୍ୟଗୁଡିକରେ ପ୍ରାତ ଏବଂ ସାୟଂକାଳ ବର୍ଣ୍ଣନା, ବନ ପର୍ବତ ପ୍ରଭୃତିର ମନୋହାରି ବର୍ଣ୍ଣନା ସଙ୍ଗେ ନଦୀ, ନଗର, ନାୟିକାର ରୂପ ଓ ବେଶ ବର୍ଣ୍ଣନା ରହିଛି। ରୀତି ଯୁଗର କବିମାନଙ୍କ ପରି ନଗର ବର୍ଣ୍ଣନାରେ କାବ୍ୟିକ କୌଶଳ ସଙ୍ଗେ ଶ୍ଳେଷାର୍ଥ ଗୂଢାର୍ଥ ପ୍ରକାଶରେ କବିଙ୍କ ମୌଳିକତା ପରିସ୍ଫୁଟ ହୋଇଛି। ବାମନାବତାର କାବ୍ୟର ଇନ୍ଦ୍ରଙ୍କ ଅମରାବତୀ କଟକର ବର୍ଣ୍ଣନା ଏହିପରି

ନିନ୍ଦୁଛି ଅଳକା ଦ୍ୟୁଲୋକ ଝଳକା
ବିପୁଳ ପୁଳକ ଆଭାମୟୀ
ବିହଙ୍ଗ ମିଥୁନ ବିବିଧ କୂଜନ
ମଧୁପ ଗୁଞ୍ଜନ ମଧୁମୟୀ,
ଅଗଣିତ ଯହିଁ -
ମାଣିକ୍ୟ ଦୀପାଳି ମଣ୍ଡି ଥାଇଁ
ନିର୍ମଳ ସରସୀ - ଜଳେ ରାଜହଂସୀ
ସାରସ କରଣ୍ଡ ବିଳସଇ ।
ପ୍ରପନ୍ନ ଯୌବନା ନିର୍ମଳ ବସନା
ତ୍ରିଲୋକ ବନ୍ଦିତା ବରାଙ୍ଗନା
ମାର୍ଗ ଉପମାର୍ଗ ଉଦ୍ୟାନ ପ୍ରାଙ୍ଗଣ
କୁସୁମିତ କୁଂଜ ଅକଳନା
ବଜ୍ର ବିଦ୍ରୁମର
ବେଦୀ ସନ୍ନିଧାନେ କି ସୁନ୍ଦର

ନାହିଁ ଶଠପଣ ପ୍ରାଣୀଙ୍କ ପୀଡ଼ନ
ନାହିଁ କାମ ଲୋଭ ଅପଚାର ।୭

ରାଜସୂୟ ଯଜ୍ଞ କାବ୍ୟରେ ବାରଣାବନ୍ତ ନଗରର ବର୍ଣ୍ଣନାରେ କବିଙ୍କ ବର୍ଣ୍ଣନା କୁଶଳତା ଲକ୍ଷ୍ୟ କରାଯାଇପାରେ ।

କି ଛାର ମର୍ତ୍ତ୍ୟ ମାନବ, ସୁର କିନ୍ନର ଗନ୍ଧର୍ବ
ବୁଦ୍ଧିକି ଅଗମ୍ୟ କମନୀୟ ସୁଷମା
ନୟନ ମନ କୁହୁକୀ ବିଭା ବିଭବ ଦେଖିକି
ବୋଲନ୍ତି ଧନ୍ୟ ଏ 'ମୟ' କୃତ କରମା
କଳ୍ପନା ସିନ୍ଧୁକୁ ମନ୍ଥିକି
ଥୋଇ ଦେଇଛନ୍ତି କଳା କଳା ନିଧିକି
ଧନ୍ୟ ଏ ବିନ୍ଧାଣୀ ପଣ, ନିସର୍ଗ ପ୍ରତିମା ଜାଣ
ମୂର୍ତ୍ତିମନ୍ତ ହୋଇ ନେତ୍ରେ ନାଚି ଗଲାକି ।୮

ନାୟିକାର ରୂପ ବର୍ଣ୍ଣନାରେ ରୀତିଯୁଗୀୟ କବିତ୍ୱର ଅନୁରଣନରେ କୃଷ୍ଣ ପ୍ରସାଦଙ୍କ କାବ୍ୟାବଳୀ ମୁଖରିତ । ସ୍ୱର୍ଗର ଅତୁଳନୀୟା ରୂପସୀ ଉର୍ବଶୀର ରୂପକାନ୍ତି କବିଙ୍କ କବିତାରେ କିଭଳି ରୂପ ନେଇଛି ଦେଖା ଯାଇପାରେ ।

ସୁଧା ପେଣ୍ଟୁଳାରେ ବଳା ପିନ୍ଧିଥିଲା ସେ ଅବଳା
ବାସନ୍ତି କୁଙ୍କୁମ ବୋଳା ଝୀନ ବସନ,
ଉଲଙ୍ଗ ଥିଲା ଉରଜ ଚାରୁଭୂରୁ ନାସାସଜ
ନିନ୍ଦୁଥିଲା ଶତ ଶମ୍ପା ଚମ୍ପାବରନ
ବକ୍ଷେ ରାଜୁଥିଲା ରତନ
ନଖର ପ୍ରଭାସେ କୋଟି ଇନ୍ଦୁ-ନିନ୍ଦନ
ଲଳିତ ବଳିତ ଭୂଜା କଟାକ୍ଷେ କଜ୍ଜଳ ଲଜ୍ଜା
ଦୋଳାରେ ଖେଳାଉଥିଲା ମୀନ କେତନ ।୯

ନଳପତ୍ନୀ ଦମୟନ୍ତୀ ବିଶ୍ୱରେ ଅତୁଳନୀୟା ସୁନ୍ଦରୀ, ସ୍ୱର୍ଗର ଦେବତାମାନେ ତାଙ୍କୁ ଲାଭ କରିବା ପାଇଁ ମାନବ ଦେହରେ ବିଦର୍ଭରେ ତାଙ୍କର କୃପା ପ୍ରାର୍ଥୀ ହୁଅନ୍ତି । କାବ୍ୟରେ ବହୁ ସ୍ଥଳରେ କବି ତାଙ୍କ ରୂପ ବର୍ଣ୍ଣନା କରିଛନ୍ତି ।

---

୭. କୃଷ୍ଣପ୍ରସାଦ ବସୁ– ବାମନାବତାର, ପ୍ରଥମ ଛାନ୍ଦ
୮. ଏଜନ– ରାଜସୂୟଯଜ୍ଞ, ପ୍ରଥମ ଛାନ୍ଦ
୯. ଏଜନ– ଉର୍ବଶୀ କାବ୍ୟ, ପୃ ୩୫

ଯତୀନ୍ଦ୍ର 'ଦମନ' ଦିବ୍ୟ ଅବଦାନ ବିଦର୍ଭ-ମଞ୍ଜୁଷାମଣି
ବିଧାତା କଳ୍ପନା କଳ୍ପାନ୍ତ ସୁମନା ଅନବଦ୍ୟ ପ୍ରଭାଖଣି,
ଜଗତ ମୋହିନୀ ବିଦର୍ଭ-ନନ୍ଦିନୀ, "ଦମୟନ୍ତୀ" ତାଙ୍କ ନାମ
ବିଶ୍ୱେ ଦେଖି ନାହିଁ ଅନବଦ୍ୟା କାହିଁ ମନୋରମ ଅଭିରାମ

x x x

ପୟର - ପଲ୍ଲବ ନଖର ବିଭବ କି ଛାର ସରଗ-ଚାନ୍ଦ
ଆୟତ ଲୋଚନ ନାସା ସୁଗଠନ ମନମୀନ ଧରା ଫାନ୍ଦ

ନୈଷଧ କାବ୍ୟରେ କବି ଶ୍ରୀ ହର୍ଷ ଦମୟନ୍ତୀଙ୍କ ରୂପ ବର୍ଣ୍ଣନାରେ ରୀତିର ଔଚିତ୍ୟ ପ୍ରଦର୍ଶନ କରି ପ୍ରକାଶ କଲେ।

ଯଦି ପ୍ରସାଦୋ କୁରୁତେ ସୁଧାଂ ଶୋଃଏଷ
ସହସ୍ରାଂଶମପି ସ୍ଥିତସ୍ୟ
ତତ୍ କୌ ମୁଦିନାଂ କୁରୁତେ ତମେବ ନିମିତ୍ତା ଦେବଂ ସଫଳଂ ସଜନ୍ମ ।

ଅନୁରୂପ ବର୍ଣ୍ଣନା ବସୁ କବିଙ୍କ ଦମୟନ୍ତୀରେ ଦେଖାଯାଇପାରେ–

ସୁନ୍ଦର ପଣ ତାଙ୍କର ବଦନେନ ଧୃଷ୍ଟାଚାର
ହିମାଂଶୁ ଲଭିଲେ ତହୁଁ ଲବ ମାତ୍ରକ
ଅବଶ୍ୟ କୌମୁଦୀ ଦେହେ ବିଲେପନ କରି ସ୍ନେହେ
କୃତ୍ୟ କୃତ୍ୟ ମଣୁଥିବେ ଜୀବନଯାକ
ଶଶାଙ୍କ ଗହ୍ୱରେ ଭରାଇ
ନିରଙ୍କ ହୋଇବା ବାଞ୍ଛା ହୃଦେ ବଳାଇ
ବର୍ତ୍ତୁଳ ପୀୟୂଷ ଥାଳି ସମ୍ମୁଖେ ପ୍ରଦୀପ ଜାଳି
ଶୋଭାର ମୋହିନୀ ଜାଲ ଦ୍ୟୋତା ମେଲାଇ।[୧୦]

ରୀତି କାବ୍ୟର ନାୟିକା ଅନୁରୂପ କବିଙ୍କ ଦୃଷ୍ଟିରେ ଦମୟନ୍ତୀ ହୋଇଉଠିଛନ୍ତି ଅନବଦ୍ୟା।

ଏତ ଜଗତ ମୋହିନୀ ଉତ୍ଫୁଲ୍ଲ ପଙ୍କଜ ନେତ୍ରଧାରିଣୀ
ପୀନଜଘନୀ, ପୂର୍ଣ୍ଣଚନ୍ଦ୍ର ନିଭାନନୀ
ନିତମ୍ବ ବିମ୍ବ ପୃଥୁଳ କୁଚକୁମ୍ଭକି ମନ୍ମଥ ମର୍ଦ୍ଦଳ
ଗଣ୍ଡମଣ୍ଡଳ, ନୟନ ମନ ଅର୍ଗଳ।[୧୧]

---

୧୦. କୃଷ୍ଣପ୍ରସାଦ ବସୁ– ଦମୟନ୍ତୀ (୨), ପୃ ୩୯
୧୧. ଏଜନ– ତତ୍ରୈବ, ପୃ ୮

କୁରୁ ସଭାରେ ଦଣ୍ଡାୟମାନା ପାଞ୍ଚାଳୀଙ୍କର ମହନୀୟତା (ପବିତ୍ରତା) ପ୍ରତିପାଦନ ପାଇଁ କବି ଅନିନ୍ଦ୍ୟ ସୁନ୍ଦରୀଙ୍କ ଗଭାର ଏକ ମନୋଜ୍ଞ ବର୍ଣ୍ଣନା ଚୋଖି ରାଗରେ ଏହିପରି ପ୍ରଦାନ କରିଛନ୍ତି ।

ଯାହାଙ୍କ ଚାରୁକୁନ୍ତଳ ଚିକ୍କଣ ଚନ୍ଦ୍ରମଣ୍ଡଳ
ଆଭାକୁ ଜିଣିଛି ଗଭା ଶୋଭା ସମ୍ପଦ -
ବିଷ୍ଣୁ ପଦାର ବିନ୍ଦର ସୌରଭ ମକରନ୍ଦର
ଲାଖି ରହିବାର ବୋଲି ବୋଲନ୍ତି ବୁଧ,
ମନ୍ତ୍ର ପୂତ ଦୂର୍ବା ଅକ୍ଷତ -
ଦେବତା ଋଷିଏ କଲେ ଅଭିସିଞ୍ଚିତ
ସପ୍ତ ଅମ୍ବୁଧି ଅମ୍ବୁଦ ପରମାର୍ଥ ନଦୀନଦ
ଜମ୍ବୁଦ୍ୱୀପେ କମ୍ବୁପଦ କଲା ବନ୍ଦିତ ।

ପ୍ରକୃତି ବର୍ଣ୍ଣନା କାବ୍ୟର ଏକ ବିଶିଷ୍ଟ ବିଭବ । ପାଲାର ଗାୟକମାନେ ଏହି ବର୍ଣ୍ଣନାର ପରିବେଷଣ କରି ଦର୍ଶକମାନଙ୍କ ମନୋହରଣ କରିଥାଆନ୍ତି । କବିମଞ୍ଜୁଳ ନିଜ କାବ୍ୟ ଗୁଡ଼ିକରେ ଉଭୟ ଅନ୍ତଃ ପ୍ରକୃତି ଓ ବହିଃ ପ୍ରକୃତିର ମନୋଜ୍ଞ ଚିତ୍ର ଅଙ୍କନ କରିଛନ୍ତି । ତାଙ୍କ ନିଜ ଭାଷାରେ 'ପଂଝାଏ ଦୃଶ୍ୟମାନ ବହିଃ ପ୍ରକୃତିର ବର୍ଣ୍ଣନାରେ ଧୁରନ୍ଧର, ନଦୀ, ପର୍ବତ, ଝରଣା, ଲତା, ଆକାଶ ଓ ସମୀରଣ ଦ୍ୱାରା କାବ୍ୟର ସୌଷ୍ଠବ ଆଣିବାକୁ ଚାହାନ୍ତି । ଅପରେ କହନ୍ତି - ଅନ୍ତ ରାଜ୍ୟରେ ବିକସିତ ହେଉଥିବା ହର୍ଷଶୋକ ବିଷାଦ ଭୟ ଲଜ୍ଜା ଅନୁକମ୍ପା ଇତ୍ୟାଦି abstract ବା ଅନୁଭୂତି ସାପେକ୍ଷ ବିଷୟମାନଙ୍କୁ ରୂପାୟିତ କରିବା ହିଁ ଦକ୍ଷତା ଓ ଅଧିକ ସୁନ୍ଦର । ଆମେ କହୁଁ ଆନନ୍ଦ ଉଭୟତ୍ର' ।[୧୨]

କବି ନିଜର ଉପରୋକ୍ତ ସ୍ୱୀକାରୋକ୍ତି ପ୍ରତି କାବ୍ୟ ରଚନା କାଳରେ ବିଶ୍ୱସ୍ତ ହୋଇଥିବାର ଦେଖାଯାଏ । ପ୍ରଥମେ କବିଙ୍କର ବହିଃ ପ୍ରକୃତି ବର୍ଣ୍ଣନାରେ ସଫଳତା ଦେଖାଯାଇପାରେ ।

ପାତକୀ କାବ୍ୟର ପ୍ରଥମ ଛାନ୍ଦର କବି ଅରଣ୍ୟ ପ୍ରକୃତିର ଏକ ମନୋରମ ବର୍ଣ୍ଣନା ଏହିପରି ପ୍ରଦାନ କରିଛନ୍ତି ।

ଜଟିଳଗିରି କନ୍ଦରାରୁ ଯହିଁ ଝରେ ଝରଣା
ଉତ୍ପଳଗର୍ଭା ତଟିନୀର ତଟ ଦେଶ ସୁମନା
ଝରିପଡ଼ି ଝରେ ନିଃସ୍ୱନେ ସିକତାର ପ୍ରାଙ୍ଗଣେ
କାରୁଚିତ୍ର ଚାରୁ ଅଙ୍କିତ ଜଳକଣା ଉଦ୍ୟାନେ ।

୧୨. କୃଷ୍ଣପ୍ରସାଦ ବସୁ– ସତ୍ୟସନ୍ଧ ହରିଶ୍ଚନ୍ଦ୍ର, ପୃ ୯

ପୁନ୍ନାଗ ନାଗେଶ୍ୱର ବନ ଛୁରିଅନା ସୁଗନ୍ଧ
ଚନ୍ଦନ କେତକୀ ବନରେ କୁରୁବକ ନିବନ୍ଧ
ଲତା ଗହଳ ଅନ୍ତରାଳେ ମୃଗବାମା କୁତୁକେ
କରି କଳଭ ସଙ୍ଗୀତରେ ଖେଳେ ଖେଳେ ପୁଲକେ।
ଶାଖା ମୃଗ ରମ୍ଭା ପଣସ ନାରଙ୍ଗ ରସ ଖାଇ
ନିଃଶାଖ କରୁଛି କାନନ ମହୀରୁହ କୁଦାଇ।
ନିବିଡ଼ ଛାୟାମୟ ଦେଶ ଦୂରେ ଗିରି ଶିଖରେ
ବାରିଦେ ବିମ୍ବିତ କାଞ୍ଚନ ଆଭା ଅସ୍ତରାଗରେ।[୧୩]

କବିଙ୍କ ବର୍ଣ୍ଣନାରେ ହିମାଳୟର ପ୍ରାକୃତିକ ସୁଷମା ସଙ୍ଗେ ପବିତ୍ରତାର ଯେଉଁ ମନୋଜ୍ଞ ସମ୍ମିଶ୍ରଣ ହୋଇଛି ତାହା କାବ୍ୟ ପାଠକକୁ ବିମୋହିତ କରେ। ଦୃଷ୍ଟାନ୍ତ ସ୍ୱରୂପ କେତୋଟି ଉଦ୍ଧାର କରାଯାଉ।

ବିଚିତ୍ର ଏହିମ ପ୍ରଦେଶେ
ଲତା ଗୁଳ୍ମ ବିଥିକା
ଅନନ୍ତ ଦିଗନ୍ତ ସୌରଭେ
କେତେ ଶୁକ ଶାରିକା
ଅହିଂସ ଶ୍ୱାପଦ ଭଲ୍ଲୁକ
ଦୁଗ୍ଧବତୀ ଚାମରୀ
ଦେବଦାରୁ ବନ ଚତ୍ୱରେ
ରାଜହଂସୀ ମୟୂରୀ
ପଶ୍ଚାତେ ଗିରିକନ୍ଦରାରେ
ଝରେ ନିର୍ଝର ଧାରା
ମେଲାଇ ଶାଶ୍ୱତ ଅବ୍ୟକ୍ତ
ମହାରାଜ୍ୟ ପସରା
କ୍ୱଚିତ ଖେଳୁଛି ବାରିଦ
କୁହେଳିରେ ଶିକର
ଅଭ୍ରଙ୍କଷ ଗିରି ଶୃଂଗର
ପ୍ରତି ଛାୟା ସଙ୍ଗର।[୧୪]

---

୧୩. କୃଷ୍ଣପ୍ରସାଦ ବସୁ– ପାତକୀ, ପ୍ରଥମ ଛାନ୍ଦ
୧୪. ଏଜନ– ମାତୃପୂଜା, ପ୍ରଥମ ପର୍ବ

ଦେବାତ୍ମା ହିମାଳୟର ଆଉ ଏକ ବର୍ଣ୍ଣନା -

ଉପଳ କୁହେଳି ହିମ ଶୃଙ୍ଗାଳି ନିବାସ
ତୁଷାର ମୌଳି ହିମାଦ୍ରୀ ଅନୁପ ସଂକାଶ
ବିଜୟ ନଗାଧିରାଜ ବିଭ୍ରାଜ ମୂରତି
ଅନନ୍ତ ଅନ୍ତରୀକ୍ଷରେ ଯାହାଙ୍କ ଆରତି
ସେ ନିତି ପ୍ରତି - କରୁଛନ୍ତି ଗ୍ରହତାରା ଅନନ୍ତ ପ୍ରକୃତି ।
ଉତ୍ତରାଖଣ୍ଡର ଗିରିବନାନୀ ସୁଷମା
ବହୁରୂପୀ ଛବିଳ ସେ ନିତ୍ୟ ମନୋରମା
ଗାଉଛି ବନ୍ଦାଣ ଯାର ନିର୍ଝର ନିଃସ୍ୱନ
ଅଗଣିତ ଧ୍ୟାନାଧୀନ ଯହିଁ ତପୋଧନ
ସେ ସ୍ୱଚ୍ଛ ଅଙ୍ଗ . . . ସୁତୁଙ୍ଗ ଶୃଙ୍ଗାଳି ଶୁଭ୍ର ଉଦଧିତରଙ୍ଗ ।[୧୫]

ରୀତି କାବ୍ୟାଦର୍ଶ ଅନୁସରଣ କରି କବି କୃଷ୍ଣପ୍ରସାଦ ନିଜ କାବ୍ୟକୁ ବହୁ ସ୍ଥଳରେ ପ୍ରଭାତ,ସଂଧ୍ୟା ଓ ଋତୁ ବର୍ଣ୍ଣନାରେ ମନୋଜ୍ଞ କରିଛନ୍ତି ।

ଉର୍ବଶୀ ବା ଅଷ୍ଟବକ୍ର କାବ୍ୟରେ ଦ୍ୱାରକାପୁରରେ ଉଷାର ଆଗମନ କବି ଲେଖନୀରେ କିଭଳି ରୂପ ଲାଭ କରିଛି ଦେଖନ୍ତୁ ।

ମଙ୍ଗଳେ ମାଧବୀ ଉଷାରେ
ମଂଜୁ ମଳୟାନିଳ
ଶୁଭାଶିଷ ବିଞ୍ଚି ଦେଲାଣି
ମିଶି ସିନ୍ଧୁ କଲ୍ଲୋଳ ।
ପ୍ରାଚୀ ପ୍ରାଚୀର ତୋରଣରେ
ଅଂଶୁମାଳୀ ବିକଶି
ସପ୍ତାଶ୍ୱେ ଖଚିତ ଲୋହିତ
ରଥ ରଶ୍ମି ବିକସି
ଫଗୁ ବୋଳା ମନ୍ଦାର ମାଳା
ମଣ୍ଡି ହୋଇ ଅଙ୍ଗରେ
ପ୍ରଭା ସିନ୍ଧୁ ସ୍ନାନ ସାରିକି
ସହସ୍ରାଂଶୁ ବିହରେ ।[୧୬]

---

୧୫. କୃଷ୍ଣପ୍ରସାଦ ବସୁ– ହୀମାଦ୍ରି ଲେମା, ପୃ ୫

୧୬. ଏଜନ– ଉର୍ବଶୀ ଅଷ୍ଟବକ୍ର, ପୃ ୪୮

ଉଷା କାଳରେ ଆଶ୍ରମ ପ୍ରକୃତିର ଆଉ ଏକ ମନୋରମ କଳ୍ପନା କବି ସୃଷ୍ଟିରେ ମନୋଜ୍ଞ ରୂପ ନେଇଛି ।

ଛାଡ଼ିବ ଛାଡ଼ିବ ହେଉଛି ଛାଡ଼ି ନାହିଁ ତମସା
ଫିଟାଇ ଦେଉଛି ଓଢଣା ଯୋଷା ଉଷାର ରସା
ଚମକି ଚମକି କଜ୍ଜଳପାତି ନିଦ ବାଉଳେ
ତପୋବନ ତାଳ ତମାଳ ଚୂତାଙ୍କୁରେ ବକୁଳେ ।
ଖଣ୍ଡ ଚନ୍ଦ୍ର ମିଶିଯାଉଛି ଅସ୍ତାଚଳ ଶିଖରେ
ପାଣ୍ଡୁର ଶୁକ୍ରତାରା ଆଭା ଲୁଚେ ଝର ନିର୍ଝରେ ।
କାହିଁ କେହି କଳ କଣ୍ଠର ସ୍ୱନ ଅଛି ସଞ୍ଚରି
ବୃକ୍ଷ ପଲ୍ଲବରୁ ମୁକୁତା ବିନ୍ଦୁ ପଡୁଛି ଝରି ।
ସମୀରଣ ଚୁମ୍ବି ଯାଉଛି ଅବା ତୃଷା ବିକାରେ
ଶୀତଳ ସୁଆଦ ଆଶାରେ ଭ୍ରମି କୁଂଜ ଆଗରେ ।[୧୭]

ବସୁ କାବ୍ୟାବଳୀରେ ବର୍ଣ୍ଣନା ପାଟବର ବହୁଳ ପରିଚୟ ଥିଲେ ମଧ୍ୟ ଉପରୋକ୍ତ ଉଦାହରଣ ସହିତ ପାଞ୍ଚାଳୀ ପଟାପହରଣ କାବ୍ୟର ଦ୍ୱିତୀୟ ଛାନ୍ଦରେ ଦ୍ୱାରକା ନଗରର ବସନ୍ତୋତ୍ସବର ବର୍ଣ୍ଣନା ଓ ହରିଶ୍ଚନ୍ଦ୍ର କାବ୍ୟର ଦ୍ୱିତୀୟ ଛାନ୍ଦର ବାରାଣାସୀ ନଗର ବର୍ଣ୍ଣନା ପାଠକର ଦୃଷ୍ଟି ଆକର୍ଷଣ କରେ । ବାରାଣସୀ ନଗରର ବାହ୍ୟ ସୌନ୍ଦର୍ଯ୍ୟର ବର୍ଣ୍ଣନା ସହିତ ଭକ୍ତି ଚେତନାର ମନୋଜ୍ଞ ସ୍ପର୍ଶ ଏହାକୁ ଉଚ୍ଚକୋଟୀକୁ ଉନ୍ନିତ କରିଛି ।

**ଛନ୍ଦ ଚ୍ୱାତୁର୍ଯ୍ୟ – ଅଳଙ୍କରଣ – ଭାଷାବିନ୍ୟାସ**

କବି ମଂଜୁଳଙ୍କ କାବ୍ୟରେ ଛନ୍ଦ ଚ୍ୱାତୁର୍ଯ୍ୟର ଆଲୋଚନା ବେଳେ ଭାବ ଅବବୋଧର ଅନୁକୂଳ ପଦବିନ୍ୟାସ ସହିତ ସୁଗେୟତାର ସମବାୟକୁ ବିଚ୍ୱାରକୁ ନେବାକୁ ହେବ । ତାଙ୍କ କାବ୍ୟଗୁଡ଼ିକର ସୃଷ୍ଟି ପଠନ ପାଇଁ ଯେତେ ନୁହେଁ ତତୋଧିକ ପାଲାମଞ୍ଚରେ ଗାୟକମାନଙ୍କ ପରିବେଷଣ ପାଇଁ ଉଦ୍ଦିଷ୍ଟ । ଏହି ଛନ୍ଦ ଚ୍ୱାତୁର୍ଯ୍ୟ କାବ୍ୟଗୁଡ଼ିକୁ ରସାତ୍ମକ ସୌନ୍ଦର୍ଯ୍ୟରେ ମଣ୍ଡିତ କରିଛି । ବିଭିନ୍ନ ପ୍ରକାର ଅଳଙ୍କାର ଓ ଚ୍ୱାତୁର୍ଯ୍ୟପୂର୍ଣ୍ଣ ବର୍ଣ୍ଣନା ବିଳାସ ତାଙ୍କ କାବ୍ୟରେ ଥିଲେ ମଧ୍ୟ ସାଙ୍ଗୀତିକତା ହିଁ କାବ୍ୟର ପ୍ରାଣ ସ୍ୱରୂପ । ସଙ୍ଗୀତର ତାଳ ଲୟ ଓ ସ୍ୱର ବିନ୍ୟାସରେ ତାଙ୍କ କବିତ୍ୱର ଦ୍ୟୁତି ବିଭାସିତ ।

ଗଣ ମନୋରଂଜନ ପାଇଁ ତାଙ୍କ କାବ୍ୟଗୁଡ଼ିକ ଉଦ୍ଦିଷ୍ଟ ଥିବାରୁ ଭାବ ସଂପଦ ସହିତ ସ୍ୱର ବିନ୍ୟାସ ସାମଞ୍ଜସ୍ୟ ରକ୍ଷା କରି ସେ ସବୁକୁ ସେ ରସାଳ କରି ପାରିଥିଲେ ।

୧୭. କୃଷ୍ଣପ୍ରସାଦ ବସୁ– କଚ ଦେବଯାନୀ, ପୃ ୨୧୦

ପ୍ରତ୍ୟେକ କାବ୍ୟରେ ସଙ୍ଗୀତ ବିଷୟକ ନିର୍ଦ୍ଦେଶ ଗାୟକମାନଙ୍କ ପାଇଁ ଥିବାର ଦେଖାଯାଏ। ଭାବ, ରସ ଓ ଛନ୍ଦର ମଧୁର ସମନ୍ୱୟରେ ସଭାମଣ୍ଡକୁ କିଭଳି ଆକର୍ଷଣୀୟ କରାଯାଇପାରିବ ଓ ଯଥାଯଥ ସ୍ୱରବିନ୍ୟାସ, ଲୟ, ଯତିପାତ ପ୍ରତି କିପରି ଦୃଷ୍ଟି ଦେବାକୁ ହେବ ତାହା ତାଙ୍କ ନିର୍ଦ୍ଦେଶର ଅନ୍ତର୍ଭୁକ୍ତ।

ଗୋଟିଏ ରାଗରେ ବହୁ ସମୟ ଗାନକଲେ ଶ୍ରୋତାମାନଙ୍କର ବିରକ୍ତିକର ହେବାର ସମ୍ଭାବନା ଥିବାରୁ ସେ ଛାନ୍ଦଗୁଡ଼ିକୁ କ୍ଷୁଦ୍ର କରିବା ସଙ୍ଗେ ସଙ୍ଗେ ପ୍ରତ୍ୟେକ ଛାନ୍ଦରେ ନୂତନ ନୂତନ ରାଗ ପ୍ରୟୋଗ କରିଥିବାର ଦେଖାଯାଏ। ଏ ସମ୍ପର୍କରେ ତାଙ୍କର ନିଜର ମନ୍ତବ୍ୟ ଏହିପରି "କେବଳ ତ୍ରୀପଦୀ କି ବାର ଅକ୍ଷରୀ ଚଉଦ ଅକ୍ଷରୀ କି ଷୋଡ଼ଶାକ୍ଷରୀରେ ଆମୂଳଚୂଳ ରଚ଼ନା କଲେ ଗାୟକ ପକ୍ଷେ ସ୍ୱର ବିନ୍ୟାସ କରିବା ଓ ମୁହୁର୍ମୁହୁଃ ସ୍ୱର ପରିବର୍ତ୍ତନ କରାଇବା ପକ୍ଷେ ବହୁତ ଅଡୁଆ ହୁଏ। ଏକ ସ୍ୱରରେ ଗାଇଲା ବେଳକୁ ଜନ ରଂଜନର ବ୍ୟାଘାତ ହେବା ସ୍ୱାଭାବିକ।

"ଅତଏବ ମାତ୍ର ତିନିଘଣ୍ଟା ମଧରେ ଆଖ୍ୟାନ ଶେଷ ହେବ। ତହିଁ ସଙ୍ଗେ କୌଶିକ, କାନଡ଼ା, କାମୋଦୀ, ଦେଶାଖ, ଆରେହୀ, ରାମଲୀଳା, ଭାରତ ଲୀଳା ସ୍ୱରରୁ ମଧ କିଛି ଥିବ, ଏହିପରି ଭାବେ ଛାନ୍ଦ ଯୋଜନା କରିବା ଆବଶ୍ୟକ।

"ଅନେକ ସୁଧୀ ବିଦ୍ୱାନ ଅକ୍ଷର ଗଣି ରଚ଼ନା କରିଥିବାର ଦୃଷ୍ଟାନ୍ତ ଦେଖାଯାଏ। ସାହିତ୍ୟ ବିଚାରରେ ରଚ଼ନା ଉଚ୍ଚକୋଟୀର ଥାଏ ମଧ। କିନ୍ତୁ କର୍ଣ୍ଣର ହ୍ରସତ୍ୱ, ଦୀର୍ଘତା, ଯଥାଯଥ ଭାବେ ସନ୍ନିବେଶିତ ନୋହିଥିବାରୁ ସ୍ୱରମାନଙ୍କର ପ୍ରୟୋଗ ବେଳେ ଅକ୍ଷର ତାଡ଼େ, ପାଲାଯୋଗ୍ୟ ହେବା ଆବଶ୍ୟକ" ।[୧୮]

କାବ୍ୟ ରଚ଼ନା କାଳରେ କବି ନିଜର ଉପରୋକ୍ତ ଅଭିମତ ପ୍ରତି ବିଶ୍ୱସ୍ତ ଥିବାର ଦେଖାଯାଏ। କବି ନିଜ କାବ୍ୟରେ ଛନ୍ଦ ଯୋଜନା କାଳରେ ରୀତି କାଳୀନ ଧାରାର ଅନୁବର୍ତ୍ତନ କରିଛନ୍ତି। ସାହିତ୍ୟର ଅନ୍ୟାନ୍ୟ ବିଭାଗରେ ଲେଖନୀ ଚାଳନା କାଳରେ କୃଷ୍ଣପ୍ରସାଦ ଆଧୁନିକତାର ପଥକୁ ବାଛି ନେଇଥିଲେ ମଧ ପାଲା କାବ୍ୟ କ୍ଷେତ୍ରରେ ସେ ମଧ୍ୟଯୁଗୀୟ ପରମ୍ପରାର ଥିଲେ ଉତ୍ତର ଦାୟାଦ।

ଆଧୁନିକ ଯୁଗର ସ୍ରଷ୍ଟା ରାଧାନାଥ କାବ୍ୟ ରଚ଼ନା କ୍ଷେତ୍ରରେ ବଙ୍ଗଳାଶ୍ରୀ ରାଗର ପ୍ରତିଷ୍ଠା କରିଗଲେ। ପୂର୍ବେ ଯେପରି ପୁରାଣ ରଚ଼ନା କ୍ଷେତ୍ରରେ ନବାକ୍ଷରୀ, ଦାଣ୍ଡି ଓ ଚତୁର୍ଦ୍ଦଶାକ୍ଷରୀ ବୃତ୍ତର ପ୍ରୟୋଗ ଥିଲା ତାହା କାବ୍ୟ ଯୁଗରେ ପରିବର୍ତ୍ତିତ ହୋଇଥିଲେ ମଧ ସମୁଦାୟ କାବ୍ୟ କେଉଁଠି ବଙ୍ଗଳାଶ୍ରୀରେ ଲେଖାଯାଉନଥିଲା।

୧୮. କୃଷ୍ଣପ୍ରସାଦ ବସୁ– ଝଂକାର ୧୩୬୨ ମୀନ ସଂଖ୍ୟା

ଯଦିଓ ବଙ୍ଗଳାଶ୍ରୀ ବୃତ୍ତର ପ୍ରୟୋଗ ଅନେକ ସ୍ଥଳରେ ଥିବାର ଦେଖାଯାଏ। କବିବର ରାଧାନାଥ ପ୍ରଥମେ ବଙ୍ଗଳାଶ୍ରୀକୁ ମୁଖ୍ୟ ରାଗ ଭାବରେ ଗ୍ରହଣ କରିନେଲେ। ତାଙ୍କ ପରେ ଗଙ୍ଗାଧର 'ଇନ୍ଦୁମତୀ', 'ଉତ୍କଳଲକ୍ଷ୍ମୀ' ଆଦିରେ ଏହାର ମଧ୍ୟ ପ୍ରୟୋଗ କରିଥିବାର ଦେଖାଯାଏ।

କବି କୃଷ୍ଣପ୍ରସାଦଙ୍କ କାବ୍ୟରେ ବଙ୍ଗଳାଶ୍ରୀର ବହୁଳ ପ୍ରୟୋଗ ଦୃଷ୍ଟିଗୋଚର ହୁଏ ନାହିଁ। 'ଉର୍ବଶୀ' ବା ଅଷ୍ଟବଙ୍କ୍ର କାବ୍ୟର ପ୍ରଥମ ଛାନ୍ଦଟି ବଙ୍ଗଳାଶ୍ରୀରେ ରଚିତ ହେବା ବ୍ୟତୀତ ତାଙ୍କର ସମଗ୍ର କାବ୍ୟ ଜଗତର 'ବଙ୍ଗଳାଶ୍ରୀ' ଅନ୍ୟ କୌଣସିଠାରେ ବ୍ୟବହୃତ ହୋଇନାହିଁ।

ରାଧାନାଥ 'ବଙ୍ଗଳାଶ୍ରୀ'ର ବ୍ୟବହାର ବେଳେ ଅନ୍ତାନୁପ୍ରାସ ଶୃଙ୍ଖଳାକୁ କେବଳ ଶେଷ ଅକ୍ଷରରେ ସୀମିତ ନରଖି ଉପଧା ମିଳନ ଘଟାଇ ଥିବାର ଦେଖାଯାଏ। କିନ୍ତୁ ବସୁ ନିଜ ରଚନାରେ ରାଧାନାଥଙ୍କୁ ଅନୁସରଣ କରିଥିବାର ଦେଖାଯାଏ ନାହିଁ। ଉଦାହରଣଟିଏ ନିଆଯାଉ–

ବାରୁଣାବତର ପାଦ ଧୌତ କରି
ଧାଉଁଥିଲା କଲ୍ଲୋଳିନୀ
ହିମାଦ୍ରୀ ଶିଖରେ ଦିଗାଙ୍ଗନାଙ୍କର
ତରଳ ସୁହାସ ଜିଣି ।[୧୯]

ବସୁ କାବ୍ୟରେ ବ୍ୟବହୃତ ପ୍ରାଚୀନରାଗ ଗୁଡ଼ିକ ହେଲା କଳସା, କଳହଂସ କେଦାର, ମହ୍ଲାର, ଚୋଖି, ରାମକେରୀ, ଶଙ୍ଗରାଭରଣ, କାମୋଦୀ, ପଞ୍ଚମ ବରାଡ଼ି, ଦେଶାକ୍ଷ, କୌଶିକ, ଆଷାଢ଼ ଶୁକ୍ଳ, କନଡ଼ା ଓ ରସ କୋଇଲା। ପ୍ରାଚୀନ ପୁରାଣରେ ବ୍ୟବହୃତ ହେଉଥିବା ଚତୁର୍ଦ୍ଦଶାକ୍ଷରୀ ଓ ଦ୍ୱାଦଶାକ୍ଷରୀ ବୃତ୍ତର ମଧ୍ୟ ପ୍ରୟୋଗ ଅନେକ ସ୍ଥଳରେ ହୋଇଥିବାର ଦେଖାଯାଏ। ଉପରୋକ୍ତ ଛନ୍ଦଗୁଡ଼ିକର ପ୍ରୟୋଗ କ୍ଷେତ୍ରରେ ସେ ରୀତିକାଳୀନ ଧାରାକୁ ଗ୍ରହଣ କରିନେଇଥିଲେ ମଧ୍ୟ କେତେକ ସ୍ଥଳରେ ନୂତନ ଦୃଷ୍ଟିଭଙ୍ଗୀର ପରିଚୟ ଦେଇଛନ୍ତି। ପ୍ରାଚୀନ ଚୋଖି ରାଗକୁ କବି ନୂତନ ରୂପ ଦେଇଛନ୍ତି। ଚୋଖିରେ ସାଧାରଣତଃ ଚାରି ପଦ ଥିବା ସ୍ଥଳେ ବସୁଙ୍କର ପାଞ୍ଚ ପଦ ସମ୍ବଳିତ। ଏହାକୁ ସେ ମଧ୍ୟ ଡ୍ବଲ ଚୋଖି ବୋଲି କହିଛନ୍ତି। 'ପାଦୁକା' ୫ମ ପର୍ବ ଓ 'କିଷ୍କିନ୍ଧ୍ୟା' ପ୍ରଥମ ପର୍ବ ଓ 'ଦାକ୍ଷାୟନୀ' ୯ମ ପର୍ବ 'ହିମାଦ୍ରୀ ଜେମା' ୪ର୍ଥ ପର୍ବରେ ଏହାର ପ୍ରୟୋଗ ଦେଖାଯାଏ।

---

୧୯. କୃଷ୍ଣପ୍ରସାଦ ବସୁ– ଉର୍ବଶୀ, ଅଷ୍ଟବଙ୍କ୍ର (ପ୍ରଥମ ଛାନ୍ଦ)

ଗରଜାଇ ଦେଉ ଭେରୀ ଗିରି କନ୍ଦର ବିଦାରି
ଶତ ଭଲ୍ଲ ଶତ ମଲ୍ଲ କୋଦଣ୍ଡଧାରୀ
ଶତ ଉଚ୍ଚାଟ ଚିତ୍କାର ଆୟୁଧ ଶତ ସମ୍ଭାର
କି, ଶଙ୍କଟ - ନାଗରା ଦେଲୁରେ ଏପରି ?
ମିତ୍ର - ବୈରୀ ଦୃଷ୍ଟ ଭରତ
ବିଧିମତ ଶିକ୍ଷା ଦେବି ବାଞ୍ଛା ଜାଗ୍ରତ
ବଳିଷ୍ଠ ପଣେ ଗରିଷ୍ଠ ମନେ ମନେ ଭାରି ଆଣ୍ଠ
ପିମ୍ପୁଡ଼ି ଡେଣାକୁ ପର ହେଲା ସଂଜାତ ।[20]

ସେହିପରି କନଡ଼ା ରାଗର ସାମାନ୍ୟ ପରିବର୍ତ୍ତନ କରି ଅଧିକ ପଦ ସଂଯୁକ୍ତ କରି ତାକୁ ଡ଼ବଲ କନଡ଼ା ନାମ ଦେଇ 'ପାଦୁକା' ପ୍ରଥମ ପର୍ବ ଉର୍ବଶୀ ବା 'ଅଷ୍ଟବଜ୍ର' ପଞ୍ଚମ ଛାନ୍ଦ, 'ଗୌର ଗାଥା' ଷଷ୍ଠ ପର୍ବ, 'ହିମାଦ୍ରୀଜେମା' ତୃତୀୟ ପଦରେ ବ୍ୟବହାର କରିଛନ୍ତି ।

ଦେଖିଛ ସାକ୍ଷାତ ସୁଭଦ୍ରା ସଙ୍ଗତ
ଦ୍ୱାରକାର ବଳ ବିକ୍ରମ,
ରୁଧିର ପାନରେ, ଜରାସନ୍ଧ ଦ୍ୱାରେ
ବୃକୋଦର ବୀର୍ଯ୍ୟ ବିଷମ,
ସବ୍ୟସାଚୀଙ୍କୁ
ଖାଣ୍ଡବ ଦହନେ ବିଡ଼ିଛ
ବିନାଶ ବୁଦ୍ଧିରୁ ତୁମ୍ଭେ ହୃଷୀକେଶ -
ବିପରୀତ ପଥ ଧରିଛ,
ଚିରାଚରିତ,
ସତ୍ୟ ନ୍ୟାୟ ଧର୍ମେ ଭାରତ
ଏଥି ବ୍ୟତିକ୍ରମ ବିଭ୍ରମ ହୋଇଲେ
ସୃଷ୍ଟି ନାଶ ଯୋଗ ନିଶ୍ଚିତ ।[21]

ଉପରୋକ୍ତ ରାଗମାନଙ୍କ ମଧ୍ୟରୁ କାମୋଦୀ ରାଗ ପ୍ରତି କୃଷ୍ଣପ୍ରସାଦଙ୍କର ଅଧିକ ପ୍ରବଣତା ଥିବାର ଦେଖାଯାଏ । ତାଙ୍କର ଅଧିକାଂଶ କାବ୍ୟର ମୁଖ୍ୟ ସ୍ୱର କରୁଣ ହୋଇଥିବା ହେତୁ କାମୋଦୀ ରାଗରେ ଏହାର ପ୍ରକାଶ ଅଧିକ ଉପଯୋଗୀ ହୋଇପାରିଛି ।

---

୨୦. କୃଷ୍ଣପ୍ରସାଦ ବସୁ– ପାଦୁକା, ପଞ୍ଚମ ପର୍ବ

୨୧. ଏଜନ– ଉର୍ବଶୀ ଅଷ୍ଟବଜ୍ର, ପୃ ୨୯

କବି ତାଙ୍କ କାବ୍ୟରେ ପ୍ରାଚୀନ ଓ ମଧ୍ୟଯୁଗୀୟ ରାଗ ସହିତ ରାମଲୀଳା ଓ ଭାରତଲୀଳା ଓ ରାସଲୀଳା ବୃତ୍ତର ପ୍ରୟୋଗ କରିଛନ୍ତି। ବିଶ୍ୱନାଥ ଖୁଣ୍ଟିଆ, କବି ସମ୍ରାଟ ଉପେନ୍ଦ୍ର ଭଂଜ, ଅଭିମନ୍ୟୁ ସାମନ୍ତ ସିଂହାର ଆଦି କବିଗଣଙ୍କର ପ୍ରସିଦ୍ଧ ପ୍ରାଚୀନ ଓଡ଼ିଆ ଛାନ୍ଦର ବୃତ୍ତକୁ ସେ ନିଜ କାବ୍ୟମାନଙ୍କରେ ପ୍ରୟୋଗ କରିଛନ୍ତି। ସେଗୁଡ଼ିକ ହେଲା 'ଶ୍ରୀରାଧା ବାତୁଳୀ', 'ଶିଂଶପା ବୃକ୍ଷର ଡ଼ାଳେ', 'ଧିରେ ଘେନ ଧିରେ ବ୍ରଜେଶ୍ୱରୀ', 'ଚେ଼ତି ଚାତୁରୀ', 'କାଳିଆ କମଳ ଦେଖିଲେ କମଳ', 'ଦୂତୀ କର ଧରି ହରି'।

ଛନ୍ଦ ପ୍ରୟୋଗ ପରି କାବ୍ୟର ଅଳଙ୍କାର ସଂଯୋଜନାରେ କବି ଓଡ଼ିଆ ରୀତି କବିମାନଙ୍କ ପନ୍ଥା ଅନୁସରଣ କରିଛନ୍ତି ଓ ବିଭିନ୍ନ ଶବ୍ଦ ଓ ଅର୍ଥ ଅଳଙ୍କାରର ପ୍ରୟୋଗ କରି କାବ୍ୟର ଶୋଭା ବର୍ଦ୍ଧନ କରିଛନ୍ତି। ପାଠକମାନଙ୍କ ମନରେ ଭାବ ଚେ଼ତନା ଉଜ୍ଜୀବିତ କରିବା ପାଇଁ କବି ପ୍ରୟୋଗ କରିଥିବା ଅଳଙ୍କାରମାନଙ୍କ ମଧ୍ୟରେ ଅନୁପ୍ରାସ ହିଁ ପ୍ରାଧାନ୍ୟ ଲାଭ କରିଥିବାର ଦେଖାଯାଏ। ତାଙ୍କର ପ୍ରତ୍ୟେକ କାବ୍ୟ ଅନୁପ୍ରାସ ଅଳଙ୍କାରରେ ମନୋଜ୍ଞ ହୋଇଉଠିଛି। କେତୋଟି ଅଳଙ୍କାରର ଉଦାହରଣ ନିଆଯାଇପାରେ।

ସୁନାସୀର ସଭାରେ ସୁରୁଚି଼ର ବିଭାରେ
ପ୍ରବେଶ ସୁର – ତପୋଧନ
ସୃଷ୍ଟିରୁ ଶୂରପଣ ହୋଇଗଲାଣି କ୍ଷୀଣ
ସଂକ୍ଷେପ ସାଧୁ ସଞ୍ଚରଣ
ସୁରସ୍ଥାନ, ଶୂନ୍ୟ ଦିଶୁଛି କିକାରଣ
ସଂକୀର୍ଣ୍ଣ ହେଲାକି ସମାନ ?
ସଂଗ୍ରାମ ସାଧନାର ସ୍ତିମିତ ହୋଇବାର
କି ହେତୁ କର ସମାଧାନ (ଦମୟନ୍ତୀ ୩ୟ ପର୍ବ)

'ବ', 'ନ', 'ସ' ଆଦି ଅକ୍ଷରକୁ ପ୍ରତ୍ୟେକ ପାଦର ଆଦ୍ୟରେ ରଖି ଉର୍ବଶୀ ବା ଅଷ୍ଟବକ୍ର କାବ୍ୟର ତୃତୀୟ ଛାନ୍ଦର ସାତଗୋଟି ପଦକୁ କବି ବିଭିନ୍ନ ପ୍ରକାର ଅନୁପ୍ରାସ ପ୍ରୟୋଗରେ ମନୋଜ୍ଞ କରିଥିବାର ଦେଖାଯାଏ।

ବାରୁଣାବତର ବିଷ୍ଣୁ ମନ୍ଦିର
ବିବିଧ ବର ବରନେ ସୁନ୍ଦର
ବିହାୟସେ ଧ୍ୱଜା ଚି଼କ୍କଣ ଶୋଭା

ବିରାଟ ଅଟ୍ଟାଳୀ କଳସ ପ୍ରଭା
ବିହଗ - ରାଜ ବିରାଜେ ଯେ
ବଳିଷ୍ଠ ବକ୍ଷ ବିଭ୍ରାଜେ ଯେ
ବନଜ କୁସମ ସୁଷମା ଲଲାମ ମାଳମାଳ ତହିଁ ସାଜେ (ପ୍ରଥମ ପଦ)
ପୁଣି,
ସେତ ସୁଭଦ୍ରା ଶାରଦା ସାକ୍ଷାତ
ଶଙ୍କଟ ସଂଘର୍ଷ ହେଲା ସଂଜାତ
ସବ୍ୟଶାଚ୍ୀ ସଖା ଶିଷ୍ୟ ଶାସ୍ୱତ
ଶାନ୍ତ ସକଳେ ସ୍ନେହରେ ସିଞ୍ଚିତ
ସୁହୃଦ ସର୍ବ ସମାନ
ସେକି ଧରି ଶରାସନ
ସଂସାର ରଚୁଛି ପାଣ୍ଡବଙ୍କ ଧନଜୀବନ ଆତ୍ମା ସଂସ୍ଥାନ (ପଞ୍ଚମ ପଦ)

'ବ' ପ୍ରତ୍ୟେକ ପାଦର ଆଦ୍ୟରେ ରଖି ଓ ବାରମ୍ବାର ବ୍ୟବହାର କରି ଅନୁପ୍ରାସ ସୃଷ୍ଟି କରାଯାଇଥିବା ପଦଟିଏ ନିଆଯାଇପାରେ।

ବିଶ୍ୱ - ବିଜୟ ହରଷେ          ବଳିଷ୍ଠ ବଳ ବିଶେଷେ
ବସି କଳ୍ପନା କରିଲେ ବାସବ - ପଦ
ବରଣ କରାଇ ବର          ପୁରୋଧା ବହୁ ସମ୍ଭାର
ବିଶୁଦ୍ଧ ବୁଧ ସଙ୍ଗମେ ଶତାଶ୍ୱମେଧ
ବିନୟେ ଗୁରୁକବିଙ୍କ ବଚ୍ନ ମତେ ........
ବରବଧୂ ବିଧୂମୁଖୀ ବିନ୍ଧ୍ୟା ସଙ୍ଗତେ (ବାମନାବତାର - ୬ଷ୍ଠ ଛାନ୍ଦ)

ଦ୍ୱାରକାର ରାଜପଥରେ ଅଳଙ୍କାର ପରିହିତା ନରନାରୀମାନଙ୍କ ସୌନ୍ଦର୍ଯ୍ୟ ବର୍ଣ୍ଣନା ପାଇଁ କବି ଉତ୍ପ୍ରେକ୍ଷା ଅଳଙ୍କାର ପ୍ରୟୋଗ କରିଛନ୍ତି।

ବିନା ଆଭରଣ          ବିନା ଅଳଙ୍କାର
କେହି ନଚ୍ଳନ୍ତି ଦାଣ୍ଡେ
ତାରକା ପନ୍ତିକି          ଝଟକି ଉଠୁଛି
ଅଳକା ଚିତ୍ରାଳି ଗଣ୍ଡେ। (ପ୍ରଭାସ ଯଜ୍ଞ ୩ୟ ପର୍ବ)

ଛନ୍ଦ ଓ ଅଳଙ୍କାର ପ୍ରୟୋଗ କ୍ଷେତ୍ରରେ ମଧ୍ୟଯୁଗୀୟ ପରମ୍ପରାର ଅନୁସରଣ କରିଥିଲେ ମଧ ଭାଷା ପ୍ରୟୋଗରେ ସେ ନିଜର ମୌଳିକତା ଦେଖାଇ ଯାଇଛନ୍ତି।

କବିଙ୍କ ରଚିତ ଖଣ୍ଡକାବ୍ୟ ଗୁଡ଼ିକ ପାଲାମଞ୍ଚରେ ଉଭୟ ବିଦଗ୍ଧ ଓ ଗ୍ରାମୀଣ ବ୍ୟକ୍ତିମାନଙ୍କ ପାଇଁ ଉଦ୍ଦିଷ୍ଟ ଥିଲା। କାବ୍ୟଗୁଡ଼ିକର ଭାଷା ବହୁ ସ୍ଥଳରେ ସଂସ୍କୃତାନୁଗ ହୋଇଥିଲେ ମଧ୍ୟ ସ୍ଥାନେ ସ୍ଥାନେ ସର୍ବଜନବୋଧ ଗାଉଁଲି ଭାଷାର ପ୍ରୟୋଗ କିଭଳି କାବ୍ୟିକତା ସୃଷ୍ଟି କରିପାରେ ତାହା ସେ ପରୀକ୍ଷା କରି ସଫଳତା ଲାଭ କରିଛନ୍ତି।

ଓଡ଼ିଶାର ଜନଜୀବନର ଅତି ପରିଚିତ ଭାଷାକୁ ନେଇ ସେ କାବ୍ୟରେ ପରିବେଶ ସୃଷ୍ଟି କରିବାରେ ଥିଲେ ଧୁରନ୍ଧର। ଗଣ୍ଡି, ଗଣ୍ଡିଆ, ତଣ୍ଡିଆ, ଘସିଫଡ଼ା, ଛତରଖାଇ, ଡ଼ାକିନୀ, ଚାଲୁଣୀମୁହିଁ ଆଦି ଖାଣ୍ଟି ଓଡ଼ିଆ ଗାଉଁଲୀ ଶବ୍ଦ ଗୁଡ଼ିକ କିଭଳି କାବ୍ୟ ସୌନ୍ଦର୍ଯ୍ୟ ବିମଣ୍ଡିତ ହୋଇଛି ଉଦାହରଣରୁ ବୁଝାପଡ଼ିବ।

(୧) ରାଜନ ଭାବିଲେ ଏ ବଡ଼ ମୂଢ଼ ଗଣ୍ଡି ଗଣ୍ଡିଆ
ଚରଣ ଚୁଟିଆ ବ୍ରାହ୍ମଣ ଖୋଜୁଅଛି ତଣ୍ଡିଆ, (ବ୍ରାହ୍ମଣ- ପ୍ରଥମ ପର୍ବ)

(୨) ଉଗ୍ରସେନ ସେତ ବୁଢ଼ାଟା ଦରମଲା ହଡ଼ାଟା
ପୁତ୍ର ମରଣରେ ହେବନି ଶୁଖି ଘସିଫଡ଼ାଟା (ପ୍ରଭାସ ଯଜ୍ଞ ପଞ୍ଚମ ପର୍ବ)

(୩) ଗଲା ଗଲା ମୋର କଖାରୁ ଡଙ୍କ ତ
ପିଢାଯାକ କେତେ ମାଡ଼ିଥିଲା
କାହୁଁ ନିଆଁନଗା ମାଙ୍କଡ଼ ଅଇଲେ
ମୋଡିମାଡ଼ି କସି ନରଖିଲା
ଚାଳ ଦୁଲୁକାଇ
ମାଇଲେ ଫୋପଡ଼ ଆସେ ଧାଇଁ
ଖପର ଘରର ଛପର ଖାଇଲା
ଓରା ଶେଣୀ ରୁଅ କିଛିନାହିଁ
ତେଲ କନାବାନ୍ଧି ରାବଣ ପୋଡ଼ିଲା
ଅଜରା ଅବିଜା ମଲେ ନାହିଁ। (ପ୍ରଭାସ ଯଜ୍ଞ ୬ଷ୍ଠ ପର୍ବ)

(୪) ଶୁଭୁ ନାହିଁ କି ଲୋ, ହେଲୁକି କାଲୁଣୀ
ଚାଲୁଣୀ ମୁହିଁଟା
କିଜାଣି କେମନ୍ତେ ରହିଛି ଜଗତେ
ଏ ଛତର ଖାଇଟା (ମାତୃପୂଜା - ନବମ ପର୍ବ)

ରୋହିତର ମୃତ୍ୟୁ ପରେ କ୍ରନ୍ଦନରତା ଶୈବ୍ୟାଙ୍କ ପ୍ରତି ବ୍ରାହ୍ମଣୀର ନିଷ୍ଠୁର ବ୍ୟବହାର ଓଡ଼ିଆ ଘରର ସାଧାରଣ ଭାଷାରେ କିଭଳି ଫୁଟି ଉଠିଛି, ଦେଖନ୍ତୁ।

ଉଠିଲା ଡ଼ାକିନୀ ବ୍ରାହ୍ମଣୀ ବୋଲେ 'ରତ୍ନକୁ କିଆଁ'
ଶୋଭିତ ନୋହିଲା ଟିକିଏ ଏଙ୍କ ମୁହଁକୁ ନିଆଁ

X X X

ଚାହୁଁ ଚାହୁଁ ତୁଟି ଦେଉଛି କାହା ଯୋଗୁ ଏ ଟାଣ
ଆସୁ ସେ ଠକରା ବୁଢ଼ାଟା ତା'ର ଖାଇବି ପ୍ରାଣ ।

(ହରିଶ୍ଚନ୍ଦ୍ର, ୭ମ ଛାନ୍ଦ)

**କାବ୍ୟରେ ସୈଦ୍ଧାନ୍ତିକ ଉକ୍ତି**

କବି ଏକାଧାରାରେ ଶିଳ୍ପୀ ଓ ଶିକ୍ଷକ । ଶିଳ୍ପୀ ଭାବରେ ସେ ଯେପରି ସୌନ୍ଦର୍ଯ୍ୟର ମାୟାଜାଲ ସୃଷ୍ଟି କରେ ଜଣେ ଶିକ୍ଷକ ଭାବରେ ଜୀବନ ପାଇଁ କଲ୍ୟାଣ କର ଦିଗଟି ଉଦଘାଟନ କରେ । ରୂପ, ପ୍ରାଣ ଶିଳ୍ପୀଟିଏ ହୋଇଯାଏ ସମାଜର ଅସ୍ୱୀକୃତ ସାମ୍ବିଧାନିକ । କବିତା ଓ କାବ୍ୟ ସୌନ୍ଦର୍ଯ୍ୟ ଲକ୍ଷ୍ମୀଙ୍କର ମୁଗ୍ଧ ବନ୍ଦନା ନହୋଇ ହୋଇଯାଏ ଜୀବନ ସତ୍ୟର ମହାଭାଷ୍ୟ । କବି କୃଷ୍ଣପ୍ରସାଦଙ୍କ ମଣିଷ ଜୀବନ ସମ୍ବନ୍ଧରେ ଘନିଷ୍ଠ ଓ ପରିପକ୍ୱ ଅଭିଜ୍ଞତାର ସ୍ୱାକ୍ଷର ବହନ କରିଛି ତାଙ୍କର କାବ୍ୟାବଳୀ । ନିର୍ଦ୍ଦିଷ୍ଟ ବିଷୟବସ୍ତୁ ଅବଲମ୍ବନରେ କାବ୍ୟଗୁଡ଼ିକ ପରିକଳ୍ପିତ ହୋଇଥିଲେ ହେଁ ସେଥିରେ ସ୍ଥାନେ ସ୍ଥାନେ କବି ମାନବ ଜୀବନର ଗଭୀରତମ ସତ୍ୟର ପ୍ରକାଶ କରିଛନ୍ତି । ଦୃଷ୍ଟାନ୍ତ ନିଆଯାଉ ।

(୧) ରଙ୍ଗ-ମଞ୍ଚ ଏ ସଂସାର ଆମ୍ଭେ ଅଭିନେତା
କେହିବା ସାଜିଛି ପିତା ସ୍ନେହମୟୀ ମାତା
ଅଭିନୟ ସାଙ୍ଗ ହେଲା ଯେ କାଳେ ଯାହାର
ପୋଷାକ ଉତାରି ଦେଖ କେହି ନୁହେଁ କାହାର । (ପାତକୀ, ୬ଷ୍ଠ ଛାନ୍ଦ)

ଅଖଣ୍ଡ ଶକ୍ତିଶାଳୀ ମଣିଷ ଦୁର୍ନିର୍ବାର ଓ ଅଲଘନୀୟ ନିୟତି ନିକଟରେ କେଡ଼େ ଅସହାୟ ତା'ର ଚିତ୍ର ଫୁଟି ଉଠିଛି କବିଙ୍କ ଲେଖନୀରେ ।

(୨) ଲଲାଟ ଲିଖନ କେବା କରିପାରେ ଆନ
ତୁମ୍ଭେ ମାତ୍ର ଉପଲକ୍ଷ ପତଙ୍ଗ ସମାନ
ରହିନାହିଁ କେହି ନରହିବେ ଭୂମଣ୍ଡଳେ
ସତ୍ୟ ସନାତନ ବ୍ରହ୍ମ ବ୍ୟୋମ ଚରାଚର
ସବୁ ମାୟାର ପ୍ରପଞ୍ଚ
ସୁଖ ଦୁଃଖ ଶୀତ ତାପ ମାୟାର ଏକଛ ।

ସମାଜରେ ସବୁକାଳରେ ଦୁର୍ବଳ ଉପରେ କିଭଳି ସବଳର ଅତ୍ୟାଚାର ଚାଲିଛି

ତା'ର ଚିତ୍ର କବି ସୃଷ୍ଟିରେ ଏହିଭଳି ରୂପ ନେଇଛି ।

(୩) ପ୍ରବଳ ଜନଙ୍କ ପାଇଁ ଏ ଜଗତ
ଦୁର୍ବଳଙ୍କୁ ନାହିଁ ସ୍ଥାନ
ଯେ ଯାହା ସ୍ୱାର୍ଥର ଅଟାଳି ଗଢନ୍ତି
ବ୍ୟର୍ଥ ଆଖି ପାଣିମାନ । (ଉର୍ବଶୀ ପ୍ରଥମ ଛାନ୍ଦ)

(୪) ଦାତାଠାରୁ ଦସ୍ୟୁ ପୂଜନୀୟ ହୋଇ
ପାଉଛି ଉଚ୍ଚ ଆଦର
ଦରିଦ୍ର ଜନଙ୍କ ସୌଭାଗ୍ୟ ସମ୍ଭୋଗ
ସ୍ୱପନରୁ ଅଭିସାର । (ଉର୍ବଶୀ, ପ୍ରଥମ ଛାନ୍ଦ)

ସଂସାରର ସବୁ ଅଳୀକତା ମଧ୍ୟରେ ପୁଣ୍ୟ ହିଁ ଚିରନ୍ତନ ଧନ । ଏହାକୁ ବ୍ୟକ୍ତ କରିବାକୁ କବି ଲେଖିଛନ୍ତି-

ମାୟା ରଙ୍ଗମଞ୍ଚ ସଂସାର କିଏ ଅବା କାହାର
ପୁଣ୍ୟର ବାତିଟି ଜନନୀ ଏକା ଶାସ୍ୱତ ସ୍ଥିର
(ସତ୍ୟସନ୍ଧ ହରିଶ୍ଚନ୍ଦ୍ର ୭ମ ଛାନ୍ଦ)

**ଲୋକ ସାହିତ୍ୟର ସ୍ପର୍ଶ**

ପାଲାମଞ୍ଚ ହେଉଛି ବିଦଗ୍ଧ ଓ ଲୋକ ସାହିତ୍ୟର ମିଳନ ମଞ୍ଚ । ଏହାର ଉପଭୋକ୍ତା ସମାଜ ବିଦଗ୍ଧ ରସିକ ମାନଙ୍କ ସହିତ ସ୍ୱଚ୍ଛ ଶିକ୍ଷିତ ଓ ଅଶିକ୍ଷିତ ସାଧାରଣ ଜନତାଙ୍କର ଏକ ସମ୍ମେଳନ । ବିଦଗ୍ଧ ସାହିତ୍ୟର ପରିବେଷଣ ସାଧାରଣ ଜନତାର ଚିତ୍ତବିନୋଦନ ଓ ପ୍ରୀତି ସମ୍ପାଦନରେ ସକ୍ଷମ ହୁଏ ନାହିଁ । ପଣ୍ଡିତ ଜନ ମଧ୍ୟ ସବୁବେଳେ ଉଚ୍ଚାଙ୍ଗ ସାହିତ୍ୟର ପରିବେଷଣରେ କ୍ଲାନ୍ତ ହୋଇଉଠନ୍ତି । ତେଣୁ ରସ ପରିବେଷଣର କ୍ଲିଷ୍ଟତାରୁ ଦର୍ଶକକୁ ରକ୍ଷା କରି ତାର ଚିତ୍ତବୃତ୍ତିକୁ କ୍ଷଣକ ପାଇଁ ଲଘୁ କରି ଦେବା ପାଇଁ ଚୌପଦୀ, ଢଗଢମାଳୀ, ଦୋହା ଓ ଗାଉଁଲୀ ଗୀତର ପରିବେଷଣ କରାଯାଇଥାଏ । କବି କୃଷ୍ଣପ୍ରସାଦ ଜୀବନର ବହୁକାଳ ଜଣେ ଯାତ୍ରାର ଅଭିନେତା ଓ ନିର୍ଦ୍ଦେଶକ ଭାବରେ କଟାଇଥିବାରୁ ଦର୍ଶକ ଓ ଶ୍ରୋତାମାନଙ୍କର ମନ ଛୁଆଁ ଅତି ଲଳିତ ଭାବ ସମ୍ବଳିତ ରଚନାମାନଙ୍କରେ ତାଙ୍କ ପାଲାକାବ୍ୟକୁ ମଂଜୁଳ କରିଛନ୍ତି । ବହୁ ଗୁରୁ ଗମ୍ଭୀର ତତ୍ତ୍ୱ ସମ୍ବଳିତ ଉଚ୍ଚାଙ୍ଗ ରଚନା ସହିତ ଲୋକ ସାହିତ୍ୟ ସଂସ୍କୃତିର ମନୋଜ୍ଞ ସମାହାର ତାଙ୍କ କାବ୍ୟଗୁଡ଼ିକର ବିଶେଷତ୍ୱ । କେତୋଟି ଉଦାହରଣ ନିଆଯାଉ ।

ଏ ଜଗତରେ ସୁନ୍ଦର କିଏ ? ଏକଥାକୁ ଏହିଭଳି ପ୍ରକାଶ କରିଛନ୍ତି–

(୧) ବ୍ରଜକୁ ସୁନ୍ଦର କଳା କଳାକର
ନଦୀୟା ସୁନ୍ଦର ଗୋରା ।
ନିଶାକୁ ସୁନ୍ଦର ଶଶୀ ପରକାର
ଶଶୀକୁ ସୁନ୍ଦର ତାରା ।।
ଇନ୍ଦ୍ରକୁ ସୁନ୍ଦର ଐରାବତ ହାତୀ
ଯୋଗୀକୁ ସୁନ୍ଦର ଜଟା ।
ବ୍ରାହ୍ମଣ ସ୍କନ୍ଧକୁ ପଇତା ସୁନ୍ଦର
ଲଲାଟେ ଚ଼ନ୍ଦନ ଚିତା ।। (ବାମନାବତାର, ୭ମ ଛାନ୍ଦ)

(୨) କବିତା ଗତି ଗ୍ରାହକ ଗ୍ରାହକ ଗତି ସୁବିବେକ
ପଙ୍କଜ - ଜୀବନ ଜୀବନ
ଦୀନଜନଙ୍କୁ ଗତି ଦାତା ଦୁଃଖୀ ସନ୍ତାନ ଗତି ମାତା
ସତୀଙ୍କୁ ଗତି ପତି - ରନ୍ଧନ । (ତ୍ରୀବିକ୍ରମ, ଅଷ୍ଟମ ଛାନ୍ଦ)

(୩) 'ତିନି ଅଙ୍କଟି ସର୍ବତ୍ର କିଭଳି ଅମଙ୍ଗଳ ତାର ବର୍ଣ୍ଣନା -
ତିନି ଦରବ ସମର୍ପିଲେ ପ୍ରୀତିଭଙ୍ଗ ହୁଅଇ
ତିନି ଆଖିଆ ଯେଉଁ ମାଛ କେହି ଛୁଅନ୍ତି ନାହିଁ
ତିନି କାନ ହେଲେ ମନ୍ତର ତା'ର ନଥାଏ ଗୁଣ
ତିନି ନକଲରେ ଅସଲୁଁ କିଛି ନଥାଏ ଜାଣ
ତେ ମୁହାଣୀ ଛକ ଯେଠାରେ ଜାଣ ବାଟଟି ବଣା
ବାତ - ପିତ୍ତ କଫ ତ୍ରିଦୋଷେ ନିଶ୍ଚେ ଡ଼ାକେ ଶାଗୁଣା ।
(ବାମନାବତାର- ୧୦ ଛାନ୍ଦ)

ଦର୍ଶକଙ୍କ ମନୋରଂଜନ ପାଇଁ ହାସ୍ୟଉଦ୍ରେକକାରୀ ଅନେକ ସଙ୍ଗୀତ ପାଲା ପରିବେଷଣ ସେ କାଳରେ ଗାନ କରାଯାଉଥିଲା ।

ତୁ ମୋର ଶୁଖୁଆ ତୁ ମୋର ପଖାଳ ତୁ ମୋର କାଞ୍ଜି ତୋରାଣି
ତୁ ମୋର ବେଢ଼ାଣ ତୁ ମୋର ପାନିଆ ତୁ ମୋର ମଥାର ବେଣୀ ।

କୃଷ୍ଣପ୍ରସାଦଙ୍କ ଗଦ୍ୟସୃଷ୍ଟି ଦିବ୍ୟ ଓ ଅଦିବ୍ୟ ଭାଷାର ମନୋଜ୍ଞ ସମନ୍ୱୟରେ ଯେଭଳି ଅତୁଳନୀୟ ହୋଇଛି, ତାଙ୍କର ଖଣ୍ଡକାବ୍ୟଗୁଡ଼ିକ ମୁଖ୍ୟତଃ ବିଦଗ୍ଧରସିକମାନଙ୍କ ପାଇଁ ଅଭିପ୍ରେତ ହେଲେ ମଧ୍ୟ ଲୋକଛନ୍ଦ ଓ ଭାଷାର ଅପୂର୍ବ ସ୍ପର୍ଶରେ ଅନନ୍ୟ ହୋଇଉଠିଛି ।

●●●

# ସାରସ୍ୱତ କୃତି ଓ କୃତିତ୍ୱ

## ଷଷ୍ଠ ପରିଚ୍ଛେଦ

## ଗଦ୍ୟ ସମ୍ପଦ ଓ ଗୀତି କବିତା

### ଆଖଡା ଘରେ ବୈଠକ

ଆଖଡ଼ା ଘରେ ବୈଠକ ଶିରୋନାମାରେ ପ୍ରକାଶିତ ରଚ୍‌ନା ସମ୍ଭାର କୃଷ୍ଣ ପ୍ରସାଦଙ୍କ ଅନବଦ୍ୟ ଗଦ୍ୟ ସୃଷ୍ଟି । ଓଡ଼ିଶାର ସମ୍ଭ୍ରାନ୍ତ ସାହିତ୍ୟ ପତ୍ରିକା 'ଝଙ୍କାର'ର ପ୍ରଥମ ବର୍ଷରୁ ଅଠର ବର୍ଷ ପର୍ଯ୍ୟନ୍ତ ବିଭିନ୍ନ ସଂଖ୍ୟାରେ ଏହା ପ୍ରକାଶିତ । ଏଥିପୂର୍ବରୁ ଏହି ଶିର୍ଷକରେ କିଛି ରଚ୍‌ନା 'ଚ଼ତୁରଙ୍ଗ' ଓ 'ଶଙ୍ଖ'ରେ ପ୍ରକାଶିତ ହୋଇଥିବାର ଜଣାଯାଏ ।[୧] ବଲାଙ୍ଗୀର ଅବସ୍ଥାନ କାଳରେ ଡକ୍ଟର ମାୟାଧର ମାନସିଂହଙ୍କ ସହିତ କବିଙ୍କର ବନ୍ଧୁତ୍ୱ ସ୍ଥାପିତ ହୋଇଥିଲା । 'ଶଙ୍ଖ'ର ସମ୍ପାଦକ ମାନସିଂହ ତାଙ୍କ ପତ୍ରିକା ପାଇଁ ଲେଖା ମାଗିବାରୁ କୃଷ୍ଣ ପ୍ରସାଦ ହସି ହସି କହିଲେ 'କଅଣ ବା ମୁଁ ଲେଖିପାରିବି' ? 'କି କଥା କହୁଛ କୃଷ୍ଣ ବାବୁ ! ତୁମ ପରି ଜୀବନକୁ ଟିକି ଟିକି ଚ଼ିରି କିଏ ଦେଖିଛି ? ଆଜୀବନ ତୁମେ ଆଖଡ଼ାରେ ହିଁ କଟାଇଲ, ସେହି ଆଖଡ଼ା ଘରକଥା ଲେଖିଦିଅ ।' ମାନସିଂ କହିଥିଲେ । ଆରମ୍ଭ ହେଲା ଆଖଡ଼ା ଘରେ ବୈଠକ ।[୨]

ଆଖଡ଼ା ଘର ବୈଠକର ବିବରଣ ଦେବା ଛଳରେ ସେ ନିଜର ବିପୁଳ ଅଭିଜ୍ଞତାକୁ ସମ୍ବଳ କରି ଅତୀତ, ବର୍ତ୍ତମାନ ଓ ଭବିଷ୍ୟତ ସମ୍ବନ୍ଧୀୟ ନିଜର ସକଳ ସାଧନା, ଚେଷ୍ଟା, ଚିନ୍ତା, ସୁଖ ଦୁଃଖର ବିଚ଼ିତ୍ର ଅଭିଜ୍ଞତାକୁ ଏକ ଅପୂର୍ବ ଗଦ୍ୟ ଶୈଳୀରେ ପ୍ରକାଶ କରି ବସିଲେ । 'ଝଙ୍କାର'ରେ ନିମ୍ନଲିଖିତ ସଂଖ୍ୟାଗୁଡିକରେ କୃଷ୍ଣପ୍ରସାଦଙ୍କ 'ଆଖଡ଼ା ଘରେ ବୈଠକ' ଶିରୋନାମାରେ ଗଦ୍ୟରଚନା ପ୍ରକାଶିତ ।

୧/୭, ୧/୮, ୧/୯, ୧/୧୧, ୧/୧୨, ୨/୨, ୨/୫, ୨/୬, ୨/୭, ୨/୮, ୩/୧, ୩/୩, ୩/୪, ୩/୫, ୩/୭, ୩/୯, ୩/୧୧, ୪/୧, ୪/୩, ୪/୬, ୪/୯, ୪/୧୧, ୪/୧୨, ୫/୩, ୬/୮, ୬/୯, ୬/୧୦, ୬/୧୧, ୬/୧୨, ୭/୧, ୭/୪, ୭/୫, ୭/୮, ୭/୧୨, ୮/୧, ୮/୨, ୮/୩, ୮/୪, ୮/୬, ୧୦/୧, ୧୦/୫, ୧୦/୬, ୧୦/୭, ୧୨/୫, ୧୨/୧୨, ୧୩/୬, ୧୫/୧, ୧୮/୫ ।

---

୧. ଶ୍ରୀ ରମାକାନ୍ତ ମିଶ୍ର– ବିରଜା ଉଚ୍ଚ ବିଦ୍ୟାଳୟ ସୁବର୍ଣ୍ଣ ଜୟନ୍ତୀ ସ୍ମରଣିକା, ପୃ ୧୯

୨. ସଚିତ୍ର ବିଜୟା– ପୂଜା ବିଶେଷାଙ୍କ, ୧୯୯୫, ପୃ ୧୨୬

'ଝଙ୍କାର'ରେ ଦୀର୍ଘ ଅଠର ବର୍ଷ ଧରି ଅଠଚାଳିଶି ଗୋଟି ସଂଖ୍ୟାରେ ବସୁଙ୍କର ଆଖଡ଼ା ଘରେ ବୈଠକ ପ୍ରକାଶିତ ହୋଇଥିଲା । ଉପରୋକ୍ତ ରଚନାଗୁଡ଼ିକ ମଧ୍ୟରୁ ୧/୭, ୧/୮, ୧/୯, ୧/୧୧, ୧/୧୨, ୨/୨, ୨/୫, ୨/୬, ୨/୭, ୨/୮, ୩/୧, ୩/୩, ୩/୪, ୩/୫, ୩/୯, ୩/୧୧, ୬/୧୨, ୭/୧, ୧୫/୧ ପ୍ରବନ୍ଧ ଶ୍ରେଣୀର । ଏଗୁଡ଼ିକ ଓଡ଼ିଶାର ଲୋକ ସାହିତ୍ୟ ସମ୍ପର୍କିତ । ଅନ୍ୟ ରଚନା ଗୁଡିକ ମଧ୍ୟରୁ କେତେକ ଗଳ୍ପ ଆଙ୍ଗୀକରେ ଲିଖିତ ଓ କେତେକ ପ୍ରବନ୍ଧ । ଏ ସମସ୍ତ ରଚନା ସମାଜ ସଂସ୍କାର ମୂଳକ ।

ଉପରୋକ୍ତ ୧୯ ଗୋଟି ପ୍ରବନ୍ଧରେ ଓଡ଼ିଶାର କେତେକ ପ୍ରଚଳିତ ଓ କେତେକ ଅଧୁନା ବିଲୁପ୍ତ ଲୋକ ସାହିତ୍ୟର ଆଙ୍ଗୀକ ଓ ଆତ୍ମିକ ଦିଗ ସମ୍ପର୍କରେ ଆଲୋଚନା କରାଯାଇଛି । ଲୀଳା, ଯାତ୍ରା, ପାଲା, ଦାସକାଠିଆ, ଭାରତୀୟା, ମୋଗଲ ତାମସା ଆଦି ବିଷୟର ଆଲୋଚନା ଏହି ପ୍ରବନ୍ଧ ଗୁଡ଼ିକରେ କରାଯାଇଛି । ଝଙ୍କାରରେ ପ୍ରକାଶିତ ଆଖଡ଼ା ଘରେ ବୈଠକର ପ୍ରଥମ ପ୍ରବନ୍ଧଟି ନୃତ୍ୟ, ସଙ୍ଗୀତ ଓ ଅଭିନୟ ବିଷୟକ । ନିଜେ ଆଜୀବନ ଜଣେ ସଫଳ ଓ ସମ୍ଭ୍ରାନ୍ତ ଅଭିନେତା, କଣ୍ଠଶିଳ୍ପୀ, ସଙ୍ଗୀତ ବିଶାରଦ, ନାଟ୍ୟଦଳର ନିର୍ଦ୍ଦେଶକ ଓ ପରିଚାଳକ ଭାବରେ ତାଙ୍କର ବିପୁଳ ଅଭିଜ୍ଞତାକୁ ନେଇ ସେ ପ୍ରବନ୍ଧଗୁଡ଼ିକ ଲେଖିଥିବାରୁ ଏହା ଯେଭଳି ତାତ୍ତ୍ୱିକ ସେଇଭଳି ଉପାଦେୟ ହୋଇପାରିଛି ।[୩] ପ୍ରଥମ ପ୍ରବନ୍ଧରେ ଓଡ଼ିଶାର ନୃତ୍ୟ, ସଙ୍ଗୀତ ପରମ୍ପରା ଉପରେ ଆଲୋକପାତ କରି ବର୍ତ୍ତମାନ କାଳରେ ତାହା କିଭଳି ବିଲୟମୁଖୀ ହୋଇଛି ଦେଖାଇ ଦିଆଯାଇଛି । ଏଗୁଡ଼ିକର ଉନ୍ନତି ପାଇଁ ପ୍ରତିଭାଧର ଶିଳ୍ପୀ, ଅଭିଜ୍ଞ ଗୁରୁ ଓ ଅଭିନେତାମାନଙ୍କର ଭୂମିକା ସମ୍ପର୍କରେ ଆଲୋଚନା କରାଯାଇଛି ।

ଆଖଡ଼ା ଘର ବୈଠକର ଦ୍ୱିତୀୟ ମଜଲିସ 'ଝଙ୍କାର'ର ପ୍ରଥମ ବର୍ଷ ୮ମ ଓ ନବମ ସଂଖ୍ୟା ଯାତ୍ରା ଦଳ ପ୍ରସଙ୍ଗେ । ଏ ପ୍ରବନ୍ଧରେ ଯାତ୍ରା ସଂଗଠନ ବିଷୟରେ କୁହାଯାଇଛି । ଯାତ୍ରା ଶିଳ୍ପକରଣର ବିଭିନ୍ନ ଦିଗ ବିଷୟରେ ଆଲୋଚନା କରାଯାଇ ସ୍ୱର ଓ ତାଳ ପ୍ରସଙ୍ଗ ଉପରେ ଗୁରୁତ୍ୱ ଦିଆଯାଇଛି । ଦଳ ପରିଚାଳନା କ୍ଷେତ୍ରରେ ନିଜର ଅଭିଜ୍ଞତାକୁ ଓସ୍ତାଦ ନବଘନ ଓଝା ନାଟ୍ୟାଚାର୍ଯ୍ୟ ଚରିତ୍ର ମାଧ୍ୟମରେ ସେ ବ୍ୟକ୍ତ କରିଛନ୍ତି । ଯାତ୍ରାରେ ନିୟତି, ଧର୍ମ, ଚାରଣ ଓ ଭିକ୍ଷୁକ ଆଦିଙ୍କର ମନୋରଂଜନ ଦକ୍ଷତା ବୃଦ୍ଧିର ଉପାୟ ନିର୍ଦ୍ଦେଶ କରିଛନ୍ତି ।

---

୩. ଅଧ୍ୟାପକ କୁଳମଣି ଜେନା– କୃଷ୍ଣପ୍ରସାଦ ଗ୍ରନ୍ଥାବଳୀ, ଭୂମିକା

ପ୍ରବନ୍ଧର ଦ୍ୱିତୀୟ ଭାଗରେ ଯାତ୍ରା ଓ ଥିଏଟର ମଧ୍ୟରେ ଥିବା ପାର୍ଥକ୍ୟ ସୂଚିତ ହୋଇଛି। ଓଡ଼ିଆ ଯାତ୍ରା ବିଂଶ ଶତାବ୍ଦୀର ପ୍ରଥମ ଦୁଇ ଦଶନ୍ଧି ପର୍ଯ୍ୟନ୍ତ କିଭଳି ସଭ୍ୟ ରୁଚି ସମ୍ମତ ନଥିଲା ତାହା ବ୍ୟଙ୍ଗ କବିତା ମାଧ୍ୟମରେ ପ୍ରକାଶ କରିଛନ୍ତି। ପ୍ରକାଶିତ କବିତାର କେତେକ ଅଂଶ–

ପଣ୍ୟ ରମଣୀ ବେଶ ହୋଇ ସୀତା ନାଚିଲେ ଥେଇ ଥେଇ
ବଶିଷ୍ଠେ କୁଳର ପୁରୋଧା ତାହାଙ୍କୁ ଖୁଆଇଲା ବିଧା
ପ୍ରହରୀ ହସ୍ତୁ ବିଧା ଖାଇ ବଶିଷ୍ଠେ ମାଗିଲେ ଗଞ୍ଜାଇ
କିସ କହିବା ଗୋପାଳକୁ ଠୁକି ରହିବା କପାଳକୁ
ଯାବତ କୃତ ବିଦ୍ୟଗଣ ସଂସ୍କାରେ ହେବେ ଉଦାସୀନ
ତାବତ ଉନ୍ନତି ବାସନା ଆମ୍ଭମାନଙ୍କ ବୃଥା ସିନା ।[୪]

ପ୍ରବନ୍ଧର ଶେଷାଂଶରେ ଓଡ଼ିଶାର ଅବଲୁପ୍ତ ଇତିହାସ ଉପରେ ନାଟକ ସୃଷ୍ଟି ପାଇଁ ଆହ୍ୱାନ ଦେଇଛନ୍ତି।

ଆଖଡ଼ା ଘରେ ବୈଠକର 'ଚତୁର୍ଥ ଧୂପ' ଲୀଳା ପ୍ରସଙ୍ଗ। ଝଙ୍କାର ପ୍ରଥମ ବର୍ଷ ୧୧ ସଂଖ୍ୟା ପୃ ୯୬୨ରୁ ୯୬୫ ପୃଷ୍ଠାରେ ପ୍ରକାଶିତ। ଗଦ୍ୟ ସଂଳାପଯୁକ୍ତ ନାଟକ ସୃଷ୍ଟି ପୂର୍ବରୁ ଓଡ଼ିଶାରେ ଲୀଳାର ଆଦର ଓ ପରିବେଷଣ ଶୈଳୀ ବିଷୟରେ ଏଥିରେ ଆଲୋଚନା କରାଯାଇଛି। ଲୀଳା ସଙ୍ଗୀତ ପ୍ରଧାନ ଲୋକନାଟ୍ୟ। ଏଥିରେ ପ୍ରାଚୀନ ଚିନ୍ତା ଭୈରବ, ଦେଶାକ୍ଷ, କନଡ଼ା, ମାଳଶ୍ରୀ ରାଗର ସଙ୍ଗୀତ ପରିବେଷଣ କରାଯାଉଥିଲା। ବିଚିତ୍ର ରାମାୟଣ, ମହାନାଟକ ଓ ରଘୁବଂଶ ଶ୍ଳୋକ ଆବୃତ୍ତି ମଧ୍ୟରେ ଲୀଳା ପରିବେଷିତ ହେଉଥିଲା।

ବୈଠକର ପଞ୍ଚମ ସନ୍ଧ୍ୟା ଅଧୁନା ଲୁପ୍ତ ଓଡ଼ିଶାର ପ୍ରାଚୀନ ଲୋକ ନାଟକ 'ଭାରତୀୟା'ର ପରିଚୟ, ବେଶ ବିନ୍ୟାସ, ସ୍ୱର ସଂଯୋଜନା ବାଦ୍ୟ ଆଦି ବିଷୟରେ ସଂକ୍ଷିପ୍ତ ସୂଚନା ଦେବା ପରେ ନିଜର ଯାତ୍ରାଦଳ 'ବିରଜା ଅପେରା'ର ପରିଚୟ ପ୍ରଦାନ କରିଛନ୍ତି। ପ୍ରବନ୍ଧର ଶେଷ ଭାଗରେ 'ମୋଗଲ ତାମସା'ର ପୃଷ୍ଠଭୂମି ଓ ଏହାର କବି ବଲ୍ଲଭ ଚକ୍ରବର୍ତ୍ତୀଙ୍କ ପରିଚୟ ପ୍ରଦତ୍ତ ହୋଇଛି। କବି ଜଗନ୍ନାଥ ପାଣିଙ୍କ ପରିଚୟ ଓ ତାଙ୍କର କେତେକ ଛାନ୍ଦନାଟ୍ୟର ଜଟିଳ ସ୍ୱର ବିନ୍ୟାସ ବିଷୟରେ ସମ୍ୟକ୍ ଆଲୋକପାତ କରାଯାଇଛି। ଝଙ୍କାର ୧୫/୧ ସଂଖ୍ୟାରେ ମୋଗଲ୍ ତାମସା ବିଷୟରେ କିଂଚିତ ଆଲୋକପାତ ହୋଇଛି।

୪. ଝଂକାର– ପ୍ରଥମ ବର୍ଷ, ନବମ ସଂଖ୍ୟା, ପୃ ୭୬୮

ପରବର୍ତ୍ତୀ କେତେ ଗୁଡ଼ିଏ ପ୍ରବନ୍ଧରେ ଯାତ୍ରା ସଂଗଠନ ଓ ପରିଚାଳନା ବିଷୟରେ ଗଳ୍ପ ଆଙ୍ଗିକରେ ବର୍ଣ୍ଣନା କରାଯାଇଛି। ଏସବୁ ପ୍ରବନ୍ଧରେ ଓସ୍ତାଦ ଦୁଃଖି ଖୁଣ୍ଟିଆ ଚରିତ୍ର ମାଧ୍ୟମରେ କୃଷ୍ଣପ୍ରସାଦ ନିଜର ଜୀବନାନୁଭୂତିକୁ ଅତି ରସାଳ ଓ ମନୋଜ୍ଞ ଭାବେ ବ୍ୟକ୍ତ କରିଛନ୍ତି। ନିଜେ କିଭଳି ଶୃଙ୍ଖଳା ସହିତ ଦୀର୍ଘଦିନ ଧରି ଯାତ୍ରା ଦଳ ପରିଚାଳନା କରିବାକୁ ସକ୍ଷମ ହୋଇଥିଲେ ଦୁଃଖି ଖୁଣ୍ଟିଆଙ୍କ ଯାତ୍ରା ଦଳ ଗଠନ ଭିତରେ ତାହା ପ୍ରକାଶ କରିଛନ୍ତି। ନିଜର ତିକ୍ତ ମଧୁର ଅଭିଜ୍ଞତାର ସ୍ୱାକ୍ଷର ବହନ କରି ଏ ପ୍ରବନ୍ଧ ଗୁଡ଼ିକ ସୁଖପାଠ୍ୟ ହୋଇପାରିଛି।

ଝଙ୍କାରର ଦ୍ୱିତୀୟ ବର୍ଷ ଅଷ୍ଟମ ସଂଖ୍ୟାରେ ପ୍ରକାଶିତ 'ଆମ ପାଲା ବାଲା' ଓ ୩/୧୧, ୬/୧୨ ସଂଖ୍ୟାରେ ପାଲା ପ୍ରସଙ୍ଗ କୃଷ୍ଣପ୍ରସାଦଙ୍କ ଉଲ୍ଲେଖଯୋଗ୍ୟ ସୃଷ୍ଟି। ଓଡ଼ିଶାର ପ୍ରାଚୀନ ଲୋକନାଟ୍ୟ ପାଲାର ସୃଷ୍ଟି, ବର୍ତ୍ତମାନ ପାଲାକାର ଓ ପାଲାଗାୟକମାନଙ୍କ ସମସ୍ୟା, ପାଲାକୁ ଆଧୁନିକ ରୁଚି ଅନୁକୂଳ କରିବା ପାଇଁ କେତେକ ପ୍ରସ୍ତାବ, ଗାୟକଙ୍କ ଯୋଗ୍ୟତା, ପାଳିଆମାନଙ୍କର ଭୂମିକା, ପାଲାର ସ୍ୱର ବିନ୍ୟାସ, ପାଲା ପାଇଁ ସ୍ୱତନ୍ତ୍ର କାବ୍ୟର ଆବଶ୍ୟକତା, ପାଲାର ଉଭୟ ଆଙ୍ଗୀକ ଓ ଆତ୍ମିକ ଭାବବସ୍ତୁର ପୁଙ୍ଖାନୁପୁଙ୍ଖ ଆଲୋଚନା କରାଯାଇଛି।

ଲୋକନାଟକ ବିଷୟକ ଆଲୋଚନାର ପ୍ରତ୍ୟେକ ସ୍ଥଳରେ କୃଷ୍ଣ ପ୍ରସାଦ ସଂଗୀତର ଶାସ୍ତ୍ରୀୟ ଦିଗ ଉପରେ ଗୁରୁତ୍ୱ ଆରୋପ କରିଛନ୍ତି। କେତେକ ସଙ୍ଗୀତର ସ୍ୱର ବିନ୍ୟାସ କରିବା ସଙ୍ଗେ ସଙ୍ଗେ ଗାୟନ ପଦ୍ଧତି ସମ୍ପର୍କରେ ସୂଚନା ମଧ୍ୟ ଦେଇଛନ୍ତି। ୩ବର୍ଷ ୪ର୍ଥ ସଂଖ୍ୟା ଝଙ୍କାରରେ ଭୈରବୀ-କବାଲୀର ସ୍ୱରଲିପି ପ୍ରକାଶ କରିଛନ୍ତି। ସଙ୍ଗୀତର ସ୍ୱରଲିପି ପ୍ରକାଶ କ୍ଷେତ୍ରରେ ବସୁ ଓଡ଼ିଶାରେ ଆଦ୍ୟ ଉଦ୍ୟମ କରିଥିବାର ଦେଖାଯାଏ। ଝଙ୍କାରର ପ୍ରକାଶିତ ଲୋକନାଟକ ଓ ସଙ୍ଗୀତ ବିଷୟକ ପ୍ରବନ୍ଧରେ ଓଡ଼ିଶାର ଜନମାନସରେ ଅବହେଳିତ ଲୋକନାଟକ ପ୍ରତି ଶ୍ରଦ୍ଧା ସୃଷ୍ଟି କରିବା ସଙ୍ଗେ ସଙ୍ଗେ ଏ ସବୁରେ ଥିବା ଅନାବଶ୍ୟକ ଦିଗ ପ୍ରତି ଅଙ୍ଗୁଳି ନିର୍ଦ୍ଦେଶ କରିଛନ୍ତି। ତାଙ୍କ ନିଜ ଭାଷାରେ କହିଲେ "କି ଶିକ୍ଷାର୍ଥୀ, କି ଶିକ୍ଷକ, କି କର୍ତ୍ତୃପକ୍ଷଙ୍କୁ ଆଲୋଡିତ କରାଇବାର ବ୍ରତ ଘେନି ଝଙ୍କାର, ଆଖଡ଼ା ଘରେ ବୈଠକରେ ଯାତ୍ରା, ନାଟ, ପାଲା, ସୁଆଙ୍ଗ, ସଙ୍ଗୀତର କେତେ ଉପଦେଶ, କେତେ ଚାବୁକ, କେତେ କଟାକ୍ଷର ଇଙ୍ଗିତ କରିସାରିଲେଣି, ବିଦ୍ୟା ନାମରେ ବ୍ୟଭିଚାରର ନାନା ରହସ୍ୟ ସର୍ବସାଧାରଣରେ ପ୍ରକାଶିତ ହେବାରୁ ଦୃଷ୍ଟିକୋଣ ଯେ ଏକାନ୍ତ ନ ବଦଳିଛି କହି ହେବ ନାହିଁ।"[୫]

୫. ଝଂକାର– ୩/୫, ପୃଷ୍ଠା ୪୪୯

ଆଖଡ଼ା ଘର ବୈଠକ ଶିରୋନାମାରେ ପ୍ରକାଶିତ ଅନ୍ୟାନ୍ୟ ରଚ଼ନା ଗୁଡ଼ିକ ଓଡ଼ିଶାର ପଲ୍ଲୀ ଜୀବନର ବିମଳ ଚ଼ିତ୍ରରେ ଭାସ୍ୱର ହୋଇଉଠିଛି। ଗଳ୍ପ ଆଙ୍ଗିକରେ ରଚ଼ିତ ଏହି ସୃଷ୍ଟିର ଉଦ୍ଦେଶ୍ୟ ସମାଜ ସଂସ୍କାର। କେତେକ ରଚନାରେ ସ୍ୱଦେଶ ପ୍ରେମ ଉଦ୍ରେକ ପାଇଁ ଚେଷ୍ଟା କରାଯାଇଛି। ଓଡ଼ିଶାର ପଲ୍ଲୀ ଜୀବନ ପ୍ରତି ତାଙ୍କର ଅଧିକ ଶ୍ରଦ୍ଧା ଥିବାର ଅନୁମିତ ହୁଏ। କର୍ମମୟ ଜୀବନର ଅଧିକାଂଶ ସମୟ ସେ ଗ୍ରାମାଞ୍ଚଳରେ କଟାଇ ଥିବାରୁ ପଲ୍ଲୀର ଅନାହତ ସୌନ୍ଦର୍ଯ୍ୟ ତାଙ୍କ ପ୍ରାଣକୁ ଚ଼କିତ କରିଛି। ଫକୀର ମୋହନଙ୍କ ପରେ ଓଡ଼ିଆ ସାହିତ୍ୟରେ କୃଷ୍ଣପ୍ରସାଦଙ୍କ ସୃଷ୍ଟି ଭିତରେ ପଲ୍ଲୀଜୀବନ ପୁଣିଥରେ ନବ ଭାବରେ ଉଦ୍‌ଭାସିତ ହୋଇଛି। ଉତ୍କଳୀୟ ପଲ୍ଲୀର ଯାହା ନିଜସ୍ୱ, ସେହି ଭାଷା, ସେହି ଚ଼ଳଣୀ ଅତି କାବ୍ୟିକ ଢଙ୍ଗରେ ପ୍ରକାଶ ପାଇଛି ତାଙ୍କ ରଚ଼ନା ଭିତରେ। ବଣିଆଁ ଘରର ପିଣ୍ଡା, କୁମ୍ଭାର ଘରର ଉହା, କମାରଶାଳ, ଧୋବା ଗଣ୍ଡି, ଗାଧୁଆ ତୁଠ, ପରିଡ଼ା ଘର ଢିଙ୍କି ଚ଼ାଳି, ଗୋପାଳ ଘର ଗୋଠ ସବୁର ଅନୁପମ ଚିତ୍ର ଫୁଟି ଉଠିଛି ତାଙ୍କର 'ଆଖଡା ଘରେ ବୈଠକ' ରଚ଼ନା ମାନଙ୍କରେ। ଗଳିତ ଚର୍ମ ଜଙ୍ଘ ଖୁଣ୍ଟିଆ, ସ୍ଖଳିତଦନ୍ତ ଚ଼େମା ସାନ୍ତଙ୍କଠାରୁ ଆରମ୍ଭ କରି ହରିଆ, ନବା ଓ ହାଡ଼ିଆ କେହି ତାଙ୍କ ଦୃଷ୍ଟି ଏଡ଼ାଇ ପାରିନାହାନ୍ତି। ବବୁରୀ ବଣ ବାସିନୀ ଜାଗୁଲେଇ, ସାଆଁତା ବଣ ବାସିନୀ ସୁନ୍ଦୁରେଇ କବି ପ୍ରସାଦରୁ ଜୀବନ୍ୟାସ ପାଇଛନ୍ତି।

ଝଙ୍କାର ୪/୧, ୪/୩, ୪/୬ ସଂଖ୍ୟାରେ ପଲ୍ଲୀ ଚିତ୍ର ୪/୧୧,ରେ ଗାଁକୁ ଫେରିଚ଼ାଲ, ୬/୯ର ସହର ମଫସଲ ସମସ୍ୟା, ୧୨/୫,ପଶି ପୁରାଣରୁ ଫାଳେ, ୧୨/୧୨ ପଲ୍ଲୀଚ଼ିତ୍ର, ୮/୪ Orissa pesant life ଆଦି ରଚ଼ନା ଓଡ଼ିଶାର ପଲ୍ଲୀ ଜୀବନ ଆଧାରିତ। ଏସବୁ ରଚ଼ନାବଳୀରେ ପଲ୍ଲୀର ପାଟ, ଧାନବଦାଡ଼ି, ପିଠିଆ ବଳଦ, ବେଣା ବଣ, ରେକଟି, ଗୋହିରୀ, ବାବା ଆଖଣ୍ଡଳମଣି, ଦପା ନାହାକାଣୀ ଆଦିର ଚ଼ିତ୍ର ଅତି ମନୋଜ୍ଞ ଭାବରେ ପ୍ରକାଶ ଲାଭ କରିଛି।

ସେହିପରି ଝଙ୍କାରର ୮/୧, ୮/୨, ୮/୩, ୮/୪ ସଂଖ୍ୟାରେ ଭୂତ ଶୀର୍ଷକ ରଚ଼ନାରେ ଲେଖକଙ୍କ ସଂସ୍କାର ମନୋଭାବର ପରିଚ଼ୟ ମିଳେ।

୭ମ ବର୍ଷ ୪ର୍ଥ ଓ ୫ମ ସଂଖ୍ୟାରେ 'ଡ଼ାକୁ ବୟାଦା' ଗଳ୍ପରେ ବୈକୁଣ୍ଠନାଥଙ୍କ ଚରିତ୍ରକୁ ଡିଟେକ୍‌ଟିଭ ସୁଲଭ ଢଙ୍ଗରେ ଉପସ୍ଥାପିତ କରି ଅବହେଳିତ ପଲ୍ଲୀ ଜୀବନର କରୁଣ ଆଲେଖ୍ୟ ବାଢିଛନ୍ତି। ଭୀମସା, ବଇ ମଲିକ, ଚ଼େମ ରଣା, ଅଇଲୀ ନାନୀ, ଶୁକି ଅପାଙ୍କ ଛେଳି ନଣ୍ଡି ଭରା ଗୋବର ଲିପା, ଗୁହାଳ ପିଣ୍ଡା, ଛିଣ୍ଡା ଦଦରା ଖଜିରି ପଟିଆର ଚମତ୍କାର ବର୍ଣ୍ଣନା ସହିତ ସମାଜର ଦୁର୍ନୀତି, ଧର୍ମ ନାମରେ ଭ୍ରଷ୍ଟାଚାର ଓ ଶୋଷଣର ନିଛକ ଚିତ୍ର ପାଠକକୁ ମୁଗ୍ଧ କରେ।

୬ଷ୍ଠ ବର୍ଷ ୮ମ ଓ ୯ମ ସଂଖ୍ୟାରେ ପ୍ରକାଶିତ ରାଏଟସିଂ ଓ ବଳିଆର ସିଂ ଦୁଇଟି ଖଣ୍ଡାୟତ ପରିବାରର କାହାଣୀ ଭିତରେ ଦେଶାତ୍ମବୋଧର ପବିତ୍ର ଧାରା ପ୍ରବାହିତ।

ଉପରୋକ୍ତ ରଚନା ଗୁଡିକରେ ଲେଖକ ସ୍ୱାଧୀନତା ପୂର୍ବ ଓ କିଂଚିତ ପରବର୍ତ୍ତୀ ସମୟର ଓଡ଼ିଶାର ପଲ୍ଲୀ ଜୀବନ ଧାରାର ବିମଳ ଚିତ୍ର ଅଙ୍କନ କରିଛନ୍ତି। ଆଧୁନିକ ଶିକ୍ଷାପ୍ରାପ୍ତ ନବଯୁବକମାନଙ୍କର ପଲ୍ଲୀ ଜୀବନ ପ୍ରତି ଘୃଣା ଭାବକୁ ବିଦ୍ରୁପ କରିବା ସଙ୍ଗେ ସଙ୍ଗେ ସହର ଜୀବନର ବିଷମୟ ଚିତ୍ର ଉପସ୍ଥାପିତ କରି ଗାଁକୁ ଫେରିବା ପାଇଁ ଆହ୍ୱାନ ଦେଇଛନ୍ତି। ତେଣୁ ଆଖଡ଼ା ଘରେ ବୈଠକର ଚରିତ୍ର ସବୁ ଓଡ଼ିଶାର ଅବହେଳିତ ପଲ୍ଲୀର। ଲେଖକଙ୍କ ଭାଷାରେ "ଆମେ ପାଠୁଆଙ୍କ ନାଁ ଧରିବୁ ନାହିଁ। ବଡ଼ଲୋକ, ରାଜା ଜମିଦାର ଚଉପାଡି କଥା କହିବୁ ନାହିଁ। ଶିଳ୍ପକଳାର ସୌଭାଗ୍ୟ ସୌଷ୍ଠବରେ ଆମର କିଛି ନାହିଁ। ଏହା ଆମର ଇତିହାସ ନୁହେଁ। ଏହା ଆମର ଆଖଡ଼ା ଘରର ଅନ୍ତରାଳ ଅଧ୍ୟାୟ।[୬]

କୃଷ୍ଣ ପ୍ରସାଦଙ୍କ ଗଦ୍ୟ, ପ୍ରଜ୍ଞାର ବିମଳ ଆଲୋକରେ ଯେଉଁଭଳି ଦେଦୀପ୍ୟମାନ, ହାସ୍ୟର କୋମଳ ସ୍ପର୍ଶରେ ସେଇ ଭଳି ଆହ୍ଲାଦକର। ଏକ ଦିଗରେ ନିର୍ମଳ ଓ ସ୍ନିଗ୍ଧ ହାସ୍ୟ ସଙ୍ଗେ ତୀକ୍ଷ୍ଣ ଓ ଶାଣିତ ବ୍ୟଙ୍ଗର ମଂଜୁଳ ସମନ୍ୱୟ ତାଙ୍କ ଗଦ୍ୟ ରଚନାର ବୈଶିଷ୍ଟ୍ୟ। ସରଳହାସ୍ୟ ସ୍ୱାଭାବିକ, ପାଠକକୁ ଆନନ୍ଦ ଦାନ ପୂର୍ବକ ପ୍ରସନ୍ନ କରିବା ଏହାର ଲକ୍ଷ୍ୟ। ବ୍ୟଙ୍ଗ କିନ୍ତୁ ଉଦ୍ଦେଶ୍ୟ ପ୍ରଣୋଦିତ। ସଂସ୍କାରର ଲକ୍ଷ୍ୟ ରଖି ବ୍ୟକ୍ତି ଓ ସମାଜ ଜୀବନର ଅସଙ୍ଗତି, ଭ୍ରାନ୍ତି ଓ ସ୍ଖଳନକୁ ବ୍ୟଙ୍ଗକାର ନିର୍ଦ୍ଦୟ ଭାବରେ ସମାଲୋଚନା କରିଥାଏ। ବିଦ୍ରୁପ ତାର ମାଧ୍ୟମ। ସେ ସମାଜର ନୈତିକ ମୂଲ୍ୟବୋଧର ରକ୍ଷାକର୍ତ୍ତା।

ଆଖଡ଼ା ଘରେ ବୈଠକ ରଚନାର ଉଦ୍ଦେଶ୍ୟ ସମ୍ପର୍କରେ ତାଙ୍କର ନିଜର ମତକୁ ଉଦ୍ଧାର କରାଯାଉ - ଗୁଳିଖଟି, ତାଡ଼ିଖଟି, ମଦଖଟି ସଙ୍ଗରେ ଆଖଡ଼ା ଘରର ଅଙ୍ଗାଙ୍ଗୀ ଭାବ ଥିବାର ଦୁର୍ନାମ ବହୁ ପୂର୍ବରୁ ଚଳି ଆସୁଛି। ଏହାକୁ ମଧ୍ୟ ସେଇ ପର୍ଯ୍ୟାୟଭୁକ୍ତ କରିବାର ପରିକଳ୍ପନା ଅନେକ ଚିନ୍ତାଶୀଳ ସମାଜ ହିତୈଷୀ କରି ରଖିଥିଲେ। କିନ୍ତୁ ସଦାଶୟ ସରକାର Prohibition ର କଠୋର ଆଇନରୁ ରକ୍ଷା କରିଛନ୍ତି। x x x x

ତଥାପି କାଳେ ହୋସିଆର ଥାଉଁ ଥାଉଁ ତୁଣ୍ଡ ଖସରିଯାଏ, କାଳେ ସେହି ପୁରୁଣାକାଳର ଟଳଟଳିଆ ପାଦ କାହା ଉପରେ ଦଇବେ ଝୁଣ୍ଟିଯାଏ, ତେଣୁ ନିବେଦନ ପୂର୍ବରୁ ଅଗ୍ରୀମ ଭିକ୍ଷା ଆପଣଙ୍କର କ୍ଷମା।"[୭]

---

୬. ଝଂକାର– ୮/୬, ପୃ ୫୬୦
୭. ଝଂକାର– ୬/୧୨, ଆଖଡ଼ାଘରେ ବୈଠକ

ସମାଜ ସଂସ୍କାର ଉଦ୍ଦେଶ୍ୟରେ ସେ ସତତ ଉଦ୍ୟତ ଥିଲେ। ଆଖଡ଼ା ଘରେ ବୈଠକ ରଚନାବଳୀରେ ନିଜକୁ ବୁଢ଼ା ନେଉଳ ଭାବେ ଚିତ୍ରଣ କରି ବ୍ୟଙ୍ଗର ତୀବ୍ର ତୀକ୍ଷ୍ଣ ଦନ୍ତରେ ସମାଜର ଅସଙ୍ଗତିକୁ ବିଦୀର୍ଣ୍ଣ କରିଛନ୍ତି। ତାଙ୍କ ନିଜ ଭାଷାରେ - "ଝଙ୍କାରର ପୋଷା ଅଣ୍ଡିରା ନେଉଳଟା କେଜାଣି କାହିଁକି ଏ ବୁଢ଼ା ଦିନରେ ଅଖାଡୁଆ ପାଗ ପ୍ରବୃତ୍ତି ଯୋଗୁ ତିନି ମାସ ହେଲା କିଆବଣରେ ଲୁଚିଥିଲା। ସଦ୍ୟ ମାତ୍ର ହୋଇ ଗଁ ଗଁ ହେଉଛି।

ଅନୁମାନ ଶିଷ୍ଟ ଭଦ୍ର ପ୍ରିୟାପ୍ରୀତି ମାନ ମୋହବତ କିଛି ବିଚାର ନକରି ସଭିଙ୍କୁ ପୁଚ୍ଛେ ପୁଚ୍ଛେ ନକାମୁଡ଼ି ଛାଡିବ ନାହିଁ। ପାଠକ ମିତ୍ର ହୋଇଥିଲେ ଅଳ୍ପ ରକ୍ତପାତ ପରେ ପୁଣି କୁତୁକୁତିଆ କୌତୁକରେ ସବୁ ଭୁଲିଯିବେ, ଶାନ୍ତ ହୋଇଥିଲେ ଅବଶ୍ୟ ଡାକ୍ତରଖାନାକୁ ଯିବାକୁ ବାଧ ହେବେ।"[୮]

ଅନେକ ସମୟରେ ସ୍ୱାଧୀନଚେତା ଲେଖକ ଗଣ ମାନବେତର ଜୀବ ଆସନରେ ନିଜକୁ ଥୋଇ ପାଠକଙ୍କ ଆଗରେ ନିଜର ମୁକ୍ତ ଚିନ୍ତାକୁ ବ୍ୟକ୍ତ କରିଥାଆନ୍ତି। ଡ଼ାମରା କାଉ, ନେଉଳଭାଇ, ବିଲୁଆ ନନା, ଝିଟିପିଟି ଆଦିଙ୍କ ସହିତ ଓଡ଼ିଶାର ବିଦଗ୍ଧ ପାଠକେ ସୁପରିଚିତ। ଆଖଡ଼ା ଘରେ ବୈଠକରେ ବୁଢ଼ା ନେଉଳ ବିଲୁଆ ପରି ଚତୁର, ଝିଟିପିଟି ପରି ନିରୀହ, ପୁଣି ଡାମରା କାଉ ଭଳି ସଂଗ୍ରାମୋଦ୍ୟତ।

ଏକ ସୁସ୍ଥ ସମାଜ ଗଠନରେ ଲେଖକର ଏକ ଗୁରୁତ୍ୱପୂର୍ଣ୍ଣ ଭୂମିକା ରହିଛି ଏକଥା ପ୍ରତି କୃଷ୍ଣ ପ୍ରସାଦ ଥିଲେ ସଚେତନ। ପ୍ରାଚୀନ ଚଳଣୀରେ ଥିବା ଅନ୍ଧବିଶ୍ୱାସ ଓ କୁସଂସ୍କାରରୁ ସମାଜକୁ ମୁକ୍ତ କରି ଶୋଷଣର ମୁଖା ଖୋଲି ଦେବାରେ ତାଙ୍କର ଲେଖନୀ ଚଳଚଞ୍ଚଳ ହୋଇଉଠିଛି। ଅନୀତି ଅନାଚାରର ମୂଳୋତ୍ପାଟନ କରି, ନୀତି, ଆଦର୍ଶ ଓ ସଦାଚାରର ପ୍ରତିଷ୍ଠା ପାଇଁ ଉଦ୍ୟମ କରିଛନ୍ତି। ସାହିତ୍ୟ ଏକାଡେମୀ ତାଙ୍କ ମାନପତ୍ରରେ ଯଥାର୍ଥରେ କହିଛନ୍ତି 'ଆପଣଙ୍କ ଆଖଡ଼ା ଘରେ ବୈଠକ ପରି ରସାଳ ରଚନାରେ ନୀତି ଓ ଆଦର୍ଶ ସଙ୍ଗେ ହାସ୍ୟରସର ଅଖଣ୍ଡଧାରା ପାଠକର ଅନ୍ତରକୁ ପ୍ରୀତି ମଧୁର କରିଥାଏ।'[୯]

ଭାଷା ପ୍ରୟୋଗ କ୍ଷେତ୍ରରେ କୃଷ୍ଣ ପ୍ରସାଦ ସ୍ୱତନ୍ତ୍ର ସିଦ୍ଧିର ଅଧିକାରୀ। "ଆଖଡ଼ା ଘରେ ବୈଠକ" କୃଷ୍ଣ ପ୍ରସାଦଙ୍କର ଅଭିନବ ଗଦ୍ୟ ଶୈଳୀର ନିଦର୍ଶନ। ଫକୀର

---

୮. ଝଂକାର– ୫/୩ ଆଖଡ଼ା ଘର ବୈଠକ

୯. ଅଧ୍ୟାପକ କୁଳମଣି ଜେନା– କବିମଞ୍ଜୁଳ କୃଷ୍ଣପ୍ରସାଦ ଗ୍ରନ୍ଥାବଳୀ (ଭୂମିକା)

ମୋହନଙ୍କ ଗଦ୍ୟ ରଚନାବଳୀରେ ଯେଉଁ ଶୈଳୀର ଅନୁବର୍ତ୍ତନ ହୋଇଥିଲା, ଗୋପାଳ ପ୍ରହରାଜଙ୍କ ରଚନାରେ ତାହା ବିକାଶୋନ୍ମୁଖୀ ହୋଇ କୃଷ୍ଣ ପ୍ରସାଦଙ୍କ ହସ୍ତରେ ପୂର୍ଣ୍ଣତା ପ୍ରାପ୍ତ ହୋଇଥିବାର ଦେଖାଯାଏ। ତାଙ୍କର ଭାଷା ପ୍ରୟୋଗ ଭଙ୍ଗୀର ସ୍ୱାତନ୍ତ୍ର୍ୟ ଓଡ଼ିଆ ସାହିତ୍ୟରେ ଅନନ୍ୟ ଥିଲା। ଆଖଡ଼ା ଘରେ ବୈଠକର ରଚନା ଶୈଳୀକୁ ବିଚାରକୁ ନେଇ ସମାଲୋଚକ ସୁରେନ୍ଦ୍ର ମହାନ୍ତି ତାଙ୍କୁ ଇଂରାଜୀ ସାହିତ୍ୟର ଆଡ଼ିସନ ଓ ଷ୍ଟିଲ ଆଦିଙ୍କ ସହିତ ତୁଳନା କରିଛନ୍ତି।[୧୦]

ବସୁଙ୍କ ଗଦ୍ୟର ଉଦାହରଣଟିଏ ନିଆଯାଉ।

"ଉପବାସ, ପ୍ରାୟଶ୍ଚିତ, ପୃଥିବୀର ଯାବତୀୟ ସୁଖ ସମ୍ଭୋଗ ପ୍ରତି ବୈରାଗ୍ୟ, ଆତ୍ମପୀଡ଼ନ - ଏହାହିଁ ଅଧ୍ୟାପକ ତଥା ପୁରୋହିତଙ୍କ ଅନୁଜ୍ଞା।

ଡହ ଡହ ବୈଶାଖ ଝାଞ୍ଜି, ତୃଷାତୁର କେହି ଟୋପେ ଜଳ କି ବରଫ ସରବତ ପିଇ ଦେଲାତ ହେଲା ତାଙ୍କର ଏକାଦଶୀ ବା 'ରୋଜା'ର ମୋଜ୍ ସବୁ ମାରୁ।

ଜ୍ୱର ବିକାରରେ ଆଟୁପାଟୁ ହେଉଛି ରୋଗୀ; ଡାକ୍ତରବାବୁ ପ୍ରାଣ ରକ୍ଷା ଲାଗି ଥୋଇ ଦେଲେ ବ୍ରାମେବ୍ରାଣ୍ଡି। ଚାଲିଗଲା ଜାତି ପତ୍ର, ଧର୍ମ, ବିବାକ୍ ସବୁ।

ଆଠ ବର୍ଷର କୁମାରୀ - ଦୈବେ ହେଲେ ବିଧବା-ନଦିଦେଲେ ବ୍ରହ୍ମଚର୍ଯ୍ୟ - ଆମ ଭଳିଆ ଷାଠିଏ ବର୍ଷିଆ ବୁଢ଼ାଏ ଯାହା ପାଳନ କରିବାକୁ କୁଣ୍ଠିତ। ସେ ଅନୁଶାସନ ପାଳି ନପାରିଲେ ସେ ହେବେ ଭ୍ରଷ୍ଟା।

ଧର୍ମ ଉପାର୍ଜନ ଲାଗି ଢାଳି ଦେଉଥିବୁ କେବଳ ପୁରୋହିତ ଗୋଷ୍ଠିଙ୍କୁ - କେହି ମହାତ୍ମା, ମହାପୁରୁଷ କେହି 'ଆନନ୍ଦ' କେହି 'ସ୍ୱାମିଜୀ', କେହି 'ସିଦ୍ଧବାବା', ନିଜର ଝାଳବୁହା ଧନରେ ପରିପୁଷ୍ଟ କରିବୁ କେତେକ ସ୍ୱାର୍ଥପର କୁକର୍ମସକ୍ତ ରାଜାଘର ଦଲାଲଙ୍କୁ ସବୁ ନିର୍ବିଚାରରେ"।[୧୧] ସାଧାରଣ ଅତି ପ୍ରଚଳିତ ଓଡ଼ିଆ ଶବ୍ଦର ଅସାଧାରଣ ଗ୍ରନ୍ଥନ କୌଶଳ ଭାଷାକୁ ନୂତନ ଶକ୍ତିଦାନ କରି କାବ୍ୟିକ ସୌନ୍ଦର୍ଯ୍ୟରେ ବିଭୂଷିତ କରିପାରେ। କୃଷ୍ଣପ୍ରସାଦଙ୍କ ଗଦ୍ୟରେ ତାର ବହୁଳ ପ୍ରମାଣ ମିଳେ। ଭାଷା ପ୍ରୟୋଗ କ୍ଷେତ୍ରରେ କଳା କୁଶଳତା ଫଳରେ ସାଧାରଣ ପରିବେଶକୁ ଲେଖକ ମନୋଜ୍ଞ ସୁଷମାମଣ୍ଡିତ କରିପାରିଛନ୍ତି।

---

୧୦. ସୁରେନ୍ଦ୍ର ମହାନ୍ତି– ଫକୀରମୋହନ ସମୀକ୍ଷା (ସଂଶୋଧିତ) ପୃ ୪୮

୧୧. ଝଂକାର– ୧୦/୧, ପୃ ୬୬

"ଗହକୀଙ୍କ ପରିସର କେବଳ ସହର ମଧ୍ୟରେ ଆବଦ୍ଧ ନହୋଇ ମାଡ଼ିଗଲାଣି ସୁଦୂର ମଫସଲକୁ। ଭଦ୍ରକରୁ ଭଦ୍ରକାଳୀ, କେନ୍ଦ୍ରପଡ଼ାରୁ ବଳଦେବ ଜୀଉ ମଧ୍ୟ ଖୋଜିଲେଣି ସନ୍ଧ୍ୟା ଧୂପ ବେଳେ ସାନ୍ଧ୍ୟ ଚା' ସାଙ୍ଗକୁ ଜହ୍ନ ଦୋକାନର ବିରିବଡ଼ା ଚାଟ୍। ତଳ ହଟିରୁ ଶ୍ରୀ ବାବା ଆଖଣ୍ଡଳ ମଣି ପିଆଜି ଗନ୍ଧରେ ବ୍ୟାକୁଳ ହୋଇ ଧାଁ ଧପଟ କଲେଣି ଓ ଏଠାରେ ଜହ୍ନର ସାହି ତଳକୁ ବେଲ ଗଛ ତଳେ ଦୋହରା ଘର ଓ ସାରକିଟ୍ କୋଟ୍ ଆରମ୍ଭ କରିଛନ୍ତି। ସବୁବେଳେ ଜହ୍ନ ଦୋକାନର ବିରିବଡ଼ା ଅଷ୍ଟମଙ୍ଗଳିରେ 'ଜଗତ ପେଡ଼ି'ର ମହିମା ଓ ସୌଷ୍ଟବ ରକ୍ଷା ଲାଗି ତହିଁର ବିରାଟ ଗର୍ଭାଂଶରେ ଗୁଜୁରାତୀ, ପାନମହୁରୀ; ଲବଙ୍ଗ ସଙ୍ଗେ ଆସ୍ଥାନ ଭିଡ଼ିଲେଣି, ପାଚ଼କୀ-ଦହି - ବଡ଼ା ଆମୂଳଚୂଳ ପୌଷ୍ଟିକନଳୀଟିକୁ ଆଖି ପିଛାକେ ଉତ୍ତେଜିତ କରାଇ ଦେବାକୁ। ଏପରି ଉପାଦେୟ ଝୋଳ କେହି ଆବିଷ୍କାର କରିନଥିଲେ। ବଦନ ମଣ୍ଡଳରେ ପାଚି ଗନ୍ଧରଟି ବ୍ୟାଦନ କରିବାର ବହୁପୂର୍ବରୁ ବାୟୁ ମଣ୍ଡଳ ହାକୁଟି ମାରିବ ଏ କିଛି ବିଚିତ୍ର କଥା ନୋହେ। ନଦୀ କୂଳରେ ଅତରା ଉପରେ ହରିତତୃଣାଙ୍କୁର ମାନ ଚକତା ଚକତା ପୋଡ଼ିଯାଇ ଯତ୍ର ତତ୍ର ଘୋଷଣା କରୁଛି ମହିମା। କୋଷ୍ଠ କାଠିନ୍ୟ ବ୍ୟାଧିଗ୍ରସ୍ତ ବୃଦ୍ଧ ଶରୀରୀ, ଅଫିମୀ, ଅର୍ଶ ରୋଗୀ ମାନେ ହିଁ ଏଥିରେ ବହୁଳ ପକ୍ଷପାତୀ।"[୧୨]

ଏଭଳି ବର୍ଣ୍ଣନା 'ଆଖଡ଼ା ଘରେ ବୈଠକ'ର ଯତ୍ର ତତ୍ର ଖୋଜିଲେ ସହଜରେ ମିଳେ। ଲୋକ କଥିତ ଭାଷା, ପଲ୍ଲୀରେ ପ୍ରଚଳିତ ଢଗଢମାଳୀକୁ ସେ ସାହିତ୍ୟିକ ମୂଲ୍ୟ ଦେବାରେ ଯତ୍ନବାନ ହୋଇଛନ୍ତି। ଏଥିଯୋଗୁଁ ତାଙ୍କର ଗଦ୍ୟ କ୍ଲାସିକ୍ ଗଦ୍ୟ ସ୍ତରକୁ ଉଠିଯାଇଛି। ଏଠାରେ ବିଦଗ୍ଧ ସମାଲୋଚକ ଡକ୍ଟର ମାୟାଧର ମାନସିଂହଙ୍କ ଅଭିମତ ଉଦ୍ଧାର କରାଯାଇପାରେ ।

But the palm for the finest Oriya prose in the contemporary scene should undoubtedly go to Sri Krishna Prasad Basu for his series Akhada ghare Baithaka (Talks in the village music hall) published in the pages of the monthly 'Jhankar'. Describing in story from the genesis and character of Oriya Yatra's, they reveal a fluency, a mastery of colloquial as well as scholarly idioms, a pervasive humour and an unusual narrative power that are indeed amazing in a man who had never attempted any prose before, and

୧୨. ଝଂକାର– ୧୦/୧, ପୃ ୬୮

who, even now has no literary ambitions or pretentions. A professional master of music and Oriya Yatra's, Krishna prasad wanted only to write his experiences. When published in book from, Basu's 'Akhada ghare Baithaka' will no doubt be a prose classic in modern Oriya ।[୧୩]

**ଗୀତି କବିତା :**

କୃଷ୍ଣପ୍ରସାଦ ଥିଲେ ନିଜ ସମୟର ସବୁଠାରୁ ପ୍ରଭାବଶାଳୀ ଗୀତିକାର। ଖଣ୍ଡ କାବ୍ୟ କ୍ଷେତ୍ରରେ ନିଜର ପରାକାଷ୍ଠା ପ୍ରଦର୍ଶନ ପୂର୍ବରୁ ନାଟକ ପାଇଁ ଲେଖିଥିବା ସଙ୍ଗୀତ ଗୁଡ଼ିକରେ ତାଙ୍କ କବି ପ୍ରତିଭାର ଉନ୍ମେଷ ହୋଇଥିଲା। ସଙ୍ଗୀତ ଥିଲା ନାଟକର ଏକ ଅପରିହାର୍ଯ୍ୟ ଉପାଦାନ। ଆଜି ସଙ୍ଗୀତ କହିଲେ କେବଳ କଣ୍ଠର ଗୀତକୁ ବୁଝାଯାଉଥିବା ବେଳେ, ସଙ୍ଗୀତର ପ୍ରକୃତ ରୂପ ହେଉଛି ଗୀତ, ନୃତ୍ୟ ଓ ବାଦ୍ୟର ସମାହାର। ଛାତ୍ର ଜୀବନରୁ କୃଷ୍ଣପ୍ରସାଦ, ଗୀତ, ନୃତ୍ୟ ଓ ବାଦ୍ୟଯନ୍ତ୍ର କ୍ଷେତ୍ରରେ ଉପଯୁକ୍ତ ତାଲିମ ଲାଭ କରିଥିବାରୁ ନାଟ୍ୟକାର ଭାବରେ ପରିଚିତ ହେବାବେଳେ ସଙ୍ଗୀତ ସୃଷ୍ଟିରେ ସିଦ୍ଧିର ସ୍ୱାକ୍ଷର ଅଙ୍କନ କରିଗଲେ।

ସଙ୍ଗୀତ ହିଁ ଥିଲା ଯାତ୍ରାରେ ରସ ସଂଚ୍ଚାରର ପ୍ରଧାନ ମାଧ୍ୟମ। ଆମ ହୃଦୟର ବିଭିନ୍ନ ଆବେଗ ସହିତ ବାଦ୍ୟ ଯନ୍ତ୍ରର ତନ୍ତ୍ରୀଗୁଡ଼ିକର ବନ୍ଧା ଥିବା ସ୍ୱରର ସମ୍ପର୍କ ରହିଛି। ସେଥିପାଇଁ ସ୍ୱର ଶୁଣିଲେ ହୃଦୟରେ ଆବେଗ ଓ କମ୍ପନ ସଂଚାରିତ ହୁଏ। ଆଗେ ତେଣୁ ଯାତ୍ରାରେ ବିଭିନ୍ନ ସ୍ୱରର ଗାନ ସହିତ ଯନ୍ତ୍ର ସଙ୍ଗୀତର ବହୁଳ ବ୍ୟବସ୍ଥା ଥିଲା। କୃଷ୍ଣପ୍ରସାଦ ନିଜ ଯାତ୍ରା ନାଟକରେ ସଂଯୋଜନା କରିଥିବା ସଙ୍ଗୀତ ପାଇଁ ଅତ୍ୟନ୍ତ ଲୋକପ୍ରିୟ ହୋଇପାରିଥିଲେ। ଜଣେ ଅସାଧାରଣ କଣ୍ଠଶିଳ୍ପୀ ଓ ଗୀତିକାର ଭାବରେ ସେ ନିଜ ସମୟରେ ସମାଦୃତ ହୋଇଥିଲେ। ନିଜ ନାଟକ ପାଇଁ ଗୀତ ରଚ୍ନା କରିବା ସଙ୍ଗେ ସଙ୍ଗେ ସେ ଅନ୍ୟ ନାଟ୍ୟକାରଙ୍କ ନାଟକ ପାଇଁ ମଧ୍ୟ ଗୀତ ରଚ୍ନା କରୁଥିଲେ। ନାଟ୍ୟକାର କାର୍ତ୍ତିକ କୁମାର ଘୋଷଙ୍କ 'ମାତୃପୂଜା' ନାଟକର ପ୍ରଥମ ଅଙ୍କ ୨ୟ ଦୃଶ୍ୟର 'କେତେ ରଙ୍ଗେ ସଜାଇଛୁ ବଜାର' ଓ ୪ର୍ଥ ଅଙ୍କ/ଦ୍ୱିତୀୟ ଦୃଶ୍ୟ 'ତୋର କରମେ ଯେବେ ନାହିଁରେ ସୁଖ ଖୋଜିଲେ କି ହେବ ?' (ପରିଶିଷ୍ଟ) ଦୁଇଟି ଗୀତ କୃଷ୍ଣ ପ୍ରସାଦଙ୍କ ରଚ୍ନା। 'ମାତୃପୂଜା'ର ପ୍ରଥମ ସଂସ୍କରଣରେ କୃଷ୍ଣପ୍ରସାଦଙ୍କ ନାମ ଥିବା ବେଳେ ପର ସଂସ୍କରଣରେ ଦିଆଯାଇନାହିଁ। ନିଜ ପ୍ରକାଶିତ ଫୁଲହାର ଗୀତିଗୁଚ୍ଛରେ ଏ ଦୁଇଟି ସଙ୍ଗୀତକୁ କୃଷ୍ଣପ୍ରସାଦ ସ୍ଥାନିତ କରିଛନ୍ତି। ଦେଶୀୟ ସ୍ୱର ସହିତ

୧୩. ଡଃ ମାୟାଧର ମାନସିଂହ– History of Oriya Literature, p. 274

ଜାତୀୟ ରାଗରାଗିଣୀର ସମନ୍ୱୟ ତାଙ୍କ ସଙ୍ଗୀତର ବିଶେଷତ୍ୱ ଥିଲା। ସେତେବେଳେ ଯାତ୍ରାରେ ଦେଶୀୟ ସ୍ୱର ନାମରେ ନିମ୍ନମାନର ସଙ୍ଗୀତ ପରିବେଷଣ କରାଯାଉଥିଲା। ସେ ବିଷୟରେ ସେ ନିଜେ ଲେଖିଛନ୍ତି "ରାତିଯାକ କେବଳ ଭଜନ, ଡ଼ାଇଖାଇ, ଚ଼ଇତି ପୁନେଇ, କେଳାକେଲୁଣୀଙ୍କର ବା ସାନ୍ତାଳୀ ଝୁମର ଓ ଭାଟିଆରି ବ୍ୟତୀତ ଜାତୀୟ ଉଚ୍ଚାଙ୍ଗ ସ୍ୱର କିଛି ଶୁଣିବାକୁ ନାହିଁ। ଶଙ୍କରାଭରଣ, ସାବେରୀ, ମହ୍ଲାର, କାମୋଦୀ, କନଡ଼ା ବା ତଜ୍ଜାତୀୟ ସ୍ୱରମାନ କି ଯାତ୍ରାରୁ ବିଦାୟ ନେଲେଣି।"[୧୪]

ନାଟ୍ୟକାର ଜଗନ୍ନାଥ ପାଣିଙ୍କଠାରୁ ଓଡ଼ିଆ ଯାତ୍ରାରେ ଜଟିଳ ସ୍ୱର ବିନ୍ୟାସର ଯେଉଁ ପରୀକ୍ଷା ଆରମ୍ଭ ହୋଇଥିଲା ତାହା ବୈଷ୍ଣବ ପାଣି ଓ ଗୋପାଳ ଦାଶ ଆଦିଙ୍କ ସମୟକୁ ସରଳ ହୋଇଗଲା। ବସୁଙ୍କ ଭାଷାରେ "ତତ୍‌ପରେ ଆସିଲା ବୈଷ୍ଣବ ପାଣି ମହାଶୟ ଓ ବାଳକୃଷ୍ଣ ବାବୁଙ୍କ ଯୁଗ- ସେମାନେ ମୁଖ୍ୟତଃ ପଦ୍ୟ ସାହିତ୍ୟର ଅନୁଗାମୀ, କିନ୍ତୁ ରଖିଲେ ନାହିଁ ପ୍ରାଚ଼ୀନର କାରୁକଳା ଭରା ଛାନ୍ଦ ସ୍ୱରକୁ। ଭାସିଲେ ଚୁଟୁକି ସ୍ୱରେ ; ଅତି ସରଳ ଓ ଅତି ସୁଗମ।[୧୫]

ଜଟିଳ ସାଧନା ସାପେକ୍ଷ ସ୍ୱର ବର୍ଜ୍ଜନ କରି ଅତି ସରଳ ଭାବରେ ଭାସିଯିବାର ମନୋଭାବ ସେତେବେଳେ ପ୍ରବଳ ହୋଇଉଠିଲା। ଫଳରେ ଓଡ଼ିଆ ଯାତ୍ରା ନିଜସ୍ୱ ହରାଇ ବଙ୍ଗଳା ଯାତ୍ରା ସହିତ ପ୍ରତିଦ୍ୱନ୍ଦିତାରେ ଉତୁରି ପାରୁନଥିଲା। କୃଷ୍ଣପ୍ରସାଦ ଏ ଦିଗରେ ସଫଳ ପରିବର୍ତ୍ତନ ଆଣିବାରେ କୃତକାର୍ଯ୍ୟ ହୋଇଥିଲେ। ତାଙ୍କରି ଉଦ୍ୟମ ଫଳରେ ବିଲୟମୁଖୀ ମଧ୍ୟଯୁଗୀୟ ସଙ୍ଗୀତ ପରମ୍ପରା ବିପର୍ଯ୍ୟୟରୁ ରକ୍ଷା ପାଇ ପାରିଲା। କେବଳ ନାଟକ ନୁହେଁ ସ୍ୱରଚ଼ିତ ପାଲାକାବ୍ୟ ମାନଙ୍କରେ ପ୍ରାଚ଼ୀନ ସଙ୍ଗୀତର ଧାରାକୁ ମଧ ସେ ବଳିଷ୍ଠ କରିଗଲେ। ତାଙ୍କର ଏହି ସଫଳତା ଯୋଗୁ ଯୌବନ କାଳରେ ସେ ଓଡ଼ିଶାର ଅପ୍ରତିଦ୍ୱନ୍ଦୀ ଗୀତିକାର ଭାବରେ ପ୍ରତିଷ୍ଠିତ ହୋଇଗଲେ। ରୂପ ଭାରତୀ ନିବେଦିତ ସେ ସମୟର ଶ୍ରୀଜଗନ୍ନାଥ ଚ଼ଳଚିତ୍ର ପାଇଁ 'ପିୟାସୀରେ ନୀର ଖୋଜୁ କ୍ଷୀର ଦେବି ମୁହିଁ' ଭଳି ସଙ୍ଗୀତ ରଚ଼ନା କରି ସେ ବହୁ ଭାବରେ ପ୍ରଶଂସିତ ହୋଇଥିଲେ।[୧୬]

ନାଟକ ପାଇଁ ଗୀତ ରଚନା ବ୍ୟତୀତ ସେ ଗ୍ରାମଫୋନ୍ ରେକର୍ଡ ପାଇଁ ମଧ ଗୀତ ରଚନା କରୁଥିଲେ। ନିଜେ H.M.V. ଗ୍ରାମଫୋନ୍ କମ୍ପାନୀର ଓଡ଼ିଆ ବିଭାଗର ତାଲିମ ଦାତା ଥିଲେ। ସ୍ୱାଧୀନତା ଆନ୍ଦୋଳନ ସମୟରେ ବହୁ ଦେଶପ୍ରେମ ମୂଳକ

---

୧୪. ଝଂକାର- ୧/୯, ପୃ ୭୬୬

୧୫. ଝଂକାର- ୧୫/୧, ପୃ ୧୧୯

୧୬. ଶ୍ରୀ ଜଗନ୍ନାଥ ଛାୟାଚିତ୍ର- (ପରିଶିଷ୍ଟ ଦ୍ରଷ୍ଟବ୍ୟ)

ଗୀତ ରଚ଼ନା କରିଥିଲେ। ବଲାଙ୍ଗୀର ବାସ କାଳରେ ପ୍ରିନ୍‌ସେସ୍ କନଫରେନସ୍ ପାଇଁ ବନ୍ଦୁ ଗୀତ ମଧ ଲେଖିଥିଲେ (ପରିଶିଷ୍ଟ)। ସଙ୍ଗୀତ ସର୍ଜନା ଥିଲା ତାଙ୍କର ସ୍ୱାଭାବିକ ପ୍ରବୃତ୍ତି। ସେ ସବୁବେଳେ ପ୍ରଚ଼ାରବିମୁଖ ଥିବାରୁ ଗୀତଗୁଡ଼ିକୁ ପ୍ରକାଶ କରିବାରେ ଚେଷ୍ଟିତ ହୋଇନଥିଲେ। ତେଣୁ ତାଙ୍କର ଗୀତି କବିତାର ସଂଖ୍ୟା ଜାଣିବା କଷ୍ଟକର।

କୃଷ୍ଣପ୍ରସାଦଙ୍କ ଗୀତି କବିତାର ସଂଖ୍ୟା ସମ୍ପର୍କରେ ବିଭିନ୍ନ ମତ ଦେଖାଯାଏ। କୃଷ୍ଣପ୍ରସାଦ ଗ୍ରନ୍ଥାବଳୀର ସଂପାଦକ ଅଧାପକ କୁଳମଣି ଜେନା ଏହାର ସଂଖ୍ୟା 'ପ୍ରାୟ ବାରଶରୁ ଉର୍ଦ୍ଧ ହେବ' ବୋଲି କହନ୍ତି।[୧୭] ନାଟ୍ୟ ସମାଲୋଚକ ଶ୍ରୀ ବୀର କିଶୋର ଦାସ କହନ୍ତି 'କେବଳ ନାଟକରେ କାହିଁକି, ସ୍ୱତନ୍ତ ଭାବରେ ସେ ଦୁଇ ହଜାରରୁ ଅଧିକ ସଙ୍ଗୀତ ରଚ଼ନା କରିଯାଇଛନ୍ତି।[୧୮] ଶିବାନନ୍ଦଙ୍କ ମତରେ 'ତାଙ୍କର ରଚ଼ିତ ଗୀତ ସଂଖ୍ୟା ସହସ୍ରାଧିକ।[୧୯]

ତାଙ୍କର ଅପ୍ରକାଶିତ ଗୀତି କବିତାଗୁଡ଼ିକ ଆଜି ମିଳିବା କଷ୍ଟକର। ସଂଗ୍ରହ କରାଯାଇଥିବା କେତୋଟି ଗୀତି କବିତା ପରିଶିଷ୍ଟରେ ସନ୍ନିବେଶିତ ହୋଇଚି। ପ୍ରକାଶ ଲାଭ କରିଥିବା ତାଙ୍କର ଗୀତି କବିତା ସଙ୍କଳନ ଗୁଡ଼ିକ ହେଲା- ଫୁଲହାର-୧, ଫୁଲହାର-୨, ପ୍ରସାଦ ଗୀତାବଳୀ, ପ୍ରସାଦ ପଦ୍ୟାବଳୀ ଓ ପରିକଳ୍ପନା।

**ଫୁଲହାର (ପ୍ରଥମ ଓ ଦ୍ୱିତୀୟଭାଗ)**

ଫୁଲହାର ପ୍ରଥମ ଭାଗ ୮୫ଟି ଗୀତି କବିତାର ସମାହାର। ଏହାର ପ୍ରକାଶ କାଳ ୧୩୩୦ ସାଲ (୧୯୨୩ ମସିହା) ରଜ ସଂକ୍ରାନ୍ତି। କବି ଏତତାଳରେ ଶ୍ୟାମସୁନ୍ଦର ଥିଏଟର ପରିଚ଼ାଳନା କଲାବେଳେ ଏହା ପ୍ରକାଶ କରିଛନ୍ତି। କବିଙ୍କ ପ୍ରଣୀତ ନାଟକ ଗୟାସୁର, କୃଷ୍ଣଚରିତ, ଯଯାତି କେଶରୀ, ରାମ ବନବାସ, ହରି ଅନେଷ୍ୱଣ ଆଦିରେ ବ୍ୟବହୃତ ହୋଇଥିବା ସଙ୍ଗୀତ ଗୁଡିକ ଏଥିରେ ଦିଆଯାଇଛି। କବିଙ୍କ ବିରଜା ଅପେରା ଓ ଶ୍ୟାମ ସୁନ୍ଦର ଥିଏଟରର କଳାକାରମାନେ ଏ ଗୀତ ବାରମ୍ବାର ଅଭିନୟ ସମୟରେ ପରିବେଷଣ କରି କୃତିତ୍ୱ ଦେଖାଇଥିବା କଥା ପୁସ୍ତକର ଭୂମିକାରେ କବି ଦେଇଛନ୍ତି। ଭଗବତୀ ବିରଜା ଦେବୀଙ୍କୁ ଏହି କବିତା ଗୁଚ୍ଛ ଭକ୍ତି ସହକାରେ ଅର୍ପଣ କରାଯାଇଛି। ମାତ୍ର ୨ବର୍ଷ ବ୍ୟବଧାନରେ ଏହାର ଦ୍ୱିତୀୟ ସଂସ୍କରଣ ହେବା ଗୀତି ଗୁଡ଼ିକର ଲୋକପ୍ରିୟତାର ପ୍ରମାଣ ଦିଏ। ପ୍ରଥମ ସଂସ୍କରଣରେ

---

୧୭. ଅଧାପକ କୁଳମଣି ଜେନା– କବିମଞ୍ଜୁଳ ଗ୍ରନ୍ଥାବଳୀ, ଭୂମିକା, ପୃ-ଚ

୧୮. ବୀରକିଶୋର ଦାସ– ଯୁଗେ ଯୁଗେ ନାଟ୍ୟ ସାହିତ୍ୟ, ପୃ ୧୩୧

୧୯. ସଚିତ୍ର ବିଜୟା– ୧୯୯୫ ଅକ୍ଟୋବର, ପୃ ୧୨୫

ଗୀତଗୁଡ଼ିକର ସ୍ୱର ତାଳ ନିର୍ଦ୍ଦେଶିତ ହୋଇନଥିଲା । ଦ୍ୱିତୀୟ ସଂସ୍କରଣରେ ସ୍ୱର ଓ ତାଳ ପ୍ରତ୍ୟେକ କବିତାର ଶୀର୍ଷରେ ନିର୍ଦ୍ଦେଶିତ ହୋଇଛି । ଫୁଲହାରର ଦ୍ୱିତୀୟ ଭାଗ ୧୯୨୬ ମସିହାରେ ପ୍ରକାଶିତ । ଏ ଉଭୟ ଭାଗର ପ୍ରକାଶକ ଶ୍ରୀ ଅର୍ଜ୍ଜୁନ ମହାରଣା, ଯାଜପୁର, ଏହା ଜେମସ୍ ସ୍କୋୟାର, କଟକର ଉତ୍କଳ ପ୍ରେସରୁ ମୁଦ୍ରିତ । ଦ୍ୱିତୀୟ ଭାଗ ୯୩ଟି ଗୀତି କବିତାର ସମଷ୍ଟି । ଏ ଗୀତି ଗୁଡ଼ିକ କବିଙ୍କର କେତେକ ନାଟକରୁ ନିଆ ଯାଇଥିଲେ ମଧ କେତେକ ସ୍ୱତନ୍ତ୍ର ଗୀତି ଏଥିରେ ଦିଆଯାଇଛି । ଏହି ଗୀତି କବିତାଗୁଡ଼ିକ କାହାରବା, ଭୀମପଲଶ୍ରୀ, ଖମ୍ୱାଜ, ପୂରବୀ, ମାଲକୋଶ, ଆଶାବରି, ବରାଡ଼ି, ଇମନ କଲ୍ୟାଣ, ଝିଞ୍ଜଟି, ବାଗେଶ୍ରୀ, ଭୈରବୀ, କାଫି, ରାମକେରୀ, ପରଜ ଆଦି ରାଗରେ ରଚିତ ।

### ପ୍ରସାଦ ପଦ୍ୟାବଳୀ

ପ୍ରସାଦ ପଦ୍ୟାବଳୀ ସୁନିର୍ବାଚିତ ୪୦ଟି ଗୀତି କବିତାର ସମାହାର । ବସୁ ସାହିତ୍ୟ ମନ୍ଦିରରୁ ୧୯୫୩ ମସିହାରେ ଶ୍ରୀ ବିଶ୍ୱେଶ୍ୱର ବସୁଙ୍କ ଦ୍ୱାରା ପ୍ରକାଶିତ । ପ୍ରଦୀପ୍ତ କିଶୋର ଦାସଙ୍କ ଦ୍ୱାରା କୃଷକ ପ୍ରେସରେ ମୁଦ୍ରିତ । କବିତାଗୁଡ଼ିକର ମର୍ମ ସାଧାରଣ ବୋଧଗମ୍ୟ ହେବା ପାଇଁ ପ୍ରତ୍ୟେକ ପାଦଟୀକାରେ କବି ପରିକଳ୍ପନା ନାମରେ କବିତା ବିଷୟରେ ନିଜର ମନ୍ତବ୍ୟ ପ୍ରକାଶ କରିଛନ୍ତି । ଫୁଲହାର ପରି ଏଥିରେ ମଧ ସଙ୍ଗୀତର ରାଗ ରାଗିଣୀ ଓ ତାଳ ସମ୍ପର୍କରେ ସୂଚନା ଦେଇଛନ୍ତି । ସଙ୍ଗୀତଗୁଡ଼ିକ ଅଧିକାଂଶ ଓଡ଼ିଆ ହେବାବେଳେ କେତେକ ଇସଲାମୀ କବାଲି । କବିତା ଗୁଡ଼ିକରେ ରଚନା କାଳ ଓ ସ୍ଥାନ ପ୍ରତ୍ୟେକ ଗୀତିର ଶେଷରେ ଦିଆଯାଇଛି ।

### ପ୍ରସାଦ ଗୀତାବଳୀ

୧୯୨୬ ମସିହାରୁ କୃଷ୍ଣପ୍ରସାଦ His Master's Voice ଗ୍ରାମଫୋନ୍ କମ୍ପାନୀରେ ଓଡ଼ିଆ ସଙ୍ଗୀତର ତାଲିମ ଦାତା ଭାବରେ କାର୍ଯ୍ୟ କରିବାରେ ନିଯୁକ୍ତ ହୋଇଥିଲେ । ଏହି ସମୟରେ ସେ ଓଡ଼ିଶା ଓ ବଙ୍ଗଳାର ବହୁ ନବାଗତ ଶିଳ୍ପୀଙ୍କୁ ଲୋକଲୋଚନକୁ ଆଣିଥିଲେ । ପାରଳାର ଅନ୍ଧ ଗାୟକ ଅପର୍ଣ୍ଣା ପାଣିଗ୍ରାହୀ, ନିମାଇଁ ହରିଚନ୍ଦନ, ଗୋକୁଳାନନ୍ଦ ମହାନ୍ତି, ଲକ୍ଷ୍ମୀଧର ସାହୁ, ଗୌରାଙ୍ଗ ଦାସ ଆଦିଙ୍କ ସହିତ ବଙ୍ଗଳାର ବିଶିଷ୍ଟ ଗାୟିକା ମିସ୍ ତୋଫା, ପ୍ରତିମା ରାୟ ଚୌଧୁରୀ ପ୍ରମୁଖ ଅଣ ଓଡ଼ିଆଙ୍କ କଣ୍ଠରେ ଶୁଦ୍ଧ ଓଡ଼ିଆ ସଙ୍ଗୀତ ରେକର୍ଡ କରାଇ ରେକର୍ଡ ସଙ୍ଗୀତର ଏକ ନୂତନ ଯୁଗର ଶୁଭାରମ୍ଭ କରିଥିଲେ । ଗାୟକ ନିମାଁଇ ହରିଚନ୍ଦନଙ୍କୁ ବାଣୀକଣ୍ଠ ଭାବେ ପରିଚିତ କରାଇବା ଓ ତାଙ୍କର ଗୀତକୁ 'ଓଡ଼ିଶୀ' ବୋଲି ଲେଖି ପ୍ରଥମେ 'ଓଡ଼ିଶୀ' ନାମ

ଆରମ୍ଭ କରିଥିଲେ। ଏହି ଶିଳ୍ପୀମାନଙ୍କ କଣ୍ଠରେ ନିଜର ୨୭ଟି ଗୀତକୁ ରେକର୍ଡ କରାଇବା ପରେ ପୁସ୍ତକ ଆକାରରେ 'ପ୍ରସାଦ ଗୀତାବଳୀ' ନାମ ଦେଇ ୧୯୩୭ ମସିହାରେ ପ୍ରକାଶ କଲେ। ଶ୍ରୀ ନିମାଇଁ ହରିଚନ୍ଦନଙ୍କ କଣ୍ଠରେ 'ଏହି ଯା ଦେଖୁଛୁ ଦୂର ଆକାଶରେ ନୀଳଚକ୍ରଟିଏ ଥାଇ, ନାତୁଣି ଲୋ, ବଡ଼ ଦେଉଳଟି ସେହି', ପ୍ରତିମା ରାୟ ଚୌଧୁରୀଙ୍କ କଣ୍ଠରେ 'ରଜନୀ ରାଣୀକି ତୋତେ ଦେଲା ମେଲାଣି, ପାହାନ୍ତିଆ ତରାଟି ଲୋ ଶିଥିଳ ବେଣୀ' ସଙ୍ଗୀତ ଏକଦା ଓଡ଼ିଶାରେ ଜନପ୍ରିୟ ହୋଇ ଉଠିଥିଲା। ପୁସ୍ତକର ଭୂମିକାରେ କବିଙ୍କର ମନ୍ତବ୍ୟ ପ୍ରଣିଧାନ ଯୋଗ୍ୟ– 'ଲକ୍ଷ୍ୟ କରି ଦେଖିଛି ମୋର ଗୀତଗୁଡ଼ିକ ମୁଦ୍ରା ଯନ୍ତ୍ର ସାହାଯ୍ୟରେ ଆତ୍ମ ପ୍ରକାଶ କରିବାର ବହୁପୂର୍ବରୁ ଏହି ମାତୃଭୂମିର ପୁରପଲ୍ଲୀରେ ସେମାନଙ୍କର ଝଙ୍କାର ପ୍ରତିଧ୍ୱନିତ ହୋଇଛି। ଏହାଦ୍ୱାରା ମୋହ ଉପରେ ଦେଶବାସୀଙ୍କର ଅପାର କୃପା ହିଁ ସୂଚିତ ହେଉଛି। ଏତିକି ମାତ୍ର ମୋର ଆନନ୍ଦ, ମୋର ସାର୍ଥକ ନିରର୍ଥକ ନାନା ପ୍ରୟାସର ସାନ୍ତ୍ୱନା।'[୨୦]

ବୈଶିଷ୍ଟ୍ୟ ବିଚାର

ଗୀତି କବିତାର ବିପୁଳ ସୃଷ୍ଟି ମଧ୍ୟରେ ଆଙ୍ଗିକ ଦୃଷ୍ଟିକୋଣରୁ କୃଷ୍ଣପ୍ରସାଦ ବହୁ ପରୀକ୍ଷା ନିରୀକ୍ଷା କରିଛନ୍ତି। ବିଭିନ୍ନ ସ୍ୱର ଓ ତାଳର ସଂଯୋଗରେ ତାଙ୍କର ସଙ୍ଗୀତ ସୃଷ୍ଟି ମନୋଜ୍ଞ ଓ ହୃଦୟଗ୍ରାହୀ ହୋଇ ଉଠିଛି। ଓଡ଼ିଶାର ମୌଳିକ ଭୈରବୀ, ରାମକେରୀ, ବରାଡ଼ି, କନଡ଼ା, ଆଶାବରୀ ଆଦି ରାଗ ସହିତ ଗଜଲ, କଓ୍ୱାଲିରେ ଗୀତ ରଚନା କରିଛନ୍ତି। ଓଡ଼ିଆ ଭାଷା ସହିତ ଉର୍ଦ୍ଦୁ ଓ ଆଦିବାସୀ ଭାଷାର ମିଶ୍ରଣରେ ସଙ୍ଗୀତ ସୃଷ୍ଟିର ଅଭିନବ ପ୍ରୟାସ ସେ ହିଁ ଆରମ୍ଭ କରିଥିଲେ ଓ କୃତକାର୍ଯ୍ୟ ହୋଇଥିଲେ। ତାଙ୍କର ସମସାମୟିକ କବିବୃନ୍ଦ ଗୀତି କବିତା କ୍ଷେତ୍ରରେ ପାଶ୍ଚାତ୍ୟ ଆଦର୍ଶରେ ବହୁ ପରୀକ୍ଷା ନିରୀକ୍ଷା କରି ଚାଲିଥିବା ବେଳେ ସେସବୁ ପ୍ରତି ସେ ଅନାସକ୍ତ ରହି ପ୍ରାଚୀନ ଓ ମଧ୍ୟଯୁଗୀୟ ଚୌପଦୀ, ଜଣାଣ, ଚୌତିଶା, ଭଜନ, କୀର୍ତ୍ତନ ଆଦର୍ଶରେ ନିଜର ଗୀତି କବିତାକୁ ନୂତନ ରୂପଦାନ କରିଥିଲେ। ନିଜେ ଉଚ୍ଚଶିକ୍ଷିତ ହୋଇ ଦୃଷ୍ଟିଭଙ୍ଗୀରେ ଆଧୁନିକ ହେଲେ ମଧ୍ୟ, କାବ୍ୟ କବିତା କ୍ଷେତ୍ରରେ ସେ ମଧ୍ୟଯୁଗୀୟ ପରମ୍ପରାର ଉତ୍ତର ଦାୟାଦ ଥିଲେ। ତେଣୁ ଗୀତି କବିତା ଯେତେବେଳେ ଛନ୍ଦର ବନ୍ଧନରୁ ମୁକ୍ତି ଲାଭ କରିବା ପାଇଁ ବ୍ୟାକୁଳ ହୋଇ ଉଠୁଥିଲା, ସାଙ୍ଗୀତିକତାର ମୋହ ତୁଟାଇ ଦେବାକୁ ଚଳଚଞ୍ଚଳ ହୋଇଥିଲା ସେ ସେତିକିବେଳେ ମଧ୍ୟଯୁଗୀୟ ସଙ୍ଗୀତ ପରମ୍ପରାର ଜୟଗାନ କରିଗଲେ।

ଗୀତି କବିତାର ଆଙ୍ଗିକ ଦୃଷ୍ଟିରୁ କୃଷ୍ଣପ୍ରସାଦ ପରମ୍ପରାର ଅନୁସରଣ କରିଥିଲେ ହେଁ ଆତ୍ମିକ ବିଭବ ଦୃଷ୍ଟିରୁ ବିଚାର କଲେ ସେ ବହୁ ଭାବରେ ଥିଲେ ଆଧୁନିକ। ତାଙ୍କ

---

୨୦. କୃଷ୍ଣପ୍ରସାଦ ବସୁ– ପ୍ରସାଦ ଗୀତାବଳୀ, ପୃ ୧

କବିତା ଜାତୀୟତା, ବିଶ୍ୱପ୍ରେମ, ପ୍ରକୃତିପ୍ରୀତି ଓ ମାନବତାବାଦର ସ୍ୱର ଝଙ୍କାରରେ ମୁଖରିତ।

କୈଶୋର ଜୀବନରେ ବାବାଜୀ ହରିଦାସଙ୍କ ସାହଚର୍ଯ୍ୟରୁ କୃଷ୍ଣପ୍ରସାଦଙ୍କ ଅନ୍ତରରେ ଭକ୍ତି ଚେତନାର ଯେଉଁ ଉନ୍ମେଷ ହୋଇଥିଲା ପରବର୍ତ୍ତୀ କାଳରେ ତାହା ବିକାଶ ଲାଭ କରି ଯୌବନ ଓ ପରିଣତ ଜୀବନରେ ତାଙ୍କୁ ଏକ ସମର୍ପିତ ଭକ୍ତିପ୍ରାଣ ବ୍ୟକ୍ତିତ୍ୱରେ ପରିଣତ କରିଦେଲା। ତାଙ୍କ କାବ୍ୟ ଓ କବିତାର ଛତ୍ରେ ଛତ୍ରେ ଭକ୍ତି ଭାବନାର ମହନୀୟ ସ୍ପର୍ଶ ପାଠକକୁ ଅଭିଭୂତ କରିଥାଏ। ପ୍ରଥମ ଗୀତିଗୁଚ୍ଛକୁ କବି ଉତ୍ସର୍ଗ କରିଛନ୍ତି ସନ୍ତାନ ବତ୍ସଳା ମା' ବିରଜାଙ୍କ ଚରଣ କମଳରେ। ତାଙ୍କର ପ୍ରଥମ ସଙ୍ଗୀତଟି ମା' ବିରଜାଙ୍କ ବନ୍ଦନା।

ହେଉ ମା' ମାନସ କମଳ ବିକାଶ
ତବରୂପ ଅରୁଣ ଉଦୟ ଗୋ
ଝରୁ ମା ନିୟତ କଳ୍ପନା ଅତୀତ
କାବ୍ୟକଳା ପିୟୂଷ ଆଧାର ଗୋ। (ଫୁଲହାର୧)

କବିଙ୍କ ଭକ୍ତି ଗୀତିକାକୁ ଦୁଇ ଭାଗରେ ବିଭକ୍ତ କରାଯାଇପାରେ। ଏକ ଶ୍ରେଣୀର ସଙ୍ଗୀତରେ ଈଶ୍ୱରଙ୍କ ସର୍ବବ୍ୟାପକତ୍ୱ, ମହିମା ଓ ଭକ୍ତ ପ୍ରତି ତାଙ୍କ କରୁଣା ଆଦିର ବର୍ଣ୍ଣନା ରହିଥିବା ବେଳେ, ଅନ୍ୟ ଏକ ଶ୍ରେଣୀର କବିତାରେ ମାନବ ଜୀବନର କ୍ଷଣ ଭଙ୍ଗୁରତା, ନିୟତି ଓ ଭାଗ୍ୟର ଶକ୍ତିମତ୍ତା, ଧର୍ମର ଶାଶ୍ୱତ ଭାବ ଆଦି ବର୍ଣ୍ଣିତ।

ବ୍ରହ୍ମ ହିଁ ଜଗତରେ ଏକମାତ୍ର ସତ୍ୟ, ସେ ଅବାଂମାନସ ଗୋଚର, ଧରାର ଦୁଃଖ ଅପନୋଦନ ପାଇଁ ତାଙ୍କର ବାରମ୍ବାର ଧରାବତରଣ, ତାଙ୍କରି ଆଗମନକୁ କବି ସ୍ୱାଗତ କରୁଛନ୍ତି-

ସଜ୍ଜନ ପାଳନ କାରଣ ଦୀନବନ୍ଧୁ ଦଇତାରୀ
ନିତ୍ୟ ନିରଂଜନ ବ୍ରହ୍ମ ସନାତନ ଖେଳିବେ କାଳ ବିଚାରି
ଭେଦ ଜ୍ଞାନ ବୁଦ୍ଧି ବାଦ ବିବାଦ ଭେଦି ନପାରେ ଚାତୁରୀ
ସର୍ବ ଶକ୍ତିଧର ବିଶ୍ୱମୂଳାଧାର ବହୁରୂପେ ଖେଳ ତାହାରି
ସତେ ଆସିବେ, ଦେହ ଧରିବେ, ଭାର ସହିବେ, ନର ରୂପେ ସଂହାରିବେ।[୨୧]

ଈଶ୍ୱର ସର୍ବସୃଷ୍ଟିର କାରଣ, ସେ ପରମ ଆନନ୍ଦର ଆଳୟ, ସଂସାରର ସମସ୍ତ ପାପ ତାପ ମଧ୍ୟରେ ସେ ହିଁ ଅମୃତ। ତାଙ୍କରି ଗୁଣଗାନରେ କବି ଉଦ୍‌ବେଳ ହୋଇ ଉଠିଛନ୍ତି।

---

୨୧. କୃଷ୍ଣପ୍ରସାଦ ବସୁ– ଫୁଲହାର (୧ମ), ପୃ ୧୯

ହରି ବୋଲି ଡାକ ରସନା
ହରି ହରି ନାମ ଗାଆରେ ବୀଣା
ବୃଥା କିମ୍ପା ମରୁଥାଅ ଝୁରି ହରି ପଦେ କର ଆରାଧନା
ହରି ପ୍ରେମମୟ ପିୟୂଷ ଆକର
ହରି ଲୀଳାମୟ ବିଶ୍ୱ ମୂଳାଧାର
ହରି ହରି ବୋଲି ନାଚ୍ ବାହୁ ତୋଳି, ହରି ନାମେ ପ୍ରାଣ କରରେ କିଣା ।"[୨୨]

ଅଶେଷ ଯନ୍ତ୍ରଣା ଦଗ୍ଧ ଭକ୍ତ ହୃଦୟର ଆକୂତି, ଅତି ଅଭିମାନ ଭରା କଣ୍ଠରେ ରାଗିଣୀ ତୋଳିଛି-

ହରି ଯେତେ ବୋଝ ନଦିଛ - ଆଗେ ଓଟାରି ସାରେ ମୁଁ ସେତେକ
ବେଳ ହେଲେ ନେବି ତୋ ନାମ
ଅବା ନୋହିଲେ ନୋହିବି ସେବକ,
ତୁମେ ଅନ୍ତର୍ଯ୍ୟାମି ଭାବଗ୍ରାହୀ ହେ
ଗୋଟିଏ ଧନ୍ଦାରୁ ପାରି ହେଲା ବେଳେ
ଆଉ ଧନ୍ଦା ଦେଇ ଥୋଇ ହେ ।
ମୋର ପାଟି ଫିଟୁ ନାହିଁ ନିଶ୍ୱାସ ନେବାକୁ ତୁମ ନାମ ନେବି କେତେକ ।
ମତେ ଦୁନିଆ କହୁଛି ପାତକୀ
ତୁମେ ଜାଣ ହରି କିସ ମୁଁ ହୋଇଛି ବିଛୁଆତି ଅବା କେତକୀ ।"[୨୩]

ଅଶ୍ରୁର ନୈବିଦ୍ୟ ଦେଇ ଭକ୍ତ ନିରାଜନା କରୁଛି ପ୍ରାଣପ୍ରିୟତମଙ୍କୁ -

ସବୁ ବେଦନାର ନିନାଦ ସଙ୍ଗତେ ତବ ଆରାଧନା କରୁଛି ହେ
ଠୁଳ କରି ଯେତେ ନୟନ ଲୋତକ ତବ ପାଦ ତଳେ ଥୋଇଛି ହେ
ମରମେ ଲାଗିଛି ଯେତେ ଅନାଦର, କରଗୁନ୍ଥା ଫୁଲ ହାର ପରକାର
ମାନ ଅପମାନ ଅଗୁରୁ ଚନ୍ଦନ ଉପଚାର ବୋଲି ଦେଉଛି ହେ ।
(ଗୟାସୁର ବଧ-ନାଟକ)

କରୁଣାକରଙ୍କ କରୁଣା ଊଣା ହେବାରୁ ଭକ୍ତ ପ୍ରାଣର ହାହାକାର ବ୍ୟକ୍ତ ହୋଇଛି ଆଉ ଏକ କବିତାରେ-

"କରୁଣା ବାରିଧି ହେ, କଲ କରୁଣା ଊଣା କାହିଁକି ?
ଘେନିଥିଲି ମୁଁ ଚରଣେ ଶରଣ ସମ୍ପଦେ ରସିବା ପାଇଁକି ?

୨୨. କୃଷ୍ଣପ୍ରସାଦ ବସୁ- ଫୁଲହାର (୨ୟ), ପୃ ୨

୨୩. ଏଜନ- ପ୍ରସାଦ ପଦ୍ୟାବଳୀ ଓ ପରିକଳ୍ପନା, ପୃ ୨୬

ଜୀବନେ, ମରଣେ, ଶୟନେ, ସ୍ୱପନେ
ପୂଜୁଥାଏ ସଦା ହୃଦ ସିଂହାସନେ
ତୁମ୍ଭ ସଙ୍ଗେ ମୋର ପରାଣ ଭ୍ରମଇ ସୁଖ ତୁମ୍ଭ ସୁଖ ନାହିଁକି ?
ତୁମ୍ଭ ବିନୁ ମୋର ସଂସାର କାନ୍ତାର
ତୁମ୍ଭ ବିନୁ ମୋର ଜଗତ ଅନ୍ଧାର
ହୃଦୟ ପ୍ରତିମା କି କରିଲ ପର ପରାଣ ନାସିବା ପାଇଁ କି ?"

(ଫୁଲହାର ୨ୟଭାଗ)

ଗୋପାଳକୃଷ୍ଣ, ବନମାଳୀ, କବିସୂର୍ଯ୍ୟ ବଳଦେବ ସେବିତ ଓଡ଼ିଆ ବୈଷ୍ଣବ ପଦାବଳୀର ଉତ୍ତର ସାଧକ ଭାବରେ କୃଷ୍ଣପ୍ରସାଦଙ୍କ ସିଦ୍ଧି ଅକଳନୀୟ। ସାଧାରଣ ଭକ୍ତି ରସାଶ୍ରିତ କବିତା ଅପେକ୍ଷା ସେ ଅଧିକ ରଚନା କରିଛନ୍ତି ବୈଷ୍ଣବ ପଦାବଳୀ। ତାଙ୍କର ଶତାଧିକ ଏହି ପଦାବଳୀରେ କବି ରାଧାକୃଷ୍ଣଙ୍କ ପ୍ରତି ଭକ୍ତି ନିବେଦନ କରିବା ସଙ୍ଗେ ସଙ୍ଗେ ବୈଷ୍ଣବ ଭକ୍ତ କବିମାନଙ୍କ ପରି ବ୍ରଜର ଦୁଇ କିଶୋର କିଶୋରୀଙ୍କର ପ୍ରେମ ବିଳାସର ଅଫୁରନ୍ତ ଚିତ୍ର ଅଙ୍କନ କରିଛନ୍ତି। ପୂର୍ବରାଗ, ଅନୁରାଗ, ମାନ, ଅଭିମାନ, ମିଳନ ଓ ବିରହର ଚିତ୍ର ଦେବାରେ ସେ ସଫଳ ହୋଇଛନ୍ତି। ଓଡ଼ିଆ ବୈଷ୍ଣବ ପଦାବଳୀର ଧାରାକୁ ଅନାହତ ରଖିବା ଦିଗରେ ତାଙ୍କର ଏ ଗୀତି କବିତାବଳୀର ତୁଳନା ନାହିଁ।

ବ୍ରଜର କିଶୋର କୃଷ୍ଣଙ୍କର ଲୀଳା ବିଳାସରେ ଅନୁପମ ଚିତ୍ରରେ ଲଳିତ ପଦ ବିନ୍ୟାସ ଦେଖନ୍ତୁ।

ବ୍ରଜପୁରେ ଦ୍ୱାରେ ଦ୍ୱାରେ ନାଟ ଦେଖାଇ
ଆସିଛି ମୁହିଁ ମୋହିବା ପାଇଁ, ମୋ ନାମ କହ୍ନାଇଁ
ଭଲ ମନ୍ଦ କିଛି ବାରଣ ନଥାଏ ଘେନଇ ତାହା
ଛନ୍ଦ କୂଟ ଶାଠ କପଟ ଦେଖିଲେ ଯାଏ ପଳାଇ। (ଫୁଲହାର ୧ମ ଭାଗ)

ବନମାଳୀଙ୍କ ପଦାବଳୀ 'ବାଟ ଛାଡ଼ ସୁହଟ ନାଗର' ପରି କୃଷ୍ଣ ପ୍ରସାଦଙ୍କ ପଦାବଳୀ-

ଘାଟ ନଦେଲେ ବାଟ ନାହିଁ
ଛାଡି ଦେବି ନାହିଁ
କେଣେ ଯାଉଛ ରାଇ।
ତୁ ଶଠ ଲମ୍ପଟ କପଟ ଶଠ ନିତି ଅଝଟ ଯାଉଛୁ ଲଗାଇ

ତୋତେ କିରେ ସରମ ନାହିଁ
ଆଜି ପଡ଼ିଛୁ ଧରା ଭାଙ୍ଗିବି ବଡ଼ାକୁଡ଼ା
ମନପୋଡ଼ା ବନପୋଡ଼ା ଗୋପନାରୀ ଘର ବୁଡ଼ା
କଂସ ଭଣଜା ମୁଁ କହ୍ନାଇଁ, ମୋତେ କି ଡ଼ର ନାହିଁ
ରାଇଜ ଛଡ଼ା ହେଲୁ ତୁହି ମୁଁ ପରା ତୋର ମାଇଁ (ଫୁଲହାର ୨ୟଭାଗ)

ରାଧାକୃଷ୍ଣଙ୍କ ପ୍ରତି ନିଜ ଅନ୍ତରର ଐକାନ୍ତିକ ଭକ୍ତି ନିବେଦନରେ ତାଙ୍କ ଗୀତଗୁଡ଼ିକ ଯେଭଳି ରସସ୍ନାତ, ଭକ୍ତିର ଅନୁଶାସନମୁକ୍ତ ସମ୍ଭୋଗ ଓ ପ୍ରବୃତ୍ତିର ତରଳତାରେ ସେଗୁଡ଼ିକ ସେହିଭଳି ଲୋଭନୀୟ। ପ୍ରକାଶ ଭଙ୍ଗୀର ଚମତ୍କାରିତା ରାଗାନୁଗା ଭକ୍ତି ଆଧାରିତ ଏହି ଗୀତଗୁଡ଼ିକୁ କିଭଳି କାବ୍ୟିକ ସୌନ୍ଦର୍ଯ୍ୟରେ ବିମଣ୍ଡିତ କରିଛି କେତୋଟି ଉଦାହରଣରୁ ଉପଲବ୍ଧ ହେବ।

ରାଧାପ୍ରେମ ପାଗଳ କୃଷ୍ଣଙ୍କର ଅନ୍ତରରୁ ଝରିପଡିଥିବା ଗୀତିଟିଏ କବି ଲେଖନୀରେ ରୂପ ନେଇଛି -

ରାଧାନାମ ଗାଅ ଦିବା ନିଶିରେ ପ୍ରାଣବଂଶୀ
ରାଧା ମୋର ମୂଳାଧାର ରାଧା ମୋ ହୃଦୟ ଶଶୀ,
ଶୟନେ ସ୍ୱପନେ ଧ୍ୟାନେ, ଜାଣେନା ରାଧା ବିହୁନେ
ରାଧାଗୁଣେ ଥାଏ ବନ୍ଧା ରାଧାପ୍ରେମେ ଯାଏ ଭାସି
ରାଧା ମୋ ଗଳାର ହାରା, ରାଧା ମୋ ନୟନ ତାରା
ରାଧା ନାମେ ବହେ ହୃଦେ ଅବିରତ ସୁଖ ରାଶି। (ଫୁଲହାର ୨ୟଭାଗ)

ସେହି ଭାବ ସମ୍ବଳିତ 'ରାଧା ରାଧା ରାଧା ବୋଲି ପ୍ରାଣ ମୁରଲୀ ଥରେ ବାଜରେ ବାଜ' ଅନ୍ୟ ଏକ ଗୀତି।

ମାନମୟୀ କିଶୋରୀଙ୍କ ମାନଭଂଜନ ପାଇଁ କୃଷ୍ଣଙ୍କର ଆତୁର ପ୍ରେମ ନିବେଦନ କବି ଲେଖନୀକୁ ରସସିକ୍ତ କରିଛି।

"ଛନ ଛନ ହୋଇ, ଘନ ଜଘନାରେ ଅପଘନ ଚମକାଇଲୁରେ
ବନଜନୟନୀ, ଅମନ ମନରେ ; ନୟନ ଡ଼ୋଳା ଖେଳାଇଲୁରେ
କହୁଥିଲା କଥା ଅଟକି ଗଲାକି
ଚଳୁଥିଲା ପାଦ ଥମକି ଗଲାକି
ଅଖଣ୍ଡିତ ପ୍ରେମ ପସରା ତୋ ଗଣ୍ଡ ମଂଡ଼ଳେ ରଙ୍ଗ ବୋଳାଇଲୁରେ।

ଅତନୁ ଧନୁରେ ସାୟକ ଦେଲାକି
ତୋ ତନୁରୁ ମନ ଉଡ଼ାଇ ନେଲାକି
ଅରୁଣ ଅଧରୀ ଦାରୁଣ ଯନ୍ତ୍ରଣା ପାଇଁ ଫାନ୍ଦ ପତାଇଲୁ ଗୋ ।
ମଥା ଟେକି ଥରେ ଚାହାଁ ଲୋ କିଶୋରୀ
ନୁହେଁ ମୁଁ ନାଗର ତୋ ପରି ନାଗରୀ
ଛିଃ ଛିଃ ଛିଃ ଛିଃ ଛିଃଛିଃ କିକଲୁ କିକଲୁ କେକୀରେ
କେକୀ ରସାଇଲୁରେ । (ଫୁଲହାର ୨ୟଭାଗ)

କୃଷ୍ଣଙ୍କ ଅଦର୍ଶନରେ ରାଧାଙ୍କ ମିଳନ ଆତୁର ହୃଦୟକୁ ବିମଥିତ କରି ଝରି ପଡୁଥିବା ବେଦନା ଅଶ୍ରୁର ଅନୁପମ ରୂପ କବିଙ୍କ ସୃଷ୍ଟିରେ ରୂପ ନେଇଛି ।

କାହିଁଗୋ ମାଧବ ପରାଣ ବାନ୍ଧବ ମାଧବୀ ବିପିନେ
ମିଳିଲେ ନାହିଁ
ମୁହିଁ ବିରହିଣୀ ଅତି ଅଭାଗିନୀ ମୂରଲୀ ଶବଦେ
ଆସିଛି ଧାଇଁ ।
କୁଳୁ କୁଳୁ ନାଦେ ଯମୁନା ଧାଉଁଛି,
ମୋହନ ମୁରଲୀ ଶବଦ ବାଜୁଛି,
ଏହି ପରା ମୋ ନେତ୍ର ପସରା ପରାଣ ନଚାଇ
ଲୁଚିଲେ କାହିଁ ।
ସଙ୍ଗୀନୀଏ ମୋର ଏତିକି କର
ଆଣିଦିଅ ମୋର ରଙ୍ଗା ଅଧର
ମୋ ହୃଦ ଆଧାର କଳା କଳାକାର
ତା ବିନୁ ରାଧିକା ବଞ୍ଚିବ ନାହିଁ । (ଫୁଲହାର -୧ମ ଭାଗ)

କୃଷ୍ଣପ୍ରସାଦଙ୍କ ଗୀତି ରଚନା ସାର୍ଥକ ହୋଇଛି ରାଧାକୃଷ୍ଣଙ୍କ ମିଳନ ଚିତ୍ରରେ ନୁହେଁ, ବରଂ କୃଷ୍ଣ ମଥୁରା ଯିବା ବେଳେ ରାଧାଙ୍କର ହୃଦୟ ବେଦନାର ମର୍ମାନ୍ତିକ ରୂପ ଚିତ୍ରଣରେ ।

ଗୋପରୁ ମଥୁରାକୁ ବିଦାୟ ବେଳ ଆସନ୍ନ । ପ୍ରିୟ ଗୋପ ଓ ତାର ପରିଜନଙ୍କୁ ଛାଡ଼ି କୃଷ୍ଣଚନ୍ଦ୍ର ଯାଉଥିବା ବେଳର କରୁଣ ଗୀତିଟି ପାଠକର ନୟନକୁ ଅଶ୍ରୁସଜଳ କରିଦିଏ ।

ଯାଉଛି ଗୋ ପ୍ରେମମୟୀ ଦିଅ ମେଲାଣି
ବ୍ରଜପୁର ସୁଖ ନିଶା ପାହିଗଲାଣି

ଯେତେ ଦିନ ଥିଲା ଲେଖା
ବ୍ରଜ ଭାବ ହେଲା ଶିଖା
ଅନ୍ତରେ ଅନ୍ତର ଧାରା ବହେ ଉଜାଣି। (କୃଷ୍ଣ ଚରିତ- ନାଟକ)

ଆଉ ଏକ ଗୀତି-

ଏ ଜନମ ପରି ଯିବ ସୁଖଶିରୀ, ହେବ ବ୍ରଜପୁର
ଶ୍ମଶାନ ସମାନ
ଆଉତ ମୂରଲୀ ରାଧା ରାଧା ବୋଲି ଉଲ୍ଲାସିବ ନାହିଁ
ତାପିତ ପରାଣ
ବ୍ରଜ ବାଳା ଗଣେ ଆସି ଜଣେ ଜଣେ
ବିହରିବେ ନାହିଁ କୁସୁମ କାନନେ
ପ୍ରେମମୟୀ ରାଧା ବ୍ରଜ ଶଶୀ ସୁଧା ବିକାଶିବ ନାହିଁ ହୃଦୟ କୁସୁମ।
ଶ୍ୟାମଳୀ ଧବଳୀ ନେଳି କୁଞ୍ଜ ଗଳି
ଆଉ ନଦେଖିବ ମୋହନ ମାଧୁରୀ
ମୋର ଗୋବର୍ଦ୍ଧନ ଗିରି ନଯିବ ତରଳି
ନୀରବ ଯମୁନା ନୀରବ କାନନ (ନାଟକ - କୃଷ୍ଣଚରିତ)

କୃଷ୍ଣଙ୍କ ହୃଦୟ ବିଦୀର୍ଣ୍ଣ କରି ପ୍ରକାଶିତ ଆଉ ଏକ ଗୀତି-

ବଂଶୀରେ ଆଉ ବାଜନା ପ୍ରାଣେ
ମୋର ବାସନା ପାବକ ଶିଖା ପ୍ରଜ୍ୱଳିତ
ତାପିତ ହୃଦୟ ନିକୁଞ୍ଜ ବନେ,
ଯାଇଛି ମୋ ସୁଖ ସରାଗ
ନାହିଁ ଆଉ ହୃଦୟା ବେଗ
ସରିଲେ ବସନ୍ତ ମୃଦୁ ମନ୍ଦଗନ୍ଧ
ଗାୟେକି କୋକିଳ ପଞ୍ଚମତାନେ।
(ଫୁଲହାର ୨ୟଭାଗ)

କୃଷ୍ଣଙ୍କର ବିଦାୟ ସମ୍ବାଦ ଶ୍ରବଣରେ ରାଧାଙ୍କର ବ୍ୟଥାତୁର ପ୍ରାଣରୁ ଝରି ପଡ଼ିଥିବା ବେଦନାସିକ୍ତ ଗୀତିଟିଏ -

ସତେକି ସଜନୀ ଯାହା ଶୁଣୁଛି ହେବ
ବ୍ରଜସୁନ୍ଦର ଅନ୍ଧାର କରାଇ ଦେବ

କ୍ଷୀର ନିର ଠାରୁ ବଳି ବାରି ନୋହିବାର ବୋଲି
ରାଧାଶ୍ୟାମ ପିରତି କି କରତିଯିବ
ସୁଖ ସରାଗ ପସରା ମଥୁରାକୁ ଯିବେ ପରା
ମଣିହରା ଫଣି ପରା ପରାଣ ହେବ।

ବିରହିଣୀ ରାଧାଙ୍କର ନୟନ ସମ୍ମୁଖରୁ ଘନଶ୍ୟାମ ଅନ୍ତର୍ହିତ ହୋଇଗଲେ ମଧ ତାର ହୃଦସରସୀରେ ସେହି ନୀଳ ଇନ୍ଦୀବର କମନୀୟ ରୂପ ବାରମ୍ବାର ପ୍ରତିଭାତ ହେବ, କବିଙ୍କ ଭାଷାରେ

ନୟନ ଚକୋର ଥିବ ଯେତେଦିନ ତୁମ
ରୂପଶ୍ରୀ ଦେଖିବି ଗୋ।
ଯେତେଦିନ ଥିବ ସଚଳରସନା ତୁମ ଗୁଣ
ଗାଥା ଗାଇବି ଗୋ।

(ଫୁଲହାର ୨ୟଭାଗ)

ରାଧାକୃଷ୍ଣଙ୍କର ଅପୂର୍ବ ଲୀଳା ବିଳାସ ଭିତରେ ପ୍ରେମର ଶାଶ୍ୱତ ମଧୁମୂର୍ଚ୍ଛନା ସ୍ପର୍ଶରେ ରସଶ୍ରାବୀ ଏ ଗୀତିର ତୁଳନା ନାହିଁ।

ଏହିଭଳି ଶତାଧିକ ଗୀତି କବିତା ରଚନା କରି କବି ନିଜର ଆଧ୍ୟାତ୍ମିକ ତୃଷା ପ୍ରଶମିତ କରିଛନ୍ତି। ବନମାଳୀ, ଗୋପାଳକୃଷ୍ଣଙ୍କର ଉତ୍ତର ସାଧକ ଭାବରେ ଏ ସବୁରେ କୃଷ୍ଣପ୍ରସାଦଙ୍କ କବି ପ୍ରତିଭାର ଅମ୍ଳାନ ସ୍ୱାକ୍ଷର ରହିଛି।

ଭକ୍ତି ଭଳି ଦେଶାତ୍ମବୋଧ ତାଙ୍କ ଗୀତି କବିତାର ଅନ୍ୟତମ ପ୍ରବୃତ୍ତି। ତାଙ୍କ ଗୀତି କବିତା ରଚନାର ସମୟ ଥିଲା ଭାରତୀୟ ମୁକ୍ତି ସଂଗ୍ରାମ ଓ ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଗଠନ ପାଇଁ ଆନ୍ଦୋଳନର ମଧ୍ୟାହ୍ନ କାଳ। ଛାତ୍ର ଜୀବନରୁ ବନ୍ଦେ ମାତରମ୍ ଆନ୍ଦୋଳନ ସହିତ ସମ୍ପୃକ୍ତ ହେବା ଫଳରେ ତାଙ୍କ ହୃଦୟରେ ଆଦ୍ୟ ଯୌବନରୁ ସ୍ୱଦେଶ ପ୍ରେମର ଯେଉଁ ଉନ୍ମେଷ ଘଟିଥିଲା, ପରିଣତ ବୟସରେ ଗୀତି କବିତା ରଚନା ବେଳକୁ ତାହା ବିକଶିତ ରୂପରେ ଆତ୍ମପ୍ରକାଶ ଲାଭ କଲା। ତେଣୁ ତାଙ୍କର ବହୁ ଗୀତିରେ ଦେଶପ୍ରେମର ମନ୍ଦ୍ର ନିନାଦ ଶୁଣିବାକୁ ମିଳେ।

ଉତ୍କଳ ବନ୍ଦନା ସଙ୍ଗୀତଗୁଡ଼ିକରେ କବି ଓଡ଼ିଆ ଜାତିର ପ୍ରାଚୀନ ଐତିହ୍ୟ ଓ ବୀରତ୍ୱର ବୟାନ କରିବା ସଙ୍ଗେ ବର୍ତ୍ତମାନ ଅନ୍ତଃସାର ଶୂନ୍ୟ ହାହାକାରର ଚିତ୍ର ଦେଇ ଜାତିକୁ ଅନୁଶୋଚନା ପାଇଁ ଓ ଭବିଷ୍ୟତରେ ସୁନ୍ଦର କରିବା ପାଇଁ ଆହ୍ୱାନ ଦେଇଛନ୍ତି।

ଉଠଗୋ ଉତ୍କଳ କମଳା, ଧନଧାନ୍ୟ ବରାଭୟ ଦାୟିନୀ
ତବ ଶଙ୍ଖ-କମଳ-ଦଳବାରି ଢାଳ ଜଳ କଳ ସେ ଏହି ମେଦିନୀ
ଜନନୀ ଗୋ, କେତେ ଯୁଗ ବିତି ଗଲାଣି
ସକରୁଣ ନୟନୁଁ ବଂଚ଼ିତ କଲଣି
ବଣିଜ କୃଷକ, ଶିଳ୍ପୀ ମୁଖଶାଳା, ଉତ୍କଳ କଙ୍କାଳ ହେଲାଣି

x x x

ଭାସୁନାହିଁ ବୋଇତ ନୀଳ ଅମ୍ବୁଧି ଜଳେ
ନାଚୁନାହିଁ ବୀରବୁକୁ ତାଳେ ତାଳେ
ମନ୍ଦିର ତୋରଣେ ବାଜୁନାହିଁ ବାଜଣା
ନୀରବ ମୁରୁଜ ଯେବେ ବୀଣା (ସଂଗୃହୀତ)

ଉତ୍କଳର ପ୍ରାଚ଼ୀନ ଗୌରବ ଗାନରେ କବି ଲେଖନୀର ସାର୍ଥକତା ଏଇ ଗୀତିଟିରେ-

ସେତ ରାଜ ରାଣୀ ମା'ଟି ମୋର କାଙ୍ଗାଳିନୀ ନୁହେଁ
ନୀତି ଚ଼ରଣ ଯାର ପାରାବାର ବରଣ କରି ଛୁଁଏ।

x x x

ଯାର ବୈତରଣୀ କୂଳେ ଶୁଣି ପୂଣ୍ୟ ବେଦଧ୍ୱନୀ
ସ୍ତବ ନିଜେ ମହାମାୟା ଭୈରବୀ ଭବାନୀ। (ସଂଗୃହୀତ)

ଉତ୍କଳ ଜନନୀଙ୍କର ମୁଗ୍ଧ ବନ୍ଦନା ସହିତ ଭାରତ ମାତାଙ୍କର ଉପାସନା ମଧ୍ୟ ତାଙ୍କ କବିତାରେ ରହିଛି ।

ଜୟମା ଭାରତୀ ଘେନ ଏ ବିନତି ଢାଳ ମା ହୃଦୟେ ପୀୟୂଷ
ଅମର ସଙ୍ଗୀତ ରବେ ଆକାଶ ପାତାଳ ଭବେ
ଗୁଭଇ ଜନନୀ ତବ ବିମଳ ଯଶ (ସଂଗୃହୀତ)

ଆଉ ଏକ କବିତାରେ -

ବନ୍ଦିନୀ ମମ ଜନନୀ
ଚ଼ିର ଲାଞ୍ଛିତ - ଚ଼ିର ବାଞ୍ଛିତ ତଥାପି ବିଶ୍ୱମୋହିନୀ
ଲୁଣ୍ଠିତ ତବ ଅଙ୍ଗାଭରଣ - ମୁକ୍ତ ଚ଼ିକୁର କୁନ୍ତଳ
ଦର୍ପିତ କରବାଳେ ଛିନ୍ନ କ୍ଲେଦ କଳୁଷ ଅଞ୍ଚଳ
ତଥାପି ତୁମେ ମା ପୂଣ୍ୟ ପ୍ରତିମା ତଥାପି ପିୟୂଷ ବାହିନୀ। (ସଂଗୃହୀତ)

କୃଷ୍ଣ ପ୍ରସାଦ ଥିଲେ ମୁକ୍ତି ଚେତନାର ଉଦ୍‌ଗାତା, ସ୍ୱର୍ଣ୍ଣପ୍ରସୂ ଭାରତ ବର୍ଷର ଚିତ୍ର ଦେଇ ସେ ସ୍ୱରାଜ ସଂଗ୍ରାମର ଅଗ୍ରଣୀ ସେନାନୀଙ୍କୁ ଜନନୀର ବନ୍ଧନ ମୁକ୍ତି ପାଇଁ ରକ୍ତ ତର୍ପଣ କରିବାକୁ ଆହ୍ୱାନ ଦେଇଛନ୍ତି।

ତୁଚ୍ଛା ଜନନୀ ଡାକିଲେ କି ହେବ ଜନନୀ ପରା ତୋ ପରାଧୀନ
ନୟନ କାତର ଅଙ୍ଗ ଜରଜର ସହି ଏ ବିଦେଶୀ କଷଣ
ରାଜୁଥିଲା ଦିନେ ସ୍ୱର୍ଣ୍ଣ ସିଂହାସନ ହୋଇ କୋଟି ବୀର ମଣ୍ଡନ
ଆଜି ତା ପୟରେ ଲୁହାର ଶିକୁଳି ସିଂହାସନେ ହେଲା ବନ୍ଧନ।

X X X

ଜନନୀ ବୋଲିତୁ ଡ଼ାକିବୁରେ ଯେବେ ରକ୍ତେ ପୂଜ ତା ଚ଼ରଣ
ସ୍ୱାର୍ଥ ମେଧ ବହ୍ନି ପ୍ରଜ୍ୱଳିତ କର ଅସ୍ଥି କର ତହିଁ ଇନ୍ଧନ। (ସଂଗୃହୀତ)

ବହୁ ସମୟରେ କବି ନିଜେ ନାଟକରେ ଦେଶପ୍ରେମମୂଳକ ସଙ୍ଗୀତ ପରିବେଷଣ କରୁଥିଲେ। ସନ୍ନ୍ୟାସୀ ବେଶଧାରଣ କରି ଆଲଖାଲା ପିନ୍ଧି ସଙ୍ଗୀତରେ ଶ୍ରୋତାଙ୍କୁ ବିମୋହିତ କରି ଦେଉଥିଲେ। ତାଙ୍କର ସଙ୍ଗୀତ "ପଲ୍ଲୀବାସୀ ରାକା ଶଶୀ ସୁଧାବରଷିଆ, 'ଆଜି ଉଠଗୋ ଉତ୍କଳ କମଳା', 'ଅର୍ଗଳ ଖୋଲି ଦିଅ ହେ ପୂଜାରୀ', 'ସୁଜଳା ସୁଫଳା ଶ୍ୟାମଳା ମାଗେ' ଅତି ପରିଚିତ ସଙ୍ଗୀତ ଥିଲା। ବେଳେବେଳେ ସରକାରଙ୍କ ନଜର ଏଡାଇବା ପାଇଁ ଦୁଇ ଅର୍ଥ ବିଶିଷ୍ଟ ଗୀତ ବି ଗାଉଥିଲେ।

ଓଡ଼ିଶାର ସନ୍ଥ ସାହିତ୍ୟ ବହୁ ବରେଣ୍ୟ ସାଧକମାନଙ୍କ ଅବଦାନରେ ସମୃଦ୍ଧ। ବୌଦ୍ଧଗାନ ଦୋହାଠାରୁ ଭକ୍ତ କବି ମଧୁସୂଦନଙ୍କ ପର୍ଯ୍ୟନ୍ତ ଭକ୍ତିଧର୍ମୀ କବିତାର ଏକ ସ୍ରୋତ ଅନାହତ ଭାବରେ ପ୍ରବହମାନ। ଜୀବନର ରହସ୍ୟ ଉଦ୍‌ଘାଟନ ପାଇଁ ଅନ୍ତରଙ୍ଗ ଚେଷ୍ଟା ସହିତ ବାଟବଣା ମଣିଷ ପାଇଁ ସତର୍କ ସୂଚନାରେ ଏ ସଙ୍ଗୀତଗୁଡ଼ିକ ଆମ ଭାଷାର ଅମୂଲ୍ୟ ସମ୍ପଦ ହୋଇରହିଛି। ସେହି ଧାରାରେ କୃଷ୍ଣପ୍ରସାଦଙ୍କ ଦାନ ମଧ ଅବିସ୍ମରଣୀୟ। ମୁଁ ଓ ମୋର ଏହି ମୋହାଭିମାନ ଜଗତରେ ମଣିଷଙ୍କୁ ଅହଙ୍କାର ପ୍ରମତ୍ତ କରୁଛି। ସମସ୍ତ ଜଗତକୁ କରାୟତ୍ତ କରିବାକୁ ସେ ଉଦ୍ୟମ କରୁଛି। ସେ ବୁଝୁନାହିଁ ଏ ଜଗତରେ ସେ ପ୍ରବାସୀ, କେତେବେଳେ ଡ଼ାକରା ଆସିଲେ ଏ ହାଟର ସଉଦା ସାରି ତାକୁ ଯିବାକୁ ହେବ ଆର ପାରିକୁ। କବି ବାଟଭୁଲା ଏହି ପଥିକକୁ ଏକ ଗୀତିରେ ଚେ଼ତାବନୀ ଶୁଣାଉଛି।

ବାଟେ ବାଟେ ଯିବା ଲୋକ ବାହାଫୁଟିକି ମାରୁଛୁ ମୁହିଁରେ ମୁହିଁ
ମୁଁ ହି ଜାଣି ସରଗ ଛିଣ୍ଡା
ମୁହିଁରେ ଜଗତ ହୋଇଛି ବାଇ।

ପରଘରେ ପରବାସୀଯାଟା
ଢାଙ୍କି ହୋଇ ପର ଦଶିଆଟା
ପର ଲାଗି ପର ହାଟକୁ ଆସିଛୁ ପରପସରାରେ ହେଉ ଫୁଲାଇ
ହାଟ ଗଲେ ବାଟ ନମିଳିବ ଦେଖିବୁ ପଡ଼ିଛି ଶୃଙ୍ଖଳା ଭୂଇଁ,
ଧନଜନ କେଉଁଟା ତୋର ଯିବା ବେଳେ ଯିବୁ କେଉଁଟା ନେଇ

X X X

ତଣ୍ଟିଚିପା ଖଣ୍ଡ ହାବୁଡ଼େ ପଡ଼ିଲେ
ମୁହିଁଟା ହୋଇବ ତୁହିରେ ତୁହି (ସଂସାର ଚିତ୍ର- ନାଟକ)

ପାରଲୌକିକ ଜୀବନର ଆନନ୍ଦ ପାଇଁ କବି ମଣିଷକୁ ଅନେକ ସ୍ଥଳରେ ସଚେତନ କରାଇଛନ୍ତି । ଧରାର ମୋହଗ୍ରସ୍ତ ମଣିଷକୁ ଦୂରଦ୍ରଷ୍ଟା କବି ଚେତାବନୀ ଶୁଣାଉଛି ।

ଉଡ଼ିଯାଉଛି ଲୋଟଣୀ ପାରା ଦୁନିଆରେ ଲାଗିଛି ଧରାପରା
କିବା ଖରା କିବା ତରା ଚହଲରେ ଚମକୁଛି ଧରା,
କେହି ବାଜ ହୋଇ ସାଜ ଧାଏଁ ଗରାସି ଦେବାକୁ ଆଜ
ପଛେ ପଛେ ଧାଉଁଛି ପକ୍ଷୀରାଜ ତହିଁ ନେତ୍ର ପଡୁନାହିଁ ପରା ।
ମେଲି ବସିଛି ଶବର ଫାନ୍ଦ, ହସତଳେ ଅଛି କାନ୍ଦ
ମନ୍ଦ ମନ୍ଦ ମନ୍ତ୍ରର ଅଜଗର ସବୁ କୁହୁକ କରିଦେବ ଦୂର
ତଳୁ ତଳୁ ବରଡ଼ା ଖସିଛି ଥାଇ ଉପରେ ଜଣେ ହସୁଛି
ଆନ ବୋଲେ ଆସୁ ଅଛି କାଳ ପାଦ ପଡୁଛି ଚୁପୁଚୁପୁ ତୋର ।
(କାରାମନ୍ଦିର- ନାଟକ)

ଅପରାଧ ପ୍ରବଣ ମଣିଷ ଆଗରେ ଜୀବନର ନିଗୂଢ଼ ରହସ୍ୟ ଉନ୍ମୋଚନ କରିଥିବା ଗୀତିଟିଏ -

ବାଇମନ ପଛକୁ ଅନା
ତୁ ଭାବୁଛୁ ମନେ, କେହି ନଜାଣୁଛି
ତୋ ପଛେ ରହିଛି କାଳିଆ ସୁନା,
ରାତିଦିନ ନାହିଁ ଭାବୁଛୁରେ ବାଇ, କାହା ତଣ୍ଟି ଚିପି କରିବୁ ଚୂନା,
ତୋ ଗଳାରେ ଫାଶ ବେଢ଼ି ରହିଲାଣି
ଅଦୃଶ୍ୟ ଅଙ୍ଗୁଳି ଧରିଛି ଗୁଣା,
ଫୁଲି ଫୁଲି ଯିବୁ ଫାପୁଲା ହୋଇବୁ, ଫୋଟକା ପରାଏ
ହୋଇବୁ ସିନା ।

ଭଣ୍ଡି ତଣ୍ଡି ଖାଇ ହୁଣ୍ଡାଙ୍କ ଆଖିରେ
ଭେଣ୍ଡିକୁ ବିକିବୁ ନିଗର ସୁନା,
ଫନ୍ଦା ନ ଛାଡୁଛୁ, ଧନ୍ଦା ବଳାଉଛୁ
ନିନ୍ଦା ଢୋଲ ବାଇ ହୋଇବୁ ବଣା (ସଂଗୃହୀତ)

କୃଷ୍ଣପ୍ରସାଦଙ୍କ ଗୀତି କବିତାର ସ୍ୱର ବିନ୍ୟାସ ଯେଭଳି ଅଭିନବ ତାର ପ୍ରକାଶ ଭଙ୍ଗୀ ସେଇଭଳି ଚାତୁର୍ଯ୍ୟୋଜ୍ୱଳ। ସେଗୁଡ଼ିକ ରସ ଚେତନାରେ ପାଠକକୁ ବିମୋହିତ କରିବା ସହିତ, ଭାବର ଗଭୀରତାରେ କବିର କବିତ୍ୱକୁ ଶାଶ୍ୱତ କରିଦିଏ।

**ଗୌଣସୃଷ୍ଟି**

ଯାତ୍ରା ନାଟକ, ଖଣ୍ଡ କାବ୍ୟ, ଆଖଡ଼ା ଘରେ ବୈଠକ ପ୍ରବନ୍ଧ ଓ ସହସ୍ରାଧିକ ଗୀତି କବିତା ବ୍ୟତୀତ କିଛି ଅନୁବାଦ ଓ ଗଦ୍ୟ ରଚନାକୁ କୃଷ୍ଣପ୍ରସାଦଙ୍କ ଗୌଣସୃଷ୍ଟି ଭାବରେ ଗ୍ରହଣ କରାଯାଇପାରେ। ତାଙ୍କ ସାରସ୍ୱତ ପ୍ରତିଭାର ପ୍ରଚଣ୍ଡ ଔଜ୍ଜ୍ୱଲ୍ୟରେ ଏଗୁଡିକ ଉଦ୍‌ଭାସିତ ନହେଲେ ମଧ ବହୁ ଦୃଷ୍ଟିରୁ ଅପାଂକ୍ତେୟ ନୁହନ୍ତି। କ୍ଷୁଦ୍ରାବୟବ ବିଶିଷ୍ଟ ତାଙ୍କର ଏହି ରଚନା ଗୁଡ଼ିକ ହେଲା

ଅନୁବାଦ ଗ୍ରନ୍ଥ :

(କ) ମହିମ୍ନ ସ୍ତବର ଅନୁଭୂତି
(ଖ) କାଳ୍ୟପରାଧ କ୍ଷମାପନ
(ଗ) ଦଣ୍ଡକ ସ୍ତବ

ଗଦ୍ୟ ରଚନା :

(ଘ) ଫରୁଆ ବୁଟି
(ଙ) ମାମୁଁ
(ଚ) ନାନୀ
(ଛ) ନାନା ବିଧି
(ଜ) କେତେକ ପ୍ରବନ୍ଧ
(ଝ) ପଥଭ୍ରଷ୍ଟର ଜୀବନ କଥା

**ମହିମ୍ନ ସ୍ତବର ଅନୁଭୂତି** ଏକ ଅନୁବାଦ ଗ୍ରନ୍ଥ। ମହିମ୍ନ ସ୍ତବ ସମଗ୍ର ହିନ୍ଦୁ ଜଗତରେ ଅତ୍ୟନ୍ତ ପରିଚିତ। ଭକ୍ତ ଶେଖର ଗନ୍ଧର୍ବରାଜ ଶ୍ରୀ ପୁଷ୍ପ ଦନ୍ତ ଏହାର ସ୍ରଷ୍ଟା। ପ୍ରତି ଶିବାଳୟରେ ଏହାର ଝଙ୍କାର ଅନୁଭୂତ। ଏହି ସଂସ୍କୃତ ସ୍ତବର ବହୁ ଟୀକା କଳ୍ପନା କରାଯାଇଛି। ଅନେକ ସମୟରେ ଏ ଟୀକାମାନ ମଧ ସାଧାରଣରେ ବୋଧଗମ୍ୟ

ହୁଏ ନାହିଁ। କୃଷ୍ଣପ୍ରସାଦ ମହିମ୍ନ ସ୍ତବର ଉପଲବ୍ଧି ଓ ଅନୁଭବକୁ ଅଦାର୍ଶନିକ ଓଡ଼ିଆ ଭକ୍ତମାନଙ୍କ ପାଇଁ ଛାଡ଼ି ଯାଇଛନ୍ତି। ମୂଳ ସ୍ତବର ୩୪ ପଦକୁ କବି ଓଡ଼ିଆ ଅନୁବାଦ କରିଛନ୍ତି। ୧୯୫୮ ମସିହାରେ ଶ୍ରୀ ବିଶ୍ୱେଶ୍ୱର ବସୁଙ୍କ ଦ୍ୱାରା ଏହା ପ୍ରକାଶିତ ହୋଇଛି। ରାଷ୍ଟ୍ରଭାଷା ସମବାୟ ପ୍ରେସରେ ମୁଦ୍ରିତ ହୋଇଛି। ଏହା ଆକ୍ଷରିକ ଅନୁବାଦ ନୁହେଁ। ଶ୍ଳୋକର ଭାବାର୍ଥକୁ କବି ପ୍ରକାଶ କରିଛନ୍ତି। ଅନେକ ସ୍ଥଳରେ ଅନୁବାଦ ସହିତ ମଧ୍ୟ ମୂଳ ଶ୍ଳୋକ ରହିଛି। ଗୋଟିଏ ଉଦାହରଣ ନିଆଯାଉ।

ରୁଚୀନାଂ ବୈଚିତ୍ର୍ୟାଦୃଜୁ କୁଟିଳ ନାନାପଥ ଜୁଷାଂ
ନୃଣାମେ କୋ ଗମ୍ୟ ସ୍ତ୍ୱମସି ପୟସାମର୍ଣ୍ଣବଇବ ।।

ରୁଚି ଭେଦ ନାନା ପଥର କଳ୍ପନା
କେହି ଉଚ୍ଚ ନୋହେ ହୀନ
ଯାର ଯେଉଁ ପଥ, ଶୁଚି ମନୋରଥ
ସେ ତହିଁକି ଦେଉ ଧ୍ୟାନ।

ଦେବୀ ପୁରଶୋକ୍ତ ରହସ୍ୟମୟ 'ଦଣ୍ଡକ ସ୍ତବ'ର ଓଡ଼ିଆ ଅନୁବାଦ କରି 'ଶିବକୃତ ଦଣ୍ଡକ ସ୍ତବ' ନାମରେ ପ୍ରକାଶ କରିଛନ୍ତି କୃଷ୍ଣପ୍ରସାଦ। ଏହାକୁ ମୁକ୍ତ ଅନୁବାଦ କହିଲେ ଠିକ୍ ହେବ। ପ୍ରଜାତନ୍ତ୍ର ପ୍ରେସରୁ ଏହା ମୁଦ୍ରିତ ହୋଇ ନୀଳମଣି ରାଉତରାୟଙ୍କ ଦ୍ୱାରା ପ୍ରକାଶିତ ହୋଇଛି। ମହାମାୟାଙ୍କ ରୂପ ପ୍ରକଟ ହୋଇଛି କବିଙ୍କ ଅନୁବାଦରେ। କେତୋଟି ପଦ ଉଦ୍ଧାର କରାଯାଉ।

କୁଣ୍ଡଳ ମୁକୁଟ କେୟୁର
ରତ୍ନ ଖଚିତ ତୋ ନୂପୁର
ବଲ୍‌କଲ ନୀଳ ଚିନାମ୍ବର
କୌଷେୟ ବସନ ତୋହର।
ତୋ ବକ୍ଷ ସୁବର୍ଣ୍ଣ କଳସ
କନକ କାନ୍ତି ପରକାଶ।
ନୃତ୍ୟ ନିପୁଣା କ୍ଷୀଣ ମଧ୍ୟା
ନାଭି ଆବର୍ତ୍ତ ଅନବଦ୍ୟା।

'କାଳ୍ୟ ପରାଧକ୍ଷମାପନ' ଆଉ ଏକ ଅନୁବାଦ ଗ୍ରନ୍ଥ। ଶଙ୍କରାଚାର୍ଯ୍ୟ ବିରଚିତ 'କାଳ୍ୟପରାଧ କ୍ଷମାପାନ' ସ୍ତୋତ୍ରର ଅନୁଭୂତି ଏଥିରେ ପ୍ରକାଶିତ। ପ୍ରେମଚାନ୍ଦ ବରାଳ ଷ୍ଟ୍ରୀଟ୍‌ର କୋଣାର୍କ ପ୍ରେସ୍‌ରୁ ଏହା ମୁଦ୍ରିତ ଓ ବସୁ ସାହିତ୍ୟ ମନ୍ଦିର ତରଫରୁ ବିଶ୍ୱେଶ୍ୱର ବସୁଙ୍କ ଦ୍ୱାରା ପ୍ରକାଶିତ। ପୁସ୍ତକଟିକୁ କବି ନିଜର ଜନନୀ 'ବିଷ୍ଣୁପ୍ରିୟା'ଙ୍କ ସ୍ମୃତି

ଉଦ୍ଦେଶ୍ୟରେ ଅର୍ପଣ କରିଛନ୍ତି । ମୂଳ ଶ୍ଳୋକ ସହିତ କବି ୧୪ ପଦରେ ଏହି ଅନୁବାଦ ଶେଷ କରିଛନ୍ତି । ଗ୍ରନ୍ଥ ଶେଷରେ ବିଷୟବସ୍ତୁର ସମ୍ୟକ ବିଶ୍ଳେଷଣ କରିଛନ୍ତି ଗ୍ରନ୍ଥକାର ଓ ନିଜର ଭକ୍ତି ଅର୍ଘ୍ୟ ଅର୍ପଣ କରିଛନ୍ତି ଦେବୀଙ୍କୁ । ନିଜର ଅନୁଭୂତିକୁ ଗ୍ରନ୍ଥରେ ଚୋଖି ରାଗରେ ପ୍ରକାଶ କରିଛନ୍ତି । କବିଙ୍କ ଅନୁବାଦ କୁଶଳତାର ନିଦର୍ଶନ ପାଇଁ ପଦଟିଏ ଗ୍ରହଣ କରାଯାଇପାରେ ।

ପ୍ରାପ୍ତୋଽହଂ ଯୌବନଞ୍ଚେଦ୍ ବିଷଧର ସଦୃଶୈରିନ୍ଦ୍ରିୟୈଦଷ୍ଟାଗାତ୍ରୋ
ନଷ୍ଟ ପ୍ରଜ୍ଞା ପରସ୍ତ୍ରୀ ପରଧନ ହରଣେ ସର୍ବଦା ସାଭିଳାଷଃ
ତ୍ୱତ୍ ପାଦାମ୍ଭୋଜଯୁଗ୍ମଂ କ୍ଷଣମପି ମନସା ନସ୍ମୃତୋଽହଂ କଦାପି
କ୍ଷନ୍ତବ୍ୟୋ ମେଽପରାଧଃ ପ୍ରକଟିତ ବଦନେ କାମ ରୂପେ କରାଳେ । ୩ ।

ଅନୁବାଦ -

ଯୌବନେ ହୋଇଲି ବ୍ୟଗ୍ର ବିଷଧର ଠାରୁ ଉଗ୍ର -
ଇନ୍ଦ୍ରିୟମାନେ କରିଲେ ମୋତେ ଦଂଶନ,
ଆଗପଛ ନ ଭାବିଲି, ପ୍ରଜ୍ଞାପଣ ହରାଇଲି
ପର ନାରୀ ପର ବିତ୍ତେ ଥୋଇଲି ମନ
ବ୍ୟାକୁଳ ବାତୁଳ ଉନ୍ମାଦ
ଦଣ୍ଡେତ ଭଜିଲି ନାହିଁ ରାଜିବ ପଦ
ଭାବୁଛି ଏକ୍ଷଣି ସିନା, କି ପାପେ ଏ ଦୁର୍ବାସନା
କ୍ଷମାକର କ୍ଷମଙ୍କରୀ ନାମ ବିଷଦ ।

'ନାନୀ' କୃଷ୍ଣ ପ୍ରସାଦଙ୍କର ଏକ କ୍ଷୁଦ୍ର ଗଳ୍ପ । 'ଆଖଡ଼ା ଘରେ ବୈଠକ'ର ଅନ୍ୟତମ ନାୟକ ଦୁଃଖି ଖୁଣ୍ଟିଆଙ୍କୁ ନେଇ ଗଳ୍ପଟି ପରିକଳ୍ପିତ । ଏଠାରେ ଉପର ଦୁମୁକା ଗ୍ରାମର ତରୁଣୀ ଶୋଭା ଗଳ୍ପର ନାୟିକା । ତାକୁ ପ୍ରଦ୍ୟୋତ ପଟ୍ଟନାୟକ ନାମକ ଜଣେ ଜମିଦାର ଯୁବକ ଅପହରଣ କରି ନେଇଛି ଓ ସେ ହାଣ୍ଡରସନ ନାମକ ଜଣେ ବେଲଜିଆନ ଫାଦରଙ୍କ ସହାୟତାରେ ମୁକ୍ତ ହୋଇ ଗିର୍ଜାରେ ସିଷ୍ଟର ଭାବରେ ଜୀବନ ବିତାଇଛି । ନିଜର ଭାଇ ନବା ସହିତ ତା'ର ମିଳନ ହୋଇଛି, ଏହି ଘଟଣାକୁ ରୂପ ଦିଆଯାଇଛି ଗଳ୍ପଟିରେ । ମଫସଲ ଗାଁର ଚିତ୍ର, ଅନ୍ଧବିଶ୍ୱାସର ପ୍ରଭାବ ଆଦି ଅତି ଜୀବନ୍ତ ଭାବେ ବର୍ଣ୍ଣନା କରାଯାଇଛି । ଗଳ୍ପଟି ଶ୍ରୀ ହୃଦାନନ୍ଦ ମଲ୍ଲିକଙ୍କ ସମ୍ପାଦନାରେ କଲିକତାରୁ ପ୍ରକାଶ ପାଉଥିବା 'ଅଗ୍ରଣୀ' ପତ୍ରିକାରେ ୧୯୫୩ ଅକ୍ଟୋବର ଶାରଦୀୟ ସଂଖ୍ୟାରେ ପ୍ରକାଶିତ ହୋଇଥିଲା ।

ଆସନ୍ତା କାଲି ୨ୟ ବର୍ଷ ୬ଷ୍ଠ/୭ମ/୮ମ ସଂଖ୍ୟାରେ ପ୍ରକାଶିତ 'ମାମୁଁ' କୃଷ୍ଣ ପ୍ରସାଦଙ୍କ ଅନ୍ୟ ଏକ ଉପନ୍ୟାସିକା। ଏଥିରେ ଦୀନବନ୍ଧୁ ଓ ତାଙ୍କ ଭଗିନୀ ଉମାଙ୍କର ଜୀବନାଲେଖ୍ୟ ଅଙ୍କିତ। ଉମା କିଭଳି ପାଠ ପଢ଼ିବା ବେଳେ Prof. Malam ଙ୍କ ପ୍ରେମରେ ପଡ଼ିଯାଇଥିଲେ ଓ କଥାକୁ ଗୋପନ ରଖି ନିଜର ବଂଶ ପରମ୍ପରା ହେତୁ ତାଙ୍କୁ ବିଭା ହୋଇ ପାରିନଥିଲେ। ଶେଷରେ ସନ୍ତାନର ଜନନୀ ହେବା ପୂର୍ବରୁ Prof. Malam ଙ୍କ ଯୁଦ୍ଧରେ ଜୀବନାବସାନ କଥା ଶୁଣି ଚେ଼ତାଶୂନ୍ୟ ହୋଇ ପଡ଼ିଲେ । ଏଇକଥାକୁ ନେଇ ଏହି କ୍ଷୁଦ୍ର ଉପନ୍ୟାସର ପରିକଳ୍ପନା।

'ନାନାବିଧ' କୃଷ୍ଣପ୍ରସାଦଙ୍କ ରମ୍ୟ ରଚ଼ନା। ପାଣ୍ଡିତ୍ୟ ଓ ଦାର୍ଶନିକତାରେ ପରିପୂର୍ଣ୍ଣ ଏହି ପ୍ରବନ୍ଧଗୁଡ଼ିକ ଅଧ୍ୟାପକ କୁଳମଣି ଜେନାଙ୍କ ସଂପାଦନାରେ ଯାଜପୁରରୁ ପ୍ରକାଶ ପାଉଥିବା 'ଅଗ୍ରଦୂତ' ସାହିତ୍ୟ ପତ୍ରରେ ପ୍ରଥମ ବର୍ଷ (୧୯୬୬) ୭, ୮, ୯ ଓ ଦଶମ ସଂଖ୍ୟାରେ ପ୍ରକାଶିତ ହୋଇଥିଲା। ଏହି ପ୍ରବନ୍ଧଗୁଡ଼ିକରେ ଲେଖକ ସାମାଜିକ କୁସଂସ୍କାର ବିରୁଦ୍ଧରେ ସ୍ୱର ଉତ୍ତୋଳନ କରିଛନ୍ତି। ୨ୟ ପ୍ରବନ୍ଧରେ ତନ୍ତ୍ରଶାସ୍ତ୍ର ସମ୍ପର୍କରେ ପାଣ୍ଡିତ୍ୟପୂର୍ଣ୍ଣ ଓ ଯୁକ୍ତିଧର୍ମୀ ବିଶ୍ଳେଷଣ କରିଛନ୍ତି।

ଆସନ୍ତାକାଲି ୧୨ବର୍ଷ (୧୯୬୨) ର ବିଭିନ୍ନ ସଂଖ୍ୟାରେ ପ୍ରକାଶିତ 'ଫଗୁଆ ବୁଟି' ଗଳ୍ପ ଧର୍ମୀ ଆଲୋଚନା ମୂଳକ ରଚ଼ନା। ନିଜର ବ୍ୟକ୍ତିଗତ ଅନୁଭୂତିକୁ ଲେଖକ ଗଳ୍ପ ମାଧ୍ୟମରେ ପ୍ରକାଶ କରିଛନ୍ତି। ଧର୍ମ ନାମରେ ନୀତି ନାମରେ ସମାଜରେ ଚ଼ାଲିଥିବା ବ୍ୟଭିଚ଼ାରର ଉତ୍‌ପାଟନ ପାଇଁ ଏ ପ୍ରବନ୍ଧଗୁଡ଼ିକରେ ଆହ୍ୱାନ ଦିଆଯାଇଛି। ପାପ, ପୂଣ୍ୟ, ସ୍ୱର୍ଗ ଓ ନରକର ପରିକଳ୍ପନା ମୂଳରେ ମଣିଷର ବିଶ୍ୱାସ ହିଁ ବିରାଜମାନ ଏକଥା ଲେଖକ ବିସ୍ତୃତ ଭାବରେ ବର୍ଣ୍ଣନା କରିବା ସଙ୍ଗେ ସଙ୍ଗେ ଶେଷ କଥାରେ -

ଫୁଟିଛୁ ଗୋଟାଏ କୁସୁମ  
ଦଣ୍ଡେ ସୌରଭ ଦେଇଯା  
ପାରୁ ଯେବେ ପ୍ରେମ ମଦରୁ ଟୋପାଏ  
ପିଇଯା ପିଇଯା

କହି ଉପସଂହାରରେ ପହଞ୍ଚିଛନ୍ତି। ଏ ରଚ଼ନା ଗୁଡ଼ିକ 'ଆଖଡ଼ା ଘରେ ବୈଠକ' ରଚ଼ନାର ଅନୁରୂପ।

ଡଗର ପତ୍ରିକାର ୧୪ବର୍ଷ ୨୦ ସଂଖ୍ୟାରେ **'ମୁଁ କାହିଁକି ଲେଖେ'** ଶିରୋନାମାରେ ପ୍ରକାଶିତ ପ୍ରବନ୍ଧରେ ଲେଖକ ନିଜର ଛାତ୍ର ଜୀବନର ଅନୁଭୂତି ଓ ଲେଖକ ଭାବରେ ନିଜର ଅଭିଜ୍ଞତାକୁ ଅତି ରସାଳ ଭାବରେ ପ୍ରକାଶ କରିଛନ୍ତି। ଏହାକୁ ଲେଖକଙ୍କ ଜୀବନାଲେଖ୍ୟ କହିଲେ ଠିକ୍ ହେବ।

ସେହିଭଳି କାନ୍ତକବିଙ୍କ ତିରୋଧାନରେ ପ୍ରକାଶିତ ଡଗରର ବିଶେଷ ସଂଖ୍ୟା (୧ ବର୍ଷ ୯ମ ଓ ୧୦ମ ସଂଖ୍ୟା) ରେ **'ସବୁଥିରୁ ବଂଚ଼ିତ କରି'** ଶିରୋନାମାରେ କାନ୍ତକବିଙ୍କ ସମ୍ପର୍କରେ ସ୍ମୃତିଚ଼ାରଣ କରିଛନ୍ତି କୃଷ୍ଣପ୍ରସାଦ। ପ୍ରବନ୍ଧାକାରରେ ଲିଖିତ ଏହି ରଚ଼ନାରେ କାନ୍ତକବିଙ୍କ ସହିତ ତାଙ୍କର ବନ୍ଧୁତ୍ୱ ଓ ଓଡ଼ିଶାର ସାରସ୍ୱତ ସାଧନା କ୍ଷେତ୍ରରେ ସେମାନଙ୍କର ଅବଦାନ ବିଷୟରେ ବର୍ଣ୍ଣନା କରାଯାଇଛି। ବିଶେଷତଃ କଟକ ଓ କଲିକତାର କଲେଜ ଜୀବନର ବହୁ କଥା ଏଥିରେ ବ୍ୟକ୍ତ ହୋଇଛି।

ଆସନ୍ତା କାଲି ପୂଜା ସଂଖ୍ୟା ଅକ୍ଟୋବର ୧୯୫୮ରେ ଲିଖିତ କୃଷ୍ଣପ୍ରସାଦଙ୍କ ପ୍ରବନ୍ଧ **'ଦଶହରା ଅର୍ଦ୍ଧଶତାବ୍ଦୀ ପୂର୍ବେ'** ଏକ ପାଣ୍ଡିତ୍ୟପୂର୍ଣ୍ଣ ରଚ଼ନା। ଏଥିରେ ଲେଖକ ଦେବୀ ଉପାସନାର ବିଶେଷତ୍ୱ, ପ୍ରାଚୀନ କାଳର ପୂଜା, ଏବେକାର ପୂଜା ମଧ୍ୟରେ ଥିବା ପାର୍ଥକ୍ୟ ଉପରେ ଆଲୋକପାତ କରିଛନ୍ତି।

ରାଷ୍ଟ୍ରଭାଷା ରଜତ ଜୟନ୍ତୀ ଗ୍ରନ୍ଥରେ କୃଷ୍ଣପ୍ରସାଦଙ୍କ ପାଣ୍ଡିତ୍ୟପୂର୍ଣ୍ଣ ତଥ୍ୟନିଷ୍ଠ ପ୍ରବନ୍ଧ **'ଉତ୍କଳୀୟ ରଙ୍ଗମଞ୍ଚର କିଞ୍ଚିତ ଅତୀତ'** ଏକ ଉଲ୍ଲେଖଯୋଗ୍ୟ ସୃଷ୍ଟି। କୃଷ୍ଣପ୍ରସାଦଙ୍କ ମୂଳ ଓଡ଼ିଆ ପ୍ରବନ୍ଧର ଏହା ହିନ୍ଦି ଭାଷାନ୍ତର । ଏ ପ୍ରବନ୍ଧରେ ପ୍ରାବନ୍ଧିକ ଓଡ଼ିଶାର ଲୋକନାଟକ ଯାତ୍ରାର ବିକାଶ କ୍ରମ, ମଞ୍ଚକଳାର ବିଶେଷତ୍ୱ ଓ ଓଡ଼ିଆ ରଙ୍ଗମଞ୍ଚର ବିବର୍ତ୍ତନର ଇତିହାସ ଉପରେ ଆଲୋକପାତ କରିଛନ୍ତି।

ଦୁଇଭାଗରେ ବିଭକ୍ତ ସ୍ୱହସ୍ତଲିଖିତ ଅପ୍ରକାଶିତ ଆତ୍ମଜୀବନୀ **'ପଥଭ୍ରଷ୍ଟର ଜୀବନକଥା'** କବିଙ୍କ ଜୀବନ ଓ ପ୍ରତିଭା ସମ୍ପର୍କରେ ବହୁ ତଥ୍ୟ ସମ୍ବଳିତ ପୁସ୍ତକ। 'ଆଖଡା ଘରେ ବୈଠକ'ର ଶୈଳୀରେ ଲିଖିତ ଏହି ରଚନାଟି ରସାଳ ଓ ସୁଖପାଠ୍ୟ। ମୃତ୍ୟୁର ଅଳ୍ପକାଳ ପୂର୍ବରୁ ଏହା ରଚିତ ହୋଇଛି। ଏହି ସଂକ୍ଷିପ୍ତ ଆତ୍ମଜୀବନୀରେ କବିଙ୍କ ବଂଶ ପରିଚୟ, ବାଲ୍ୟ ଜୀବନ, କଟକ ଓ କଲିକତାର କଲେଜ ଜୀବନ, କର୍ମଜୀବନର ପ୍ରଥମ ଓ ଅନ୍ତିମ ପର୍ଯ୍ୟାୟ ସମ୍ପର୍କରେ ସବିଶେଷ ତଥ୍ୟ ସନ୍ନିବେଶିତ ହୋଇଛି। ପାରମ୍ପରିକ ଓଡ଼ିଆ ଲୋକନାଟକ 'ଯାତ୍ରା' ରଚନା ଓ ପରିବେଷଣ ଶୈଳୀର କିପରି ପରିବର୍ତ୍ତନ ଆସିଛି, ଯାତ୍ରା କ୍ଷେତ୍ରରେ ନିଜସ୍ୱ ପରୀକ୍ଷା ନିରୀକ୍ଷାର ସୂକ୍ଷ୍ମାତିସୂକ୍ଷ୍ମ ଦିଗ ଉପରେ ଆଲୋକପାତ କରାଯାଇଛି। କବି ପରିଚାଳନା କରୁଥିବା 'ବିରଜା ଅପେରା', 'ଶ୍ୟାମସୁନ୍ଦର ଥିଏଟର', ବଲାଙ୍ଗୀରରେ ନାଟ୍ୟ ପରିବେଷଣ, ରାମଚନ୍ଦ୍ର ଭବନରେ ସଭା, 'ଯାତ୍ରା' ପରେ ପାଲାକାବ୍ୟର ରଚନା ଆଦି ନାନା ବିଷୟରେ ସଂକ୍ଷିପ୍ତ ଆଲୋଚନା ସହିତ ଯାତ୍ରାଦଳ ପରିଚାଳନା ଓ ପ୍ରଦର୍ଶନ ବେଳେ ମିଳିଥିବା ମେଡାଲ ଓ ଉପହାରର ଏକ ତାଲିକା ମଧ୍ୟ ରହିଛି।

କୃଷ୍ଣପ୍ରସାଦ ବଲାଙ୍ଗୀର ରାଜ୍ୟରେ ସଙ୍ଗୀତ ଶିକ୍ଷକ ଭାବେ କାର୍ଯ୍ୟ କଲାବେଳେ ସେଠାରେ ଅନୁଷ୍ଠିତ ସର୍ବଭାରତୀୟ ରାଜନ୍ୟ ସମ୍ମିଳନୀ ପାଇଁ ବହୁ ଅଭିନନ୍ଦନପତ୍ର କବିତା ଆକାରରେ ଲେଖିଥିଲେ। ସେ ସବୁ ପତ୍ରରେ ସେ ରାଜନ୍ୟ ବର୍ଗଙ୍କର ଯଶଗାନ ସଙ୍ଗେ ଉତ୍କଳର ପ୍ରାଚୀନ ଗୌରବ ଓ ବର୍ତ୍ତମାନର ଅବସ୍ଥା ସମ୍ପର୍କରେ ମଧ୍ୟ ସୂଚନାମାନ ଦେଇଥିଲେ। ସେଗୁଡ଼ିକ ଉତ୍କଳ ସାହିତ୍ୟ ପ୍ରେସରୁ ମୁଦ୍ରିତ ହୋଇ ବହୁ ସଂଖ୍ୟାରେ ବିତରିତ ହୋଇଥିଲା।

ଉପରୋକ୍ତ ରଚନାବଳୀ ସହିତ ଅଭିନବ ଢଙ୍ଗରେ ଲିଖିତ ବହୁ ବ୍ୟକ୍ତିଗତ ପତ୍ରକୁ ସାରସ୍ୱତ ସମ୍ପଦ ଭାବରେ ଗ୍ରହଣ କରାଯାଇପାରେ। ଓଡ଼ିଶାର ବହୁ ବରେଣ୍ୟ ବ୍ୟକ୍ତି ବିଶେଷଙ୍କ ସହିତ ନିବିଡ଼ ବନ୍ଧୁତା ପାଶରେ ସେ ଥିଲେ ଆବଦ୍ଧ। ସେମାନଙ୍କ ସହିତ ପତ୍ରାଳାପରେ ସେ ଆନନ୍ଦ ପାଉଥିଲେ। ତାଙ୍କର ଦୀର୍ଘ ପତ୍ରରେ ଉତ୍କଳ ସାହିତ୍ୟର ଅବସ୍ଥା, ଉତ୍କଳର ଲୋକ ସାହିତ୍ୟର ଅତୀତ ଓ ବର୍ତ୍ତମାନର ବିବରଣ ଆଦି ଦେଖିବାକୁ ମିଳିଥାଏ। ସେହି ପତ୍ରମାନଙ୍କ ମଧ୍ୟରୁ ପଦ୍ୟାକାରରେ ଡକ୍ଟର ମାୟାଧର ମାନସିଂହଙ୍କୁ ଲେଖିଥିବା ପତ୍ର ଅତ୍ୟନ୍ତ ଭାବଉଦ୍ଦୀପକ। ୰ ମାନସିଂହଙ୍କ ସହିତ ତାଙ୍କର ଅନ୍ତରଙ୍ଗ ସମ୍ପର୍କ ଓ ରାଧାକୃଷ୍ଣ ପ୍ରେମ ବିଷୟକ ଏକ କାବ୍ୟ ଲେଖିବା ପାଇଁ ତାଙ୍କୁ ଅନୁରୋଧ ଆଦି ବିଷୟ ଏ ପତ୍ରରୁ ଜଣାଯାଏ। ଏହି ପତ୍ରରେ କବି ଲେଖିଛନ୍ତି-

ଅଭିମନ୍ୟୁ ଥିଲେ ରୋପାଇ, ଜଳ ଦେଲେ 'ଗୋପାଳ'
ଶୁଖିଯିବ ସେହି ଉଦ୍ୟାନ ଶୀଘ୍ର ସଳିଳ ଢାଳ
ତୁମ୍ଭେ ଏକା ବୁଡ଼ିପାରିବ ମୋର କହୁଛି ମନ
ଗୋସ୍ୱାମୀ ଗ୍ରନ୍ଥକୁ ମନ୍ଥନ କରି ଦିଅ ରତନ। (ପରିଶିଷ୍ଟ)

**ଉପସଂହାର**

ଓଡ଼ିଶାର ସାରସ୍ୱତ ପରମ୍ପରାରେ କବିମଞ୍ଜୁଳ କୃଷ୍ଣପ୍ରସାଦ ଥିଲେ ଜଣେ ଅସାଧାରଣ ବାଣୀ ସାଧକ। ଉତ୍କଳ ସାହିତ୍ୟର ବହୁ ବିଭାଗ ତାଙ୍କ ସୃଷ୍ଟିରେ ସମୃଦ୍ଧ ହୋଇଛି। ୧୯୧୫ ରୁ ୧୯୬୮ ମସିହା ଯାଏ ଦୀର୍ଘ ଅର୍ଦ୍ଧଶତାବ୍ଦୀ ସମୟ କାଳ ମଧ୍ୟରେ ସେ ତାଙ୍କର ବିପୁଳ ସୃଷ୍ଟି ସମ୍ଭାରରେ ଉତ୍କଳ ବାଣୀ ଭଣ୍ଡାରକୁ ପରିପୂର୍ଣ୍ଣ କରିଛନ୍ତି। ଏକାଧାରରେ କବି, ନାଟ୍ୟକାର, ପ୍ରାବନ୍ଧିକ, ଗାଳ୍ପିକ, ସଙ୍ଗୀତଜ୍ଞ, ଗାୟକ, ଯନ୍ତ୍ରଶିଳ୍ପୀ, ଅଭିନେତା, ଯାତ୍ରା ସଂଗଠକ, ପରିଚାଳକ ଓ ନିର୍ଦ୍ଦେଶକ ଭାବରେ ନିଜ ସମୟରେ ସେ ଥିଲେ ସବୁଠାରୁ ଲୋକପ୍ରିୟ ଶିଳ୍ପୀ। ତାଙ୍କ ସାଧନାର ପ୍ରତ୍ୟେକ ଦିଗ ଉପରେ ସ୍ୱତନ୍ତ୍ର ନିବନ୍ଧ ପ୍ରସ୍ତୁତ କରାଯାଇ ପାରିବ। ସେ ଥିଲେ ନୂତନତାର ସନ୍ଧାନୀ। ତାଙ୍କ ସୃଷ୍ଟିର ପ୍ରତ୍ୟେକ ଦିଗ ନୂତନତାର ସ୍ୱାକ୍ଷର ବହନ କରିଛି।

ତାଙ୍କ ପ୍ରତିଭାର ଆଦ୍ୟ ପ୍ରକାଶ ହୋଇଛି ନାଟକରେ। ବିଦଗ୍ଧ ନାଟକ ପଥ ପରିତ୍ୟାଗ କରି ସେ ଆଦରି ନେଇଛନ୍ତି ପାରମ୍ପାରିକ ନାଟକର କଙ୍କରିଳ ଦୁର୍ଗମ ପଥକୁ। ସେ ପଥରେ ତାଙ୍କର ଦୁର୍ବାର ଓ କ୍ରାନ୍ତିକାରୀ ଯାତ୍ରା ସ୍ମରଣୀୟ ହୋଇରହିଛି। ତାଙ୍କ ରଚିତ ୨୯ ଖଣ୍ଡ ନାଟକ ସଂସ୍କାରମୁଖୀ ଓଡ଼ିଆ ଯାତ୍ରା ନାଟକର ପରିପୂର୍ଣ୍ଣତା ଘୋଷଣା କରିଛି। ଗୋପାଳ ଦାଶ ଓ ବୈଷ୍ଣବ ପାଣି ପାରମ୍ପରିକ ଯାତ୍ରା ନାଟକ କ୍ଷେତ୍ରରେ ପରିବର୍ତ୍ତନର ଯେଉଁ ନୂତନ ସମ୍ଭାବନା ସୃଷ୍ଟି କରିଥିଲେ କୃଷ୍ଣପ୍ରସାଦଙ୍କ ଠାରେ ତାହା ସଫଳତାର ଶୀର୍ଷ ଆରୋହଣ କରିଛି। ଶୃଂଗାରିକତାର ପ୍ରମତ୍ତ ଆଲିଙ୍ଗନରୁ ନାଟକକୁ ମୁକ୍ତ କରି ରୁଚି ଓ ନୀତିର ଜୟମାଲ୍ୟ ପିନ୍ଧାଇ ଦେଇଛନ୍ତି। ଅଶ୍ଳୀଳତା ଓ ନଗ୍ନତାର ଅପବାଦରୁ ଉଦ୍ଧାର କରି ଶାସ୍ତ୍ରୀୟତାର ମର୍ଯ୍ୟାଦା ଦାନ କରିଛନ୍ତି। କ୍ରାନ୍ତିଦର୍ଶୀ କବିତ୍ୱ, ଦୀପ୍ତିଶୀଳ ପ୍ରକାଶ ଭଙ୍ଗୀ, ପରିଚ୍ଛନ୍ନ ଗଦ୍ୟ ଓ ଲଳିତ ସ୍ୱର ବିନ୍ୟାସ ସଂଯୋଜନାରେ ତାଙ୍କର ହାତରେ ଯାତ୍ରା ଅପେରା ସ୍ତରକୁ ଉନ୍ନିତ ହୋଇଯାଇଛି। ସେ ଓଡ଼ିଶାର ଏହି ନୂତନ ଧରଣର ଯାତ୍ରା ବା ଅପେରାର ଅନ୍ୟତମ ପ୍ରବର୍ତ୍ତକ ହୋଇଛନ୍ତି। ଯାତ୍ରା ନାଟକକୁ ଇତରତା ଓ ଅଗୌରବରୁ ମୁକ୍ତ କରି ଯୌବନର ବଳିଷ୍ଠତା ଓ ପରିଣତି ଦାନ କରିବାର ଗୌରବ ତାଙ୍କର ହିଁ ପ୍ରାପ୍ୟ। ସେହିଁ ଯଥାର୍ଥରେ 'ନାଟ୍ୟ ଗନ୍ଧର୍ବ'।

ଓଡ଼ିଶାର ଅନ୍ୟତମ ଜନପ୍ରିୟ ଲୋକନାଟ୍ୟ ପାଲାପାଇଁ ସ୍ୱତନ୍ତ୍ର ଖଣ୍ଡ କାବ୍ୟର କୃଷ୍ଣପ୍ରସାଦ ହେଉଛନ୍ତି ଆଦି ସ୍ରଷ୍ଟା। ପ୍ରାଚୀନ କାବ୍ୟ ଓ ପୁରାଣରୁ ଆଦର୍ଶ ଉପାଖ୍ୟାନ ମାନ ଚୟନ କରି ପାରମ୍ପରିକ ରାଗ ରାଗିଣୀର ସଂଯୋଜନାରେ ତାଙ୍କର ପାଲାକାବ୍ୟ ଗୁଡ଼ିକ ଉତ୍କଳବାଣୀ ଭଣ୍ଡାରର ଅମୂଲ୍ୟ ସମ୍ପଦ। ପାଲା କାବ୍ୟମାନଙ୍କରେ ପରିବେଷଣ ଶୈଳୀ ଗାୟକମାନଙ୍କ ପୋଷାକ ପରିଚ୍ଛଦ ଆଦି ସମ୍ପର୍କରେ ବିଶେଷ ନିର୍ଦ୍ଦେଶ ଫଳରେ ଓଡ଼ିଆ ପାଲା କ୍ଷେତ୍ରରେ ଏକ ବୈପ୍ଲବିକ ପରିବର୍ତ୍ତନ ଆଣିବାରେ ସେ ସକ୍ଷମ ହେଲେ। ସାଧାରଣ ଦର୍ଶକଙ୍କଠାରୁ ବିଦଗ୍ଧ ଶ୍ରୋତା ଓ ଦର୍ଶକମାନଙ୍କ ପାଇଁ ପାଲା ହୋଇଉଠିଲା ବଳିଷ୍ଠ ମନୋରଂଜନ ମାଧ୍ୟମ।

ଆଖଡ଼ା ଘରେ ବୈଠକ ଶିରୋନାମାରେ ଗଦ୍ୟ ସମ୍ଭାର ଓଡ଼ିଆ ରମ୍ୟ ରଚନା କ୍ଷେତ୍ରକୁ କୃଷ୍ଣପ୍ରସାଦଙ୍କ ଅମୂଲ୍ୟ ଦାନ। ଫକୀରମୋହନଙ୍କ ପରି ସମାଜ ସଂସ୍କାରକୁ ମୁଖ୍ୟ ଆୟୁଧ କରି ସେ ଜୀବନର ବିପୁଳ ଅଭିଜ୍ଞତା ଗଳ୍ପ ଓ ପ୍ରବନ୍ଧରେ ଲଳିତ ଭଙ୍ଗୀରେ ପ୍ରକାଶ କରିଗଲେ। ପଲ୍ଲୀ ଜୀବନର ତଥ୍ୟ, ପଲ୍ଲୀ ଜନତାର ଅଶ୍ରୁ ଆନନ୍ଦର ଚିତ୍ର ଦେବାରେ ତାଙ୍କର ଗଳ୍ପ ଓ ପ୍ରବନ୍ଧ ସାର୍ଥକ ହୋଇଛି। ଶୈଳୀ ଦୃଷ୍ଟିରୁ ଏହାକୁ ଓଡ଼ିଆ କ୍ଲାସିକ ଗଦ୍ୟର ନିଦର୍ଶନ ଭାବରେ ସମାଲୋଚକମାନେ ଗ୍ରହଣ କରି ନେବାରେ

ଯଥାର୍ଥତା ରହିଛି। ଓଡ଼ିଆ ଭାଷାରେ ଯେ ଏକ ବଳିଷ୍ଠ ଜୀବନୀଶକ୍ତି ରହିଛି ଏକଥା ବସୁ ହିଁ ପ୍ରମାଣ କରିଗଲେ। ବ୍ୟଙ୍ଗର ଶାଣିତ ଅସ୍ତ୍ରରେ ପତ୍‌ନଶୀଳ ସମାଜର ପଙ୍ଗୁ ଅଙ୍ଗରେ ଅସ୍ତ୍ରୋପଚାର କରିବାରେ ସେ ସଫଳ ହେଲେ।

ସହସ୍ରାଧିକ ଗୀତି କବିତା କବିମଞ୍ଜୁଳଙ୍କ ମଂଜୁଳ କବିତ୍ୱର ଅକ୍ଷୟ କୀର୍ତ୍ତିର ସ୍ୱାକ୍ଷର ବହନ କରିଛି। ଉଚ୍ଚ ଭାବ, ଲଳିତ ଭାଷା ଓ ମନୋଜ୍ଞ ସ୍ୱର ବିନ୍ୟାସରେ ଏ ଗୁଡ଼ିକ ରସୋତ୍ତୀର୍ଣ୍ଣ ହୋଇଯାଇଛି। ରାଧାକୃଷ୍ଣଙ୍କ ମିଳନ ବିରହକୁ ନେଇ ତାଙ୍କ ରଚିତ ପଦାବଳୀରେ ଭକ୍ତିର ପାବନତା ସହିତ ସାଧାରଣ ମଣିଷର ଚିରନ୍ତନ ଅନୁଭୂତିର ମନୋଜ୍ଞ ଆଲେଖ୍ୟ ଅଙ୍କିତ ହୋଇଯାଇଛି। ନାନା ରାଗରାଗିଣୀରେ ଅଭିଜ୍ଞ, ସ୍ୱର ତାଳରେ ଦକ୍ଷ ଓ ବିଦ୍ୱାନ ହୋଇଥିବାରୁ ଭାବ, ଭାଷା ଓ ଛନ୍ଦାନୁସାରୀ ସ୍ୱର ସମ୍ଭାରରେ କବିତାଗୁଡ଼ିକ ମଣ୍ଡିତ ହୋଇଛି। ସେ ଓଡ଼ିଆ ଭାଷାରେ ଅନେକ ଗଜଲ ଓ କବାଲି ରଚ଼ନା କରିଛନ୍ତି। ତାଙ୍କର ଗୀତି କବିତାଗୁଡିକ ଜାତୀୟତାର ମନ୍ଦ୍ରବାଣୀରେ ଯେପରି ଉତ୍ତାଳ ସେଇଭଳି ବିଭୁପ୍ରେମର ଗଭୀରତାରେ ସ୍ନିଗ୍ଧ, ମାନବ ପ୍ରୀତିରେ ଭାସ୍ୱର, ପ୍ରକୃତିର ଚ଼ାରୁ ଆଲେଖ୍ୟରେ ମନୋଜ୍ଞ ଓ ଜୀବନର ଗଭୀର ତତ୍ତ୍ୱବୟାନରେ ଉର୍ଜ୍ଜସ୍ୱଳ। ସମୟ ଉପଯୋଗୀ ସ୍ୱର ବିନ୍ୟାସ ଓ ଲଳିତ ଶବ୍ଦ ଗୁମ୍ଫନରେ ତାଙ୍କର ଗୀତିଗୁଡ଼ିକ ଅପୂର୍ବ ଭାବ ତନ୍ମୟତାରେ ଶ୍ରୋତାଙ୍କୁ ଅତୀନ୍ଦ୍ରିୟ ରାଜ୍ୟକୁ ନେଇଯାଏ। ଯାତ୍ରା ସଙ୍ଗୀତ, ରେକର୍ଡ ସଙ୍ଗୀତ, ଅନ୍ୟାନ୍ୟ ଗୀତି କବିତା ଓ ପାଲା କାବ୍ୟ କ୍ଷେତ୍ରରେ ତାଙ୍କ ଐଶ୍ୱରିକ କବିତ୍ୱ କଳାର ବିଚ଼ିତ୍ର ବିଭୂତିର ବୈଭବ ଅନାୟସରେ ଲକ୍ଷ୍ୟ କରି ହୁଏ। ସେ ଯଥାର୍ଥରେ ଥିଲେ କବିମଞ୍ଜୁଳ। ଶିଳ୍ପୀ ପ୍ରାଣର ଅକୃତ୍ରିମ ପରିଚ୍ଛନ୍ନ ପ୍ରକାଶ ହେତୁ ତାଙ୍କ ସୃଷ୍ଟି ଏତେ ମନୋଜ୍ଞ ହୋଇପାରିଛି। ଗଦ୍ୟ ରଚ଼ନା କ୍ଷେତ୍ରରେ ସେ ସମ୍ପୂର୍ଣ୍ଣ ଭାବରେ ଆଧୁନିକ ହେଲେ ମଧ୍ୟ କବିତା ଓ କାବ୍ୟ କ୍ଷେତ୍ରରେ ରୀତି ପରମ୍ପରାର ଉତ୍ତର ଦାୟାଦ। ପୋଷାକ ଓ ଚ଼େହେରାରେ ସମ୍ଭ୍ରାନ୍ତ ଦେଖାଗଲେ ମଧ୍ୟ ସ୍ୱଭାବ ଓ ବ୍ୟବହାରରେ ସେ ଯେପରି ତରଳ ଓ ଚ଼ପଳ ଥିଲେ ସେଇଭଳି ତାଙ୍କ ଶିଳ୍ପୀ ପ୍ରତିଭା ଆଧୁନିକ ଗଦ୍ୟର ରଜୁତା ସହିତ ରୀତି କବିତ୍ୱର ଗାମ୍ଭୀର୍ଯ୍ୟ ଓ ମାଧୁର୍ଯ୍ୟ ସମ୍ମିଶ୍ରଣରେ ଅନବଦ୍ୟ।



# ପରିଶିଷ୍ଟ

## କ

## ଅତୀତର ଗୋଟିଏ ସ୍ମରଣୀୟ ପୃଷ୍ଠାରୁ

୨୦ଶ ବର୍ଷ - ୬ଷ୍ଠ ସଂଖ୍ୟା, ଝଙ୍କାର



'ବନ୍ଧୁବ ମିଳନ'ର ଏକ ଶିଳ୍ପୀ-ସମ୍ମିଳନୀରେ ସଭାପତିତ୍ୱ କରି ସ୍ୱର୍ଗତ କବି କୃଷ୍ଣପ୍ରସାଦ ବସୁ ଭାଷଣ ଦେଉଛନ୍ତି। ତାଙ୍କର ଦକ୍ଷିଣ ଦିଗରେ ଉପବେଶନ କରିଛନ୍ତି ଡକ୍ଟର ହରେକୃଷ୍ଣ ମହତାବ ଓ ସ୍ୱର୍ଗତ ଲକ୍ଷ୍ମୀନାରାୟଣ ସାହୁ।

ଗତ ଅଗଷ୍ଟ ତା୧୮ରିଖ ଦିନ ଓଡ଼ିଶାର ସାହିତ୍ୟିକ ଓ ସାମାଜିକ ଜୀବନରେ ଯୁଗାନ୍ତକାରୀ ଆଲୋଡ଼ ସୃଷ୍ଟି କରିଥିବା 'ଆଖଡ଼ା ଘରେ ବୈଠକ'ର ଲେଖକ କବି କୃଷ୍ଣପ୍ରସାଦ ବସୁଙ୍କର ଦେହାନ୍ତ ହୋଇଯାଇଛି। ତାଙ୍କର ଅମରପ୍ରତିଭା ପ୍ରତି ଗଭୀର ଶ୍ରଦ୍ଧାଞ୍ଜଳି ଅର୍ପଣ କରିବା ସଙ୍ଗେ ସଙ୍ଗେ 'ଝଙ୍କାର' ସ୍ୱର୍ଗତ ଆତ୍ମାର ସଦ୍‌ଗତି କାମନା କରୁଛି।

## ପରିଶିଷ୍ଟ - ଖ

Extract from the "Report on the
Administration Report of Patna State for the year 1944-45.

* * * * * *

### Chapter VII - Education

Page - 151.

**600. Music-** Music was taught as an extra curricular subject in the Prithwiraj High School, Boys middle English School and Girls Middle English School, Balangir with effect from 26-11-42 to 3-1-45 by Mr. K. P. Bose, a well known music expert of Orissa, But the music class has been closed since 11-4-1945 when Mr. Bose resigned due to ill health and went away. The post is lying vacant. 40 boys and 30 girls were being trained in vocal and instrumental music.

******



## ପରିଶିଷ୍ଟ - ଗ

### Reminiscences of an Ideal Maharaja

(Extract from the article entitled "Reminiscences of an Ideal Maharaja (i.e. late Rajendra N. Singh Deo of Patna State) wtitten by Sri Tibikram Mishra, Secretary, Koshal Kala Mandal, Balangir, a portion of which was published in the Souvenir published on the 23rd February, 1976 in memory of the late Rajendra Narayan Singh Deo, the former Chief Minister of Orissa.)

* * *

x x x

In the year 1937 Sri R. N. Singh Deo was invited to preside over the Annual function of the Utkal Sahitya Samaj held at Cuttack. An address of welcome was presented to him. The presidential address speaks of his vastness of knowledge and broad outlook which the Maharaja Saheb had. In that conference the Maharaja came to know Kavimanjula Sri Krushna Prasad Bose of Jajpur who has presided over the meeting on the day of music performances. Both had a talk regarding the all round development of litterature, drama, dance, music etc. He has requested Sri Bose to visit his place once. After some time the famous musician went to Balangir and gave a music demonstration in the local club. The Author (Sri Tribikram Mishra) had organised the meeting which was presided over by the Maharaja Saheb. Sri Bose sang a song composed by himself. viz.-

"ଆରେ ରସଗୋଲା, କା ଆଗେ କହିବି ଆଜି ଏକି ହେଲା
ତୋଠେଇଁ ରସନା ରସିଗଲା, ଭାଲୁଭାଲୁ ତୋ ଗୁଣ
ପଞ୍ଚଧାର ପ୍ରମାଣ ପ୍ରପଞ୍ଚ ଲାଳଧାର ଲେସିଗଲା ।୧ ।
କ୍ଷୀର ମୋହନ ଚିର ଦିନ ମନମୋହନ ସ୍ୱଭାବେ ସୁନ୍ଦର ସୁଚତୁର
ଯେଣିକି ଚାହିଁବ ତେଣେ ଯୋଖି ଯିବ ଛଣାପିୟୂଷରେ ତନୁବୋଳା ।୨ ।

ରାଜଭୋଗ ନାମେ କୁଳଟା କି, ଗର୍ଭେ ଧରିଥାଏ ଛୁଆଟିକି,
କହିବାକୁ ଲାଜ ଏଡେ ଏଡେ ରାଜ ଚୁମ୍ବନ ସମ୍ଭୋଗେ କଲେ ଲୀଳା ।୩।
କି ଯୋଗେ ଆସିଲେ ଲେଡିକ୍ୟାନିଂ, Kissed you quick a fancy thing
ସେ ଦିନୁ ତୋ ନାମେ ବାଇଦ ବାଜିଲା ଦେଶେ ଦେଶେ ଯଶ ବ୍ୟାପିଗଲା ।୪।

In the above song poet and musician Sri Bose has given a very attractive, imaginary and humorous description of different categories of sweets of cheese preparation available in the common market which the people generally take. In short the inner idea of the poem is that at the sight of Rasgola saliva comes out from the mouth. "Khirmohan" is cleaver and beautiful to look at. "Rajabhoj" is just like a prostitude having a small baby in the womb as it contains a Raisin (Khismis) in its inner middle part. It is a shameful thing to express that big, bigger and biggest Rajas and Maharajas enjoy it and derive great pleasure through kissing. Spong is just like a lame man who comes after crossing over the mountain and loiters at the gate of the Royal Palace. Ladikani which is generally available in Calcutta city took such name in the past at the time of arrival of Mrs. Canning, wife of Lord Canning after she tested and partook it and remarked that it was a very good variety of sweet.

After the close of the song the Maharaja Saheb stood up, laughed a hearty laugh (such type of laugh was never seen before) and said "It is too late now. I feel that all of us are feeling hungry. I am also hungry. Saliva is coming out from my mouth. Others may be feeling likewise. I give hearty thanks for his beautiful and interesting performance", Next day Sri Bose received an order wherein he was appointed as Music Instructor of many educational institutions. Sri Bose had remained at Balangir for a period of more than two years and devoted his time for the sake of music, drama, dance etc. in the whole of Patna State.

## ପରିଶିଷ୍ଟ - ଘ

### ସମ୍ବଲପୁର କଲେଜର ପ୍ରିନ୍ସିପାଲ - ଡ. ଶ୍ରୀଯୁକ୍ତ ବାବୁ ମାୟାଧର ମାନସିଂହଙ୍କ ପ୍ରତି ଖଣ୍ଡେ ପତ୍ର କୃଷ୍ଣବସୁଙ୍କର

୮.୯.୧୯୫୦

ମନେହେଲା ପଦେ ଲେଖିବି କବି ମାୟାଧରଙ୍କୁ
ଉତ୍କଳ ଭାରତୀ ଗଗନେ ଶୁଭ୍ର କଳାକରଙ୍କୁ
ଭାନୁଙ୍କୁ ପ୍ରଦୀପ ଦେବାର ଜାହ୍ନବୀଙ୍କୁ ଉଦକ
କାଳେ କାଳେ ଅଛି ଏ ରୀତି ନାହିଁ ତହି ପାତକ
ବାହାରେ ହେଉ ସେ ହାକିମ ପଛେ ମୁଁ ପରିଚାର
ଅନ୍ତର୍ଗତେ ସେହୁ ଯୁବକ ମୋର ସ୍ନେହ ଆଧାର
ଶ୍ରୀମନ୍ତ ଧୀମନ୍ତ ହେଉ ସେ ହେଉ ବଡ ଷ୍ଟିମାର
ଦରିଆରେ ମାରୁ ଚକିରି ପଛେ କରୁ ସଞ୍ଚାର
ସେ ପଛେ ଚଳାଉ ଇଂଜିନି ନୀଳ ଅମ୍ବୁଧି ଜଳେ
ତା ଧୂଆଁ ପଛକେ ଖେଳୁ ଗୋ ଦୂର ବାରିଦତଳେ
ପଛେ ଥାଉ ତାର କମ୍ପାସ ଆଉ ବାରୋମିଟର
ହେଉ ପଛେ ମୋର ଦଦରା ପାଳଧୁଆ କାଠର
ତାର ପଛେ ଥାଉ କମାଣ ପେରିମିଟର ତଳେ
ବିଜୁଳି ବତୀର ଆଭାରେ ପଛେ ଜଳୁ ଉଜ୍ଜ୍ୱଳେ
ଛୁଞ୍ଚ ମୁନଠାରୁ ମୁନିଆ ଯେହୁ ବୁଦ୍ଧି ବିଧାନେ
ଜ୍ଞାନ ବିଜ୍ଞାନର ମାରଗେ ନୂତନର ସଂଧାନେ
ସେ ଜଳେ କରୁଛି ପାରି ସେ ତରଣୀରେ ବସାଇ
ଦେଖାଇ ଅନ୍ତର ଖାତାକୁ କୋଟି ଆଦର ପାଇ
ତା ନାବ ଭାସୁଛି ତାରକା ତଳେ ଚିର ସୁନ୍ଦର
ଦରିଆ ବକ୍ଷରେ ଶିଆର କାଟି ଶୁଭେ ଘର୍ଘର।
ସେ ଧ୍ୱନି ବାଜୁଛି ମୋ କାନେ ସାତଦରିଆ ପାରି
ବେତାର ଯନ୍ତ୍ରର ଅନ୍ତରେ ସିନା ଯାଏ ଉଚ୍ଚାରି
କୋଟି ହୀରା ଲୀଳା ମାଣିକ ପଛେ ଭଣ୍ଡାରେ ଥାଉ
ମୋ ଦିନ ପଛେ ଯାଉଥାଉ ଖାଇ ମାଣ୍ଡିଆ ଜାଉ।
ମୋର ହୁଲି ଡଙ୍ଗା ବୁଲୁଛି ସିନା ଗୋହିରି ତଳେ
ଏକା ଜାତି ଏକା ଧୀବର ଆମେ ମହି ମଣ୍ଡଳେ।

ଲେଖନୀ କବିର କବିତା ପରପରାଣ ପାଇଁ
ପର ଧମନୀର ନର୍ତ୍ତନେ କବି ଅମର ଥାଇ।
ବାବୁ ତୁମ୍ଭ ଲାଗି ରହିଛି ବଡ ଜଟିଳ ବ୍ରତ
କଲେ ଏକା ତୁମ୍ଭେ କରିବ ମୋତେ ହୁଏ ପରତ
ଦିନେ ତୁମେ ବସି ଗାଅନ୍ତ କଣ୍ଠେ ରାଧାଚରିତ
ବିରହିଣୀ ଆଖି ପାଣିରେ ବୁଡିଯାଆନ୍ତା ଚିତ୍ତ
ଯୁଗ ଯୁଗାନ୍ତର ଅମର ଗୀତେ ରସାଣ ଦେଇ
ପରଶି ଦେବାକୁ ଏ ଯୁଗେ ଆଉ ନାହାନ୍ତି କେହି
ବିଲାତି ବିହନ ବୁଣିବ ତହିଁ ନାହିଁ କି ମନା
ତିନ୍ତବ ନାହିଁ ଏ କଳିଜା ରାଧାଗୋବିନ୍ଦ ବିନା।
ଗଢିଲଣି ଯେଉଁ ଚଉଁରା ଦିଅ ଖଣ୍ଡିଏ ମାଳା
ଭାବ ଅଗୁରୁ ଚନ୍ଦନରେ ଥିବ ଲୋତକ ବୋଳା
ଅକ୍ଷରେ ଅକ୍ଷରେ ଝରିବ ଯେହ୍ନେ ମୁକୁତା ବିନ୍ଦୁ
ସାବଧାନେ ଗତି କରିବ ବଡ ଅତଳ ସିନ୍ଧୁ
ତୁମ୍ଭେ ଏକା ବୁଡିପାରିବ ମୋର କହୁଛି ମନ
ଗୋସ୍ୱାମୀ ଗ୍ରନ୍ଥକୁ ମନ୍ଥନ କରି ଦିଅ ରତନ
ଅଭିମନ୍ୟୁ ଥିଲେ ରୋପାଇ ଜଳଦେଲେ 'ଗୋପାଳ'
ଶୁଖିଯିବ ସେହି ଉଦ୍ୟାନ ଶୀଘ୍ର ସଲିଳ ଢାଳ
ସରଳ ଲଳିତ ପ୍ରାଞ୍ଜଳ ଭାବେ ପ୍ରାଣ ମିଶାଇ
ବାଳବୃଦ୍ଧ ଶିଶୁ ପଶୁଙ୍କୁ ଦିଅ ପ୍ରେମେ ଭସାଇ
କଲେଜ ପାଠୁଆ ପଣ୍ଡିତ ଅବା ଧନୀ ନିର୍ଦ୍ଧନ
ପ୍ରତି ଜନେ କର କୈବଲ୍ୟ ସୁଧା ପରିବେଷଣ
ଚଣ୍ଡୀଦାସ ବିଦ୍ୟାପତିଙ୍କ ଗ୍ରନ୍ଥ ହଂସଦୂତକୁ
ପ୍ରଣମି ଚଳାଅ ଲେଖନୀ ଧର ଏହି ବ୍ରତକୁ
କବିତ୍ୱ ପଣ ବିକଣିଛି ମହାଜନ ସଙ୍ଗତେ
ରାସ ସ୍ଥଳୀ ଧୂଳି ବୋଳିବ ଏହା ଦେଖା ଜଗତେ
ହସିବ ନାହିଁ ଏ ବଚନ ଶୁଣି କିରିକିରିକି
ସେହି ଡଙ୍ଗାଟିରେ ବସିକି ଯିବ ଆରପାରିକି।

ଶୁଭାନୁଧାୟୀ
କୃଷ୍ଣପ୍ରସାଦ ବସୁ
୮/୯/୫୦

## ପରିଶିଷ୍ଟ - ଡ

**Industrial and Agricultural Exhibition,**
**Patna State**
***The 3rd December, 1943.***

### ସୋନପୁର ମହାରାଜ ଶ୍ରୀ ଶ୍ରୀ ଶ୍ରୀମନ୍ ସୁଧାଂଶୁଶେଖର ସିଂହଦେବଙ୍କ ଉଦ୍ଦେଶ୍ୟରେ

(ସାବେରୀ-ଆଡ଼ତାଳି)

ସ୍ୱର୍ଣ୍ଣପ୍ରସୁ ସ୍ୱର୍ଣ୍ଣପୁର ନରାଧିପ ସୁଧାଂଶୁ ଶୁଭ୍ରକିରଣ,
ମାଖିବାରୁ ଆଜି ଏ ଶୁଭ ଉତ୍ସବ ଦେଲା ପ୍ରଭା ବିଚକ୍ଷଣ,
ହେ ଶୁଭଦ ! କଲ୍ୟାଣମୟ ଶୋଭନ
ମଣୁଛି ପାଟଣା ତା ଆହ୍ଲାଦବୀଣା ବାଜିବାର ଘନ ଘନ, ହେ ଶୁଭଦ ।
ଶିଳ୍ପ କୃଷିଧନେ ଧନିକ ଉଦ୍ୟାନେ ସ୍ୱର୍ଣ୍ଣପୁର ପାଏ ଥାନ
ମହାନଦୀ ତାର ପୀୟୂଷ ସମ୍ଭାର ସିଞ୍ଚୁଅଛି ଅନୁକ୍ଷଣ
ହେ ନରେଶ ! ଛାମୁଙ୍କ ସୁକୃତ ଫଳ
ସାରା ଉତ୍କଳର ପୁରପଲ୍ଲୀ ଦ୍ୱାର ମୁଖର କୀର୍ତ୍ତିପଟଳ, ହେ ନରେଶ ।
ଯଶୋଧର ! ତବ କରପଲ୍ଲବର ପରଶରେ ମହୀୟାନ
ହେଉ ଏହି କୃଷି-ଶିଳ୍ପ-ଅନୁଷ୍ଠାନ ପ୍ରଗତିର ଅଭିଯାନ
ହେ ରାଜେନ୍ଦ୍ର ! ପ୍ରକୃତିରଞ୍ଜନେ ବ୍ରତୀ
ପାଟଣା ମହୀମଣ୍ଡଳ ମଣ୍ଡନଙ୍କ କଳ୍ପନାକୁ ଦେଉ ଜ୍ୟୋତି ।

'କୃଷ୍ଣପ୍ରସାଦ'

## In Honour of
## D. D. Maharaja of Sonepur
### who opens the Exhibition.

O Prince of the gold producing Golden City, Thine touch of moonly light has glorified this sacred ceremony.

O harbinger of delight ! Harp of pleasure resounds in Patna.

Industry and agriculture have marked place for Sonepur in

the garden of riches and the Mahanadi with its sacred water, its land irrigates. Your Highness's benevolence is heard even in the distant corner of Orissa.

O Glorious, Touch of thine hands may glorify this Agricultural and Industrial Exhibition and may this give impetus to the designs of our H. H. Maharaja Rajendra Narayan Singh Deo, the benign Ruler of Patna.

***

**Industrial and Agrucultural Exhibition, Patna State**

***Dated Titilagarh the 3rd December, 1943.***

ଉଠ ଗୋ ଉତ୍କଳ କମଳା, ଧନଧାନ୍ୟ-ବରାଭୟ-ଦାୟିନୀ
ତବ ଶଙ୍ଖ-କମଳ-ଦଳବାରି ଢାଳ  କନକ-କଳସେ ଏହି ମେଦିନୀ।
ଜନନୀ ଗୋ, କେତେ ଯୁଗ ଗଲାଣି,
ସକରୁଣ ନୟନୁଁ ବଞ୍ଚିତ କଲଣି,
ବଣିକ କୃଷକ ଶିଳ୍ପି ମୁଖଶାଳା, ଉତ୍କଳ କଙ୍କାଳ ହେଲାଣି-
ଶୁଖିଲାଣି ମହୋଦଧି-ରତ୍ନଭଣ୍ଡାର,
ତୁଟିଲାଣି ସାଉଭାଜ୍ୟ ଶିଳ୍ପସମ୍ଭାର,
ବୁଡ଼ିଲାଣି ଚାରୁ କାରୁକଳା ଭାସ୍କର,
ସ୍ତିମିତ ହେଲେଣି ଦୀପାବଳି,
ଭାସୁନାହିଁ ବୋଇତ ନୀଳ ଅମ୍ବୁଧି ଜଳେ
ନାଚୁ ନାହିଁ ବୀରବୃନ୍ଦ ତାଳେ ତାଳେ
ମନ୍ଦିର ତୋରଣେ ବାଜୁ ନାହିଁ ବାଜଣା
ନୀରବ ମୁରଜ ଯେତେ ବୀଣା
ଚାହଁ ଗୋ କରୁଣ ନୟନେ ... ଆସନେ .....
ବସ ଗୋ ରଞ୍ଜିତବରନେ।
କଲ୍ୟାଣୀ କ୍ଷୀଣ ଅଭୟ ବାଣୀ ସଞ୍ଜୀବନ ଆଣି ଦେଲାଣି।।

'କୃଷ୍ଣପ୍ରସାଦ'

**Translation of the Oriya Song No. 1.**

Rise, oh Goddes of Fortune of Utkal! Thou art the giver of peace, wealth and security. Sprinkleth thou on this land the water from your conch and lotus. Oh Mother dear ! how many ages have passed we have been deprived of thy loving glance.

The country which was once very prosperous and a centre of trade and commerce and agriculture is now reduced to its miserable skeleton. The sublime sea (Mahodadhi) with its treasures of valuable jewels has gone dry and the days of industry are well forgotten. The culture of Oriya arts and sculpture have long disappeared. The lamps of glory are burning dim. The Utkal ships no longer ply on the ocean nor do the hearts of heroes dance on thyne. No sweet and rhythmical drums are heard at the temples and the instruments of musics are all dumb.

Oh Mother! cast a glance of favour still on us. May we restore the past glories. Sit thou in grandeur. Thine words though feeble bring a new inspiration on us.

**Krishna Prasad**

**Industrial and Agrucultural Exhibition,**
**Patna State, Titilagarh**
***The 3rd December, 1943.***

(Opening Song)

(ମିଶ୍ରବାହାର - ଏକତାଳା)

ହେ ନରଦେବତା କୁସୁମସ୍ତବକେ ଏ ଶୁଭବାସ ମଣ୍ଡିଳାଣି,
ପରଶମଣିର କିରଣ ଆଭାରେ ସୌଭାଗ୍ୟ-ପ୍ରଦୀପ ଜଳିଲାଣି।।
ଥିଲା ଯେତେ ବନ୍ୟ ଶ୍ୱାପଦ-ନିବାସ
ତହିଁ ଜନପଦ କଲ ପରକାଶ

ଶିଳ୍ପ ବାଣିଜ୍ୟର ବିପଣି ସମ୍ଭାର, ତବ କୀର୍ତ୍ତିଧୂପ ବ୍ୟାପିଲାଣି ।।
ଏହି ସେ ଯାହାର ଅତୀତ ଗୌରବ
ସୌଭାଗ୍ୟ ସିନ୍ଦୂର ଭାରତ ଲକ୍ଷ୍ମୀ-
ଲଲାଟେ ରାଜିଲା; ଦେଶେ ଦେଶେ ତାହା
ଗରଜି ଗାଇଲା ଭାରତୀ ବୀଣା,
ରମାଇ ଦେବଙ୍କ ପଦାଙ୍କ ରେଖାର-
ଗାର ଯାହାଙ୍କର ହୃଦ ଅଳଙ୍କାର
ହେ ନୟନାନନ୍ଦ ପାଟଣାମାତାଙ୍କ ! ଶୁଭ ଦୂର୍ବାକ୍ଷତ ବିଞ୍ଚୁଳଣି ।

'କୃଷ୍ଣପ୍ରସାଦ'

## Translation of the Oriya Song No. 2

Oh thou God-like prince! This auspicious day is perfumed with bunches of choiced flowers. The lamp of fortune is once again kindled with the rays of touchstone.

The places which were favourite abodes of the wild animals have been transformed into prosperous cities. The incense and fragrance of thy glory have saturated every corner of trade and commerce and industry.

Here is the place (the seat of Great Ramai Deo) whose glories of the past like a speck of vermillion decorated the forehead of Utkal Lakshmi (Goddess of Fortune) and whose glories were harped all over this country by Saraswati (Goddess of Learning).

Oh, Solace of Patna! Thou preserveth the footprints of Ramai Deo the founder as a necklace on thy heart. We bestow our love, reverence and goodwill.

**Krishna Prasad**

**Industrial and Agricultural Exhibition, Patna State**

***Dated Titilagarh the 3rd December, 1943.***

***for the opening ceremony of***

***The Lala Raj Kanwar Park.***

ସଚୀବ ଉଦ୍ୟାନେ ଫୁଟୁ ଫୁଲ, ଫୁଟୁ ଫୁଲ
ଚହଟି ଉଠୁ ତା'ପରିମଳ-
କର୍ମ୍ମମୟ ଏ ଜଗତେ
ବିଶ୍ୱର ପ୍ରଗତିପଥେ
ଥାପିଲେ ପାବଛ ଯେ-
ପିନ୍ଧନ୍ତି ଏ ଫୁଲହାର ।
ଯାହାଙ୍କ ମନ୍ତ୍ରଣା ବଳେ
ଆଦର୍ଶ ଶାସନ ଚଳେ
କର୍ମବୀର କନବାର
ସୁକର୍ମ ସ୍ମୃତି ତାଙ୍କର ।
କର୍ମନିଷ୍ଠ ସଚିବଙ୍କ
ସେବାର ଶୁଭ୍ର ଆଲୋକ
ପ୍ରକଟାଇ ପରା ଗୁଣୀନ୍ଦ୍ର ରାଜେନ୍ଦ୍ର
ଲଭିଲେ ହୃଦେ ପୁଲକ -
ସେବକ ବତ୍ସଳପଣେ
ଶୁଭକ୍ଷଣେ ଫୁଲ୍ଲମନେ
ଦେଲେ ଯେଉଁ ଉପହାର
ଅତୁଳ ଅମୂଲ ମୂଲ ।

'କୃଷ୍ଣ ପ୍ରସାଦ'

**Translation of the song composed for the Opening ceremony of the Lala Raj Kanwar Park at Titilagarh.**

Let flowers bloom in this Minister's Garden and let their fragrance scatter.

Let those who lay the stepping stones for the advancement

of the progressive world enjoy the garlands.

This is in high appreciation of the merits of Mr. Kanwar, the ideal worker, whose prudent and wise counsel cause the model administration to prevail in Patna.

Placing in view of all, the bright lustre of his dutiful minister, our merit-seer Maharaja finds delight.

In regard to a sincere affection for his humble servants, the Maharaja bestows in this auspicious occasion a reward which is peerless and valuable.

**Krishna Prasad**
U.S. Press, Cuttack

****

**Industrial and Agricultural Exhibition,**
**Patna State, Titilagarh**
***The 3rd December, 1943.***

ଜନପଦ ଜନଗନ ବନ୍ଦନ କରତ ଲାଲା ରାଜା କନ୍‌ବାରକା
ପତ୍ତନ ପାଟନା ଭୂପତିକା ସଚିବ ଉତ୍ତମ ଦରବାରୁକା ।
ବହୁମୁଖୀ ବିଦ୍ୟାଭାଷନମେ ପ୍ରତିଭା ଅଦ୍ଭୁତ ପାଠକ୍‌କା
ପଞ୍ଚନଦଭୂମି-ନନ୍ଦବିଧାୟକ ଜ୍ଞାନସ୍ତବକ ଗ୍ରନ୍ଥଲେଖକ୍‌କା ।
ଜଟିଲ ଜାଗିର୍ ସ୍ୱତ୍ୱ ମୀମାଂସା ଆପ୍‌କା ଖ୍ୟାତି ଗବାଲିୟରକା
ଶିବିର ଶାସନନୀତି ପ୍ରଶଂସିତ ନୀତିବିଦ୍ୟା-ବିଶାରଦକା ।।
ପରଶମନିକା ଜ୍ୟୋତି ଲଗାୟା ଆପ୍‌କା ଧନ୍ୟ ବିଚାରକ୍‌କା
ରାୟ ବାହାଦୁର ଉପାଧି ସୁନ୍ଦର ଗୌରବ ଭାରତ ସର୍‌କାର୍‌କା ।।
ପରମ ବିବୁଧ ଜନନାୟକ୍‌କା,
ସାରା ଭାରତ ବଖାନ କରତ ସୁଲଲିତ ସୌରଭ ଆପ୍‌ହିକା ।।
ଉଦ୍ୟାନ ଉଜ୍ଜ୍ୱଳ ଆପ୍‌ହିକା ।।

**'କୃଷ୍ଣ ପ୍ରସାଦ'**

**The People at large praise the sterling virtues of the popular Chief Minister of Patna**

A worthy son of Punjab who is the author of "Jnyanastabak" is esteemed with reverence.

His compilation of the sound laws regarding the complex rights and privileges of the Jagirdars of Gowaliar and framing of intricate Cantonment laws at Punjab have been highly appreciated by the people as well as by the British Government which has rightly conferred upon him the title of Rai Bahadur in recognition of his services both in British India and in States. He is prudent and a good statesman of all India fame.

This garden is dedicated in his honour.

**Krishna Prasad**

**Industrial and Agricultural Exhibition, Patna State**

***Dated Titilagarh, the 3rd December, 1943.***

**Bd. D. D. Raja Sahib of Bod.**

***- Opening ceremony of the Tile Works.***

ଭଞ୍ଜାକୁଳାଚଳରଞ୍ଜନ ତବ ଅରୁଣ କିରଣ ପ୍ରସାରି
ଫିଟାଅ ମନ୍ଦିରଦ୍ୱାର ଆହେ ଶିଳ୍ପର ପୂଜାରୀ!
ବାଷ୍ପ-ବିଦ୍ୟୁତ-ଯନ୍ତ୍ର-ଯୁଗର ମନ୍ତ୍ରସାଧନା ସଙ୍ଗେ
ରଞ୍ଜିତ ହେଉ ନବୀନ ରଙ୍ଗ ପ୍ରାଚୀନ ଭାରତ ଅଙ୍ଗେ।
ବିଶ୍ୱବିଭବ ଉପାଦାନମାନ ଯାର ଯହିଁ ଯେତେ ସୁନ୍ଦର
ନ ପାଇ ହୋଇଛୁଁ ଲାଞ୍ଛିତ ସିନା ଯୁଗୋଚିତ ଯେତେ ହୁନ୍ଦର।
ସେପଥେ ସେମାନେ ରେଣୁକଣା ଦେଲେ କାଟିଲେ ନୂତନ ଗାର
ହେଉନ୍ତୁ ପଛକେ ଗୁଣ୍ଡୁଚିମୂଷାଏ ସେହୁ ପୂଜ୍ୟ ଚରାଚର।
କିଏ ଭାବିଥିଲା ପଲ୍ଲୀ ଶାକ୍‌ଚିରେ ଫିଟିବ ଟାଟାନଗର
ଆଜି ସେ ଗୌରବ ଭାରତବାସୀଙ୍କ ବିଶ୍ୱରେ ନତଶିର।
ପ୍ରଜାକୂଳଙ୍କର ଶ୍ରୀସମ୍ପଦବିଦ୍ୟାବର୍ଦ୍ଧନେ ବଳାଇ ମନ

ଶ୍ରୀମନ୍ ମହାରାଜ ରାଜେନ୍ଦ୍ର ସିଂହଙ୍କ ଆଜ୍ଞା ଇଙ୍ଗିତ ପ୍ରମାଣ।
ଜୀବନମଲ୍ଲଙ୍କ ଜୀବନର ଆଶା ନିଶ୍ଚେ ହେବ ପୁଷ୍ପମୟ,
ପାଟଣାମାତାଙ୍କ ଦୂର୍ବାକ୍ଷତ କେବେ ନୋହିଛି ନୋହିବ କ୍ଷୟ।

'କୃଷ୍ଣ ପ୍ରସାଦ'

**English translation of the song prepared in connection with the opening ceremony of the Rajendra Tile Works Ltd.**

Oh. thou beauty of the lofty Bhunj Range, scatter thy rays. Oh, thou worshipper, open the doors of this temple of Industry.

India in the past was engrossed in the improvement of the spiritual world and thus neglected the amenities and facilities of the material world specially afforded by the development of science. Blend the both and tinge the modern hue on the ancient body of culture. It is for this lack on our part of assimilating the world-wide age-like element of science and culture that we are abashed. Those who contribute even a particle of dust and who demark a line for the high-way of success, they are noble and objects of esteem, may they be as small as squirrels.

Whoever thought that the poor and little village Sakchi would once transform into Tatanagar one of the big and renowned Industrial centres of the world.

It is only due to the desire for the benefit of his subjects, inspiration and guidance of H. H. Maharaja Rajendra Narayan Singh Deo, the Ruler of Patna that it was possible to open this (Tile factory) today.

The aim and ambition of Jeewanmall Jee wil surely be crowned with success as the benediction of mother Patna has never been in vain.

**Krishna Prasad**
U.S. Pres, Cuttack



**ପରିଶିଷ୍ଟ - ଛ**

# ଓଡ଼ିଆ ସାହିତ୍ୟ ଏକାଡେମୀ

## ମାନପତ୍ର

ମାନନୀୟ ଶ୍ରୀଯୁକ୍ତ କୃଷ୍ଣପ୍ରସାଦ ବସୁ ମହୋଦୟ,

ଉତ୍କଳ ଭାରତୀଙ୍କ ଆରାଧନାରେ ଭବଦୀୟ ସମଗ୍ର ଜୀବନ ଯାପିତ ହୋଇଅଛି। ଆପଣ ସାହିତ୍ୟିକ ଜୀବନର ପ୍ରାରମ୍ଭରୁ ଅନୁଭବ କରିଛନ୍ତି ଯେ, ଓଡ଼ିଶାର ପୁରପଲ୍ଲୀରେ ଲକ୍ଷ ଲକ୍ଷ ଲୋକଙ୍କ ପାଇଁ ସାହିତ୍ୟ ରସ-ପରିବେଷଣର ବ୍ୟବସ୍ଥା କରାନଗଲେ ସମଗ୍ର ପ୍ରଦେଶରେ ଯଥାର୍ଥ ସାରସ୍ୱତ ବିକାଶ ସମ୍ଭବପର ହେବ ନାହିଁ। ସେଥିପାଇଁ ପ୍ରାଚୀନ ଓଡ଼ିଆ କବିମାନଙ୍କର କାବ୍ୟ-କବିତାର ସୂତ୍ର ମାତ୍ର ଗ୍ରହଣ କରି ଆପଣ ଅଭିନବ ଭଙ୍ଗୀରେ ପୁରପଲ୍ଲୀର ସାହିତ୍ୟ-ପିପାସା ଚରିତାର୍ଥ କରିବା ପାଇଁ ଉଦ୍ୟତ ହୋଇଛନ୍ତି। ଆପଣଙ୍କର ଅଗଣିତ ଗୀତ, ନାଟକ ଓ ଗୀତାଭିନୟ ପୁରପଲ୍ଲୀର ଗାୟକମାନଙ୍କର ପରମ ସହାୟକ ହୋଇଛି। ପ୍ରାଚୀନ କାବ୍ୟ ପୁରାଣମାନଙ୍କରୁ ଶିକ୍ଷଣୀୟ ତଥା ଉଚ୍ଚ ଆଦର୍ଶପୂର୍ଣ୍ଣ ଉପାଖ୍ୟାନମାନଙ୍କର ଅବଲମ୍ବନରେ ଆପଣ ଜନସାଧାରଣଙ୍କ ଲାଗି ଯେଉଁ ସବୁ ରଚନା କରିଛନ୍ତି, ବର୍ତ୍ତମାନ ବିଭିନ୍ନ ପାଲା-ଗାୟକମାନଙ୍କଠାରୁ ଆରମ୍ଭ କରି ତଦନୁରାଗୀ ସାଧାରଣ ପାଠକ ପର୍ଯ୍ୟନ୍ତ ଅନେକଙ୍କର ଉପଭୋଗ୍ୟ ସାହିତ୍ୟ ସମ୍ପଦରେ ପରିଣତ ହୋଇଛି। ଆପଣଙ୍କର 'ଆଖଡ଼ା ଘରେ ବୈଠକ' ପରି ରସାଳ ରଚନାରେ ନୀତି ଓ ଆଦର୍ଶ ସଙ୍ଗେ ହାସ୍ୟରସର ଅଖଣ୍ଡ ଧାରା ପାଠକର ଅନ୍ତରକୁ ପ୍ରୀତି ମଧୁର କରିଥାଏ। ଆଜି ଏହି ନିଖିଳ ଉତ୍କଳ ଲେଖକ ସମ୍ମେଳନରେ ଆପଣଙ୍କୁ ସମ୍ବର୍ଦ୍ଧନା ଜ୍ଞାପନ କରି ଓଡ଼ିଆ ସାହିତ୍ୟ ଏକାଡେମୀ ନିଜକୁ ଗୌରବାନ୍ୱିତ ମନେ କରୁଛି।

ଭୁବନେଶ୍ୱର
୨୫.୧୨.୬୧

ଶ୍ରୀ ହରେକୃଷ୍ଣ ମହତାବ
ସଭାପତି
ଶ୍ରୀ ଗୌରୀ କୁମାର ବ୍ରହ୍ମା
ସମ୍ପାଦକ

## ପରିଶିଷ୍ଟ - ଛ

# କବିମଞ୍ଜୁଳ କୃଷ୍ଣପ୍ରସାଦଙ୍କ ରଚନା ସମ୍ଭାର

### ଖଣ୍ଡ କାବ୍ୟ

ବାମନାବତାର
ପାଞ୍ଚାଳୀ ପଟ୍ଟାପହରଣ
ମେଘନାଦ
ବ୍ରାହ୍ମଣ
ଦାକ୍ଷାୟଣୀ
ପରିକ୍ଷିତ ବ୍ରହ୍ମଶାପ
ପାଦୁକା
କିଷ୍କିନ୍ଧ୍ୟା
କଚଦେବଯାନୀ
ଚଣ୍ଡାଶୋକ
ହରିଶ୍ଚନ୍ଦ୍ର
ଛତ୍ରପତି ଶିବାଜୀ
ଦେବବ୍ରତ
ନିମାଁଇ ସନ୍ୟାସ
ଶ୍ରୀ ଗୌରଗାଥା
ରାଜସୂୟ
କବି ନର୍ତ୍ତକୀ
ପ୍ରଭାସ ଯଜ୍ଞ
ନଳଦମୟନ୍ତୀ ୧ମ, ୨ୟ
ଜନ୍ମାଷ୍ଟମୀ
ପାତକୀ
କାମ୍ୟକ
ସାବିତ୍ରୀ
ମଧୁକୈଟଭ
ବସନ୍ତ ସେନା
ଶଙ୍କରାଚାର୍ଯ୍ୟ
ଖାଣ୍ଡବ ଦହନ
ଗାନ୍ଧୀ ଚରିତ୍ର
ଜାରା ଶବର
ପୁଷ୍ପାଞ୍ଜଳୀ
ବୈନେତୟ

### ନାଟକାବଳୀ

କାରାମନ୍ଦିର
କୃଷ୍ଣ ଚରିତ
ହରି ଅନ୍ୱେଷଣ
ସୀତାବନବାସ
ହରିଶ୍ଚନ୍ଦ୍ର
ଗୟାସୁର ବଧ
ବଭ୍ରୁବାହାନ
ମେଘନାଦ ବଧ
ଧ୍ରୁବଚରିତ
ଶକୁନ୍ତଳା

ବିଲ୍ୱମଙ୍ଗଳ
ନାରାୟଣ ବସନ୍ତ
ରମାଇ ଦେଓ
ହିମାଦ୍ରି ଢେମା
ମାତୃପୂଜା
ଉର୍ବଶୀ ଅଷ୍ଟବକ୍ର
ଜଡଭରତ
ତପସ୍ୱୀ
ରାମବନବାସ
ରାଷ୍ଟ୍ରପତି ଶିବାଜୀ
ଚଣ୍ଡାଶୋକ
ବିଶ୍ୱାମିତ୍ର
ଦକ୍ଷଯଜ୍ଞ
ଯଯାତି କେଶରୀ
ଭୂୟାଁ ପୀଢ
ମୁଚ୍ଛ କଟିକ
ମିଠା ମହୁରା
ସମାଜଚିତ୍ର

## ଗଦ୍ୟ ରଚନାବଳୀ

ଆଖଡ଼ା ଘରେ ବୈଠକ (ଝଂକାର)
ଫରୁଆବୃଟି (ଆସନ୍ତାକାଲି)
ମାମୁଁ (ଆସନ୍ତାକାଲି)
ନାନୀ (ଅଗ୍ରଣୀ)
ଗାନ୍ଧୀ ଦର୍ଶନ
ନାନା ବିଧି
ପଥଭ୍ରଷ୍ଟର ଜୀବନକଥା

## କେତେକ ପ୍ରବନ୍ଧ

ସବୁଥିରୁ ବଞ୍ଚିତ କରି (ଡଗର)
ମୁଁ କାହିଁକି ଲେଖେ (ଡଗର)
ଦଶହରା ଅର୍ଦ୍ଧଶତାବ୍ଦୀ ପୂର୍ବେ (ଆସନ୍ତାକାଲି)
ଉତ୍କଳୀୟ ରଙ୍ଗମଞ୍ଚର ଅତୀତ
(ରାଷ୍ଟ୍ରଭାଷା- ରଜତ ଜୟନ୍ତୀ ଗ୍ରନ୍ଥ)

## ଗୌଣସୃଷ୍ଟି (ପଦ୍ୟ)

ମହିମ୍ନ ସ୍ତବର ଅନୁଭୂତି (ଅନୁବାଦ)
କାଳ୍ୟପରାଧ କ୍ଷମାପନ (ଅନୁବାଦ)
ଦଣ୍ଡକ ସ୍ତବ (ଅନୁବାଦ)
ଫୁଲ ହାର (୧)
ଫୁଲ ହାର (୨)
ପ୍ରସାଦ ଗୀତାବଳୀ
ପ୍ରସାଦ ପଦ୍ୟାବଳୀ
ଅଳକନନ୍ଦା
ଅଛୁଁଆ ଝିଅ



## ପରିଶିଷ୍ଟ - ୯

# ବସୁ ସଙ୍ଗୀତ

।୧।

ଚାହାଁରେ ଅନ୍ଧ ନୟନ ଭବପାରାବାରେ
ପ୍ରବଳ ଦଳ ମେଘ ବରଷେ ଘନଧାରେ
ଅନ୍ତର ବାହାରେ।
କେ ରେତୁ ପଥହରା ଅନ୍ଧତିମିରେ
ନାହିଁ ଜ୍ୟୋତି ନାହିଁ ରେଖା,
ପଥ ଘାଟ ନାହିଁ ଦେଖା।
ଡାକରେ ନିରଂଜନ ପରମ କରୁଣା କରେ
ସକଳ ଗୁଣାକର
ନିଖିଳ ମୂଳାଧାର
ରଖିଲେ ରଖିବେ ଏକାଏ ଭୀମକାନ୍ତାରେ।

(ଏହି ଗୀତଟିକୁ କବିମଞ୍ଜୁଳ ବନ୍ଧୁ ଅଧ୍ୟାପକ ମୋହିନୀ ମୋହନଙ୍କ ଅନୁରୋଧରେ ରଚନା କରି ବ୍ୟାସ କବି ଫକୀର ମୋହନଙ୍କୁ ଶୁଣାଇ ଥିଲେ। ଫକୀର ମୋହନ କବି ମଞ୍ଜୁଳଙ୍କୁ ପୁତ୍ର ସମ ସ୍ନେହ କରୁଥିଲେ ଏବଂ ଏହି ଗୀତଟି ଶୁଣି ଅକୁଣ୍ଠ ଆଶୀର୍ବାଦ ଦେଇଥିଲେ।) *

●●●

---

* ୰ ବିଶ୍ୱେଶ୍ୱର ବସୁଙ୍କ ସଂଗ୍ରହ

## ଶ୍ରୀଯୁକ୍ତ ବିଶ୍ୱେଶ୍ୱର ବସୁଙ୍କଠାରୁ ସଂଗୃହୀତ

(୨)

ମୋତେ ଏପାରି ସେପାରି କର ନାହିଁ ହରି ପାରି କରି ଦିଅ ତରି
(ମୋର) କେଉଁଟା ଅନ୍ଧାର କେଉଁଟା ଆଲୁଅ ମନ ନପାରିଲା ଧରି
ଦୂରେ ଅତି ଦୂରେ
ସେହି ମହାସିନ୍ଧୁ ପରପାରେ, ମୋ ପରାଣ ପରସି ଆସୁଛି ଉଲାସି
ଉଚାଟ ସ୍ୱର ଲହରି
ପ୍ରଭୁ କର ଦୟା (ଦୂରେ) ଦିଶୁଛି କଳପବଟ ଛାୟା
କେ ଯେହ୍ନେ କହୁଛି ସେହି ଛାୟା ତଳେ ମିଳିବ ପିପାସା ବାରି ।୧।
(ଆହେ) ତୃଷିତ ହୃଦୟ ଚନ୍ଦନ
(ଆହେ) ପ୍ରେମ ପିଉଷ ବଦନ
ମୁଁ ତ ବଡ ଆଶା କରି ପହଁରି ଆସିଛି ଦରିଆରେ ଗଳି ମରି ।୨।

(୩)

ଦେଶଲାଗି ମନପ୍ରାଣ ଦିଅରେ ଢାଳି
ଭାଇ ଖାଇ ମାଡ ଗାଳି
ଜୀବନ ଯୌବନ ଧନ ଯାଉରେ ଜଳି
ଭାରତ ଜନନୀ ପଦେ ଦିଅ ଅଞ୍ଜଳି
ଆମ୍ଭ ଲାଗି ମା ପରା ହେଲା କାଙ୍ଗାଳି
ଦୁଃଖ ଦେଖିରେ- ଦୁଃଖ ଦେଖିରେ
ଅଧମ ସନ୍ତାନ କିଆଁ ଅଛୁ ସୁଖୀରେ ।୧।
ଗୋଲାମିଆ ବିଦେଶୀଙ୍କ ଚାକର ହେବ
ପଇସା ପାଇଁ କି ଭାଇ ଯୁତା ବୋହିବ
ଦୁଃଖ ଦେଖିରେ- ଅବିବେକରେ-ଖାଇଲା କଂସାରୁ
କର ନେବେରେ ତୋଳି ।୨।

---

*ସଙ୍ଗୀତ ଦୁଇଟି କବିଙ୍କର ସଙ୍ଗୀତ ଛାତ୍ର ଶ୍ରୀ ଏକାଦଶୀ ଜି, ଯାଜପୁର ସହରଙ୍କ ଠାରୁ ସଂଗ୍ରହ କରାଯାଇଛି। ନିଜେ କବି ନିଜ ସଙ୍ଗୀତକୁ ଯାତ୍ରା ଆରମ୍ଭରେ ବହୁସ୍ଥାନରେ ମଞ୍ଚଉପରକୁ ଆସି ଗାଉଥିଲେ।*

।୪।

ଅମା ଅନ୍ଧକାରେ ଆହେ ପୂର୍ଣ୍ଣ ଶଶୀ ମୋ ମନନୟନ ତାରା
ଭୀଷଣ ବିଜନ ଶୁଷ୍କ ମରୁଭୂମେ ଶାନ୍ତି ଦାୟୀନି ଧାରା ।।
ହୃଦୟ ମନ୍ଦିରେ ନବୀନ ଅତିଥି - ଜୀବନ ମରଣେ ସଦା ମୋର ସାଥି
ମାନସ ନିକୁଂଜ ବିହାର ରସିକ ସୁନ୍ଦର ପରାଣ ହାରା ।୧।
ରତନ ଆସନ ମଣ୍ଡିତ ଯତନେ - ଚାହିଁ ବସିଛି ତୃଷିତ ନୟନେ
ସ୍ୱାଗତ ବାନ୍ଧବ ଚିର ଆକାଙ୍କ୍ଷିତ ପୂଜିବି ଜୀବନସାରା ।୨।

।୫।

ଯେତେ ଡାକିଲି ହୃଦୟ ଖୋଲି ଶୁଣିଲ ନାହିଁ ଦେବତା
ଯେତେ କରିଲି ଚରଣେ ପୂଜା (ସବୁ) ପଦାଘାତେ ଦେଲ ଠେଲି ।।
ଫୁଲ ତୋଳି ଅଞ୍ଚଳେ ଭରିଲି - ଅଶ୍ରୁ ମୁକୁତା ହାରେ ଗୁନ୍ଥିଲି
ଯତ୍ନେ ବରଣ ମାଳାକୁ ସାଜି ତବ ଚରଣରେ ନିବେଦିଲି ।୧।
ମୋର ବେଦନା ଧୂପକୁ ଜାଳି - ଆରତି ମନ୍ଦିରେ ଗାଇଲି
ଶୂନ୍ୟ ଲାଗେ ପଥ ପଥେ ବଣା, ଆଶା ଭରସା ସବୁ ତେଜିଲି ।୨।
ଅଭିଶାପ ତବ ବର ବୋଲି ବକ୍ଷପାତି ଯେବେ ନେବି ତୋଳି
ଅଭିଶାପାନଳେ ହୃଦ ଦହି ତୁଚ୍ଛ କଲି ମୁଁ ଭକ୍ତି ଅଞ୍ଜଳି ।୩।

।୬।

ମନର ମଝିରେ ତୁମରି ଆସନ ବିମନ ହେବା ନ ସାଜେ
କଲପେ ହେଲା ମୁଁ ତଲପ ସାଜିଛି ଜଳପନ କିବା ରାଜେ ।।
ମରୁ ହୃଦୟରେ ମନ୍ଦାକିନୀ ଧାରା - ମନମଳିନତା ଦେଲା ଅପସରି
ନିଦାଘ ପବନେ ପୋଡାଇ ମାରିବ କାହିଁ ନକହିବି ଲାଜେ ।୧।
ଆସିବ ବାଦଲ ବଜାଇ ମାଦଳ- ଧୋଇ ନେଇଯିବ ଆଖିର କଜଳ
ସାଥି ହରା ପକ୍ଷୀ ବୁଲେ ମୁଁ ଏକାକୀ ଚିର ଫୁଲେ ଚିତା ଶେଯେ ।୨।

---

*କବିଙ୍କର ପ୍ରିୟ ଛାତ୍ର ୰ ଲକ୍ଷ୍ମୀଧର ସାହୁ (ବୈଦ୍ୟରାଜପୁର, ଯାଜପୁର)ଙ୍କଠାରୁ ସଂଗ୍ରହ କରାଯାଇଛି ।*

।୭।

ଜନନୀ ପଦକଞ୍ଜ ବନ୍ଦେ
ନୀଳଗିରିମାଳ ଭୂଷିତ ଚକ୍ରବାଳ ସୁପ୍ତ ସୁଧାଧାର ନିଗାଡି ଅଙ୍ଗେ
ମୁକ୍ତ ସିନ୍ଧୁ ଜଳ ଚୁମ୍ବେ ପଦତଳ - ନିତ୍ୟ ଢାଳି ଶତ ଲହରୀ ଶତଦଳ
ବିହଙ୍ଗ ମୁଖରିତ ବନାନୀ ବିକଶିତ
ତଟିନୀ କୁଳୁ କୁଳୁ ମଧୁର ଛନ୍ଦେ ।୧।
ତୀର୍ଥ କିରୀଟୀନି ଶତ ସୁଷମା ଖଣି
କଣ୍ଠେ ଝଳ ମଳ ଚିଲିକା ନୀଳମଣି
ଅନିନ୍ଦ୍ୟବରତନୁ ମହକେ ମହମହ
ଯଜାତି ନରସିଂହ କୀରତି ଗନ୍ଧେ ।୨।
ପୂଣ୍ୟ କେତନ ଶୂନ୍ୟେ ଉଡି ଧିରେ
ସାମ୍ୟ ମହାମନ୍ତ୍ର ପ୍ରଚାରେ ଗମ୍ଭୀରେ
ସ୍ତବ୍ଧ ମହାମନ୍ତ୍ର - ଓଁକାର ନିନାଦିତ
ଖଣ୍ଡଗିରି ଗୁହା ରନ୍ଧ୍ରେ ରନ୍ଧ୍ରେ ।୩।

।୮।

ଧୂଳି ହେବ ଦିନେ ଧୂଳି ଦେହ ତୋର ଧୂଳି ହେବ ଯଶରେ
ବୋଳି ହେଉ କେତେ ଅଗୁରୁ ଚନ୍ଦନ ରହିବ ନାହିଁ ତା ବାସରେ
ପିତା ମାତା ଭ୍ରାତା ସୁତ ସୁତା ଜାୟା
ଅଳିକ ମାୟାରେ ଭୁଲି ହେଲୁ ବାୟା
ନହୁଁଗଲୁ ଦଣ୍ଡେ ହରିପଦଛାୟା ରହିଲୁ କାମିନୀ କାଞ୍ଚନ ବଶରେ ।୧।
ଧୂଳିଖେଳ ଖେଳି ଶୈଶବ ଏଡିଲୁ
ଯଉବନେ ସଦା ଯୁବତୀ ଲୋଡିଲୁ
ପାତିଲାଣି କାଳ ଜରା ଜାଲ ଏଣେ (ତୋର)
ଜୀବନ ହରିଣୀ ପଡିବ ପାଶରେ ।୨।

---

*ଉପରୋକ୍ତ ସଙ୍ଗୀତ କବିଙ୍କର ପ୍ରିୟଛାତ୍ର ସାହାଣୀ ଅପେରାର ପରିଚାଳକ ଶ୍ରୀ ଫକୀର ଚରଣ ସାହାଣୀଙ୍କଠାରୁ ସଂଗୃହୀତ । (ଲେଖକର ଅପ୍ରକାଶିତ ଗବେଷଣା ନିବନ୍ଧ ଉତ୍କଳ ବିଶ୍ୱବିଦ୍ୟାଳୟ, ପାଠାଗାର)*

।୯।

ଟଣାଏ ଯା ଟାଣିଛ ମୋତେ ମୋର ଏତିକି ଟଣାରେ ଅବଳବଣା
ଟଣାଏ ଖଣ୍ଡକ ଅଧିକା ଟାଣିଲେ ହାଣିବ କଳିଜା ହୋଇବି କିଣା
ଉଣା ନୁହେଁ ତୁମ୍ଭ କରୁଣା, ଜାଣିଲିଣି ତୁମ୍ଭ ଭାବ ଫୁଲଣା।
ମୁଁ ପଛେ ଗୋ ହୁଏ ଅଲଣା, ତୁମ୍ଭେ ତହ ତହ ଆମ୍ବିଳ ପଣା
ତୁମ୍ଭେ ବଣସାରୁ ଓଳରାଇତା ମୁଁ କାଞ୍ଜୀଆ ତୋରାଣି ରାଇଜେ ଜଣା
ତୁମେ କାନ କୋଳି ବଇଞ୍ଚ କଣ୍ଟା, ସାତ ଚକଟା ମୁଁ ପୋହଳ ଘଣ୍ଟା
ହଲା ପଟା କଲେ ଜାଣିବ ଜାଣିଥା ଏ ଅରଣା ମଇଁଷି ଅତିମାରଣା।

।୧୦।

ସ୍ୱଦେଶ ସ୍ୱଜାତି ଶୁଣିଶୁଣି ଆମ କାନ ହୋଇଲାଣି ପିତା
ବାବୁମାନେ ତୁମ ପାଦରେ ଧରୁଛୁ ମାରନା ତିଳିଖିଚିତା
ପାର ଯେବେ ଆସ ହଳ ଲଙ୍ଗଳକୁ ପାର ଯେବେ ଶିଖା କିଛି
ପ୍ରାଣୀତତ୍ତ୍ୱ ଜୀବତତ୍ତ୍ୱ ରସାୟନ ଗଣିତ ପଦାର୍ଥ ବାଛି
ବାଷ୍ପ ବିଦ୍ୟୁତର ଜଳ ଅନଳର ଆଲୋକର ଗତି ରୀତି
ଧନବିଜ୍ଞାନ ହିସାବ ଖସଡା ପୂର୍ତ୍ତ ବିଭାଗର ନୀତି
ବଢେଇ କମାର ରାଜକାରିଗର କୃଷିର ବିଧାନମାନ
ଶିଳ୍ପ ବାଣିଜ୍ୟର ବାରତା ଶୁଣାଅ ପାଆନ୍ତୁ ନୂଆ ଜୀବନ
ସେହି କୋଣାରକ ଗଂଗା ଗୋଦାବରୀ, ମଲା ଗଲା କଥା ଶୁଣି
କେହି ନଜାଗିବେ, ଜାଗିଲେ ବି ହେଲେ ବଣା ହେଉଥିବେ ପୁଣି
ତୁଣ୍ଡ ବାଇଦରେ ପିଣ୍ଡ ନବଞ୍ଚିବ ବାସ୍ତବରେ ଅଣ୍ଡାଭିତ
ଟେବିଲି ଚଉକି ବାବୁଆନି ଛାଡ଼ି କାଦୁଅରେ ମାଟି ତାତ
ହଜାର ହଜାର ଜାହାଜରେ ଚଢ଼ି ପାଶ୍ଚାତ୍ୟ ଜ୍ଞାନ ବିଜ୍ଞାନ
ବୁଟ୍ ଖାଅ ପଛେ ଲାଜ ନାହିଁ ତହିଁ ଆଣ ନୂଆ ଉପାଦାନ
ଶତବରଷର ଶିକ୍ଷା ସାଧନାରେ ଆମେରିକା ଟେକେ ଛତା
କେତେଶ ବରଷ ଅସାଧ ସାଧନା ରଷ୍ ଟେକି ଦେଲା ମଥା
ଖତଗଡିଆରେ ସଢୁଥିବ କେତେ ମେଲାଇ ପଚରାଖାତା
କାହୁଁ ଆସେ ତେଜ, କାହୁଁ ସେ ପ୍ରତିଭା କାହୁଁରେ ଗଭୀର ଚିନ୍ତା

---

*କବିଙ୍କ ବ୍ୟକ୍ତିଗତ ନୋଟ୍‌ରୁ ସଂଗୃହୀତ*

*(ମାତୃପୂଜା ନାଟକ - ରଚନା କାର୍ତ୍ତିକ କୁମାର ଘୋଷ)   ସଙ୍ଗୀତ - କୃଷ୍ଣପ୍ରସାଦ*

।୧୧।

**ପ୍ରଥମ ଅଙ୍କ - ୨ୟଦୃଶ୍ୟ, ନାରଦଙ୍କ ମୁଖରେ (ମାତୃପୂଜା)**

କେତେ ରଙ୍ଗେ ସଜାଇଛୁ ବଜାର
ବୁଝିତ ପାରିଲି ନାହିଁ ମା ଏ ବାହାଦୁରି କାହାର।
ରବିଚିନା ଚୁନା ଚାଉଳ ସୋରିଷ
ତେଲ ଲୁଣ ଲଙ୍କା ପିଆଜ ମରିଚ
ଅଦା ବାଇଗଣ କଦଳୀ କଲରା କାଚକାଞ୍ଚନର ବେଭାର।
କେ ମୂଲ କରୁଛି କୁସୁମ ଗଜରା
କେ ଘେରି ବସିଛି ମା ଶୁଖୁଆ ପସରା
କେ ନେଉଛି ଚିନି କେବା କିରୋସନି କେ କିଣୁଛି ନିମ୍ବ ଅତର।
କେ ଦେଖୁଛି ଫେଡି ମାଣିକ୍ୟର ପେଡି
ଅଣ୍ଟାରେ ନାହିଁ ମା ଫଟାଏ କଉଡ଼ି
କେ କିଣୁଛି କ୍ଷୀର କେ ଘେନୁଛି ଖାର ଅଟ୍ଟହାସ ହାହାକାର,
କେ ଖାଇ ଯାଉଛି ମା ପୁରିମାଳପୁଆ
କାହା ଉଦରେ ମା ଓଦା କନା ଥୁଆ
ବାୟାଣୀ ତୋହର ଏହି ବଜାରର ବାୟା ହୋଇ ହେଲା ବାହାର।

।୧୨।

୪ର୍ଥ ଅଙ୍କ/ତୃତୀୟ ଦୃଶ୍ୟ (ମାତୃପୂଜା)

ତୋର କରମେ ଯେବେ ନାହିଁରେ ସୁଖ ଖୋଜିଲେ କି ହେବ ?
ତୋର ମର୍ମେ ଯେବେ ନାହିଁରେ ମାୟା ପର କି ଆଣିଦେବ ?
ଭାବିଛୁ ମନେ ପୁନେଇ ଦିନେ
ଦେଖି ତୁ ନୂଆଚାନ୍ଦ
ତୋ ଆଶା ସାରିକା ହୃଦୟ କନ୍ଦରେ
ଲଗାଇ ଦେବ ଦ୍ୱନ୍ଦ୍ୱ
ତୋର ସବୁ ସୁଖ ଉଭେଇ ଦେବ ନିମିଷେ କାଳ ଫାନ୍ଦ
ଜୀବନଯାକ ଧନ୍ଦି ହେଉଛୁ
କରିବୁ ନାହିଁ କି କର୍ମ ?
ଚାହାନି ଥରେ ମଥା ଉପରେ, ନିକିତି-ଧରା-ଧର୍ମ
ତୋର ଧର୍ମା-ଧର୍ମ ବିଚାର କରି ନିମିଷେ ଓଟାରି ନେବ ?

---

*ମାତୃପୂଜା ନାଟକ - ରଚନା କାର୍ତ୍ତିକ କୁମାର ଘୋଷ, ସଙ୍ଗୀତ-କୃଷ୍ଣପ୍ରସାଦ ବସୁ*

।୧୩।

ବିଲାତର ଜଣକର ମାସକର ରୋଜଗାର
ପାଞ୍ଚ କୋଡି ଟଙ୍କା ଊଣା ହୋଇବାର
ଶୁଣା ନାହିଁ ଏ ଯୁଗର
ଭାରତ କରମ ଦଶା ଜଣପିଛା ହେଲା କସା
ବରଷକୁ ତାର ସତରଟି ଟଙ୍କା ଦିନକୁ ତିନି ପଇସା।
ଦିନାନ୍ତେ ଭାରତ ପାଇଁ ଅଧପା ଚାଉଳ ନାହିଁ
ବିଦେଶୀ ବଣିକ ମଦଗିଲାସେକେ
ପାଞ୍ଚ ସେର ଗଲା ବଢ଼ି।
ଜାଡ ବରଷା କାଳରେ ହେଁସମଶିଣା କୋଳରେ
ମେଣ୍ଢାଗୁହାଳରେ ଷଣ୍ଢାମଡା ହୋଇ
ରାତି ପାଏ ବିକଳରେ।
ତେଣେ ଚୂନପଲସ୍ତରା ଘରେ ଅଲଷ୍ଟର ମୋଡଜରେ
ରୁମପଶମର ଉଷମ ଶେଯରେ
ଖେଳନ୍ତି କୋଉତୁକରେ
ଆଖି ଥାଉ ହେଲ ଅନ୍ଧ ବେପାରୀଙ୍କ ଦାଉ ଛନ୍ଦ
ଚହଟ ଚିକ୍କଣ ଛବିକି ଦେଖୁଛ
ଏ ସିନା କର୍ମ ନିବନ୍ଧ।

●●●

---

*କବିଙ୍କ ଲିଖିତ ସମାଜ ଚିତ୍ର ନାଟକର ପାଣ୍ଡୁଲିପିରୁ*

## ପରିଶିଷ୍ଟ - ଖ

ଆସନ୍ତା କାଲି July 1952

# (ପ୍ରବାସ ସମାଚାର)

-: କଲିକତାରେ ଶ୍ରୀଯୁକ୍ତ କୃଷ୍ଣପ୍ରସାଦ ବସୁଙ୍କୁ ସମ୍ବର୍ଦ୍ଧନା :-

ଗତ ୨୪.୬.୫୨ ତାରିଖରେ ୬୭ ନମ୍ବର ଶଶୀଭୂଷଣ ଦେ ଷ୍ଟ୍ରୀଟରେ ନାଟ୍ୟକାର ଶ୍ରୀଯୁକ୍ତ ଅଶ୍ୱିନୀ କୁମାର ଘୋଷଙ୍କ ସଭାପତିତ୍ୱରେ, ଓଡ଼ିଶାର ପ୍ରସିଦ୍ଧ ସଙ୍ଗୀତଜ୍ଞ ଓ ନାଟ୍ୟକାର ଶ୍ରୀଯୁକ୍ତ କୃଷ୍ଣପ୍ରସାଦ ବସୁଙ୍କୁ କଲିକତା ଓଡ଼ିଆମାନଙ୍କ ତରଫରୁ ସମ୍ବର୍ଦ୍ଧନା କରାଯାଇ ଥିଲା । ବୃହତ୍ତର କଲିକତା ଉତ୍କଳ ସମାଜର ସାଧାରଣ ସଂପାଦକ ଏବଂ ଆସନ୍ତାକାଲିର ସଂପାଦକ ଶ୍ରୀଯୁକ୍ତ ହୃଦାନନ୍ଦ ମଲ୍ଲିକ୍ ବସୁ ମହାଶୟଙ୍କ ପରିଚୟ କରାଇବାକୁ ଯାଇ କହିଲେ, ତାଙ୍କର ସଙ୍ଗୀତ ସାଧନା ପାଇଁ କିପରି ସେ ଶତ ଝଡ ଝଂଜାର ଭିତର ଦେଇ ଜୀବନ ଭରି ପୂଜା କରି ଆସିଛନ୍ତି ସାହିତ୍ୟ ଓ ସଙ୍ଗୀତର ।

ସେଦିନ ବସୁ ମହାଶୟ ତାଙ୍କ ରଚିତ 'ବିଲ୍ୱମଙ୍ଗଳ' ଚରିତ ନିଜ କଣ୍ଠରେ ଗାନକରି ସଭା ମଣ୍ଡଳୀଙ୍କୁ ମୁଗ୍ଧ କରିଥିଲେ । ତାଙ୍କ ବହୁମୁଖୀ ପ୍ରତିଭାରେ ସମସ୍ତେ ସ୍ତବ୍ଧ ହୋଇ ରସ ଉପଭୋଗ କରୁଥିଲେ । ଶ୍ରୀଯୁକ୍ତ ଉଦୟ ନାଥ ସାହୁ, ଶ୍ରୀମତୀ ଉମାଶଶୀ ଦେବୀ, ଶ୍ରୀମତୀ ଯାମିନୀ ଦେବୀ ସେମାନଙ୍କର କଣ୍ଠ ସଙ୍ଗୀତରେ ସଭାସଦଙ୍କୁ ଆପ୍ୟାୟିତ କରିଥିଲେ । ବହୁ ବିଶିଷ୍ଟ ଭଦ୍ରବ୍ୟକ୍ତିଙ୍କ ସହଯୋଗରେ ସମ୍ବର୍ଦ୍ଧନା ଉତ୍ସବଟି ସରସ ଓ ଉପଭୋଗ୍ୟ ହୋଇଥିଲା ।

•••

## ପରିଶିଷ୍ଟ - ୯

## Remarkable Medals and Rewards of Biraja Opera and Shyamsundar Theatre

| | | |
|---|---|---|
| 1. | Bar Library Bhadrak | Gold |
| 2. | Baudpur Gentry | Gold |
| 3. | Iram Uas Radhakanta Parhi Esqr | Gold |
| 4. | Burdwan Raja | Gold |
| 5. | Medical College, Calcutta | Gold |
| 6. | Raja Jatindranath Mallik, Chorbagan | Gold |
| 7. | Sj. Biswambhur Bhuyan | Gold ring |
| 8. | Ramkrishnapur Rly. yard officers | Gold |
| 9. | Buxi Bazar Union club | Wrist watch |
| 10. | Peace celebration committee, Jajpur | Gold |
| 11. | Samanta Radhagobinda Das, Balasore | Gold |
| 12. | Binod behari Mallik, Pathuria ghata | Gold |
| 13. | Kidderpore Bina Theatre | Gold |
| 14. | Lal Nityananda Buriha | Gold |
| 15. | Sridhar Giri, zamidar, Jaleswar | Gold |
| 16. | Gonesh Prasad Bhagat | Gold |
| 17. | Manicharan Sahu, Merchant, Buxibazar | Gold chain |
| 18. | Braja Sundar Dev of Aul | Rs. 1000/- |

U.S. Press, Cuttack

## କବିଙ୍କ ସ୍ୱହସ୍ତ ଲିଖିତ ଅପ୍ରକାଶିତ ପାଣ୍ଡୁଲିପିର ପ୍ରତିଚିତ୍ର





